୫୪

# ଭାଗବତ କଥା

ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ



ଧର୍ମଗ୍ରନ୍ଥ ଷ୍ଟୋର

ଓଁ ନମୋ ଭଗବତେ ବାସୁଦେବାୟ



ବ୍ୟାସଶାସ୍ତ୍ରୋପବନତଃ ସୁମନାଂସି ବିଚିନ୍ୱିତା ।
କୃତା ବୈଂ ପ୍ରଭୁଦତ୍ତେନ ମାଲା 'ଭଗବତୀ କଥା' ॥

: ଶ୍ରୀ ହରି :

# ଭାଗବତ କଥା

## ଚତୁଃପଞ୍ଚାଶତ୍ ଖଣ୍ଡ

ଲେଖକ
ପୂଜ୍ୟପାଦ ପ୍ରଭୁଦତ୍ତ ବ୍ରହ୍ମଚାରୀ

ଅନୁବାଦ ଓ ସମ୍ପାଦନା
ଶ୍ରୀ ନୃସିଂହ ପ୍ରସାଦ ମିଶ୍ର

ପ୍ରକାଶକ



କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍

# ଭାଗବତ କଥା–୫୪

ପ୍ରକାଶନ ଉପଦେଷ୍ଟା :
ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର

ପ୍ରକାଶକ :

ଶ୍ରୀ ନୃସିଂହ ପ୍ରସାଦ ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ-୭୫୩୦୦୨

ପ୍ରଥମ ସଂସ୍କରଣ–୧୯୯୬

ମୁଦ୍ରଣ :
ଟେକନ୍ ସର୍ଭିସେସ୍, ଏଣ୍ଡ ପ୍ରିଣ୍ଟୋଗ୍ରାଫିକ୍ସ, କଟକ

ମୂଲ୍ୟ : ଟ. ୩୫.୦୦

## BHAGABAT KATHA

Sri Prabhudatta Brahmachari

Principal Adviser:
Sri R.P. Misra

Publisher:
Sri N.P. Misra
Cuttack Students' Store
Balubazar, Cuttack-753002

First Edition–1996

Printing:
TEKON Services & Printographics, Cuttack

Price: Rs. 35.00



ଭାଗବତ କଥାର ପ୍ରକାଶକ ସ୍ୱର୍ଗତଃ ଅନନ୍ତ ମିଶ୍ର

# ସୂଚୀ

1552

# ବାଳକଠାରୁ ଶିକ୍ଷା

ନ ମେ ମାନାବମାନୌ ସ୍ତୋ ନ ଚିନ୍ତା ଗେହପୁତ୍ରିଣାମ୍ ।
ଆତ୍ମକ୍ରୀଡ଼ ଆତ୍ମରତିର୍ବିଚରାମୀହ ବାଲବତ୍ ।। ★

[ଶ୍ରୀଭା. ୧୧ଶ ସ୍କ. ୯ ଅ. ୩ ଶ୍ଳୋକ]

**ଛପ୍‌ପୟ**

ବାଳକକୁଂ ଅପମାନ ମାନକୋ ଭାନ ନ ହୋବୈ ।
ସୋବୈ ଲାଗୈ ନୀଂଦ ଭୂଖ ଲଗିବେ ପୈ ରୋବୈ ।।
ଘର ଫୂଟୈ ଯା ଗିରୈ ରହୈ ଧନ ଚାହେ ଜାବୈ ।
ଜୋ ମୁଖମହଁ ଧରି ଦେଉ ତାହି ଭାବୈ ତୋ ଖାବୈ ।।
ଭେଦ ଭାବ ଚିନ୍ତା ନହୀଂ, ରହୈ କରତ କ୍ରୀଡ଼ା ସତତ ।
ୟୋ ଜ୍ଞାନୀ ଯତି ହୂ ରହୈ, ଆତ୍ମଭାବ ମହଁ ନିତ ନିରତ ।।

ଖେଳରେ ଆନନ୍ଦ ଥାଏ । ଯେତେବେଳେ ତହିଁରେ ସତ୍ୟ ଆରୋପିତ କରାଯାଏ, ସହସା ଘୋର ବିପତ୍ତିରେ ତାହା ରୂପାନ୍ତରିତ ହୋଇଯାଏ । ଖେଳ ଖେଳରେ ଗାଡ଼ିରେ ଚଢ଼ିବାକୁ ବାଳକଙ୍କୁ ଖୁବ୍ ସୁଖ ଲାଗେ । କୌଣସି ଗାଡ଼ି ଯାଉଥିବାର ଦେଖିଲେ ବାଳକ ଚୁପ୍‌ଚାପ ତହିଁରେ ଚଢ଼ିଯାଏ । ଅନେକଦୂରକୁ ବି ଚାଲିଯାଏ । ଅନେକଦୂରକୁ ଯାଇ ଗାଡ଼ି ଠିଆ ହୋଇଗଲେ, ସେ ଡେଇଁ ଖାଲି ପାଦରେ ଦୌଡ଼େ । କହିଲେ ଦେଖି, ଏତେ ବାଟରୁ ଖାଲି ପାଦରେ ଆସିବାକୁ ପଡ଼ିଲା, ଏଥିରେ କିଛି ଲାଭ ମିଳିଲା ?

ଖେଳରେ ଲାଭକ୍ଷତି ହିସାବ କରାଯାଏ ନାହିଁ । ହାନିଲାଭ ହିସାବ ବା ବିଚାର ଯେଉଁଠାରେ କରାଯାଏ, ତାହା କଦାପି ଖେଳ ହୋଇପାରେନା । ତାହା ମମତା ହୋଇଯାଏ । ଖେଳରେ କେବଳ ଲାଭ ହିଁ ଲାଭ ଥାଏ । ସେଥିରେ ଜୟ ହେଉଛି ପରାଜୟ, ପରାଜୟ ହେଉଛି ଜୟ । ଛୋଟ ଛୋଟ ବାଳକମାନେ ବରକନ୍ୟା ଖେଳ ଖେଳନ୍ତି । ଏହି ଖେଳରେ ଖୁବ୍ ଆନନ୍ଦ ପାଆନ୍ତି । କୌଣସି ବିଷୟରେ ଚିନ୍ତା ନ ଥାଏ । ଆପତ୍ତି ବିପତ୍ତି ନ ଥାଏ । କିନ୍ତୁ ବଡ଼ ହେବା ପରେ ଯେତେବେଳେ ପ୍ରକୃତ ବିବାହ ହୋଇ

---

★ ଅବଧୂତ ଦତ୍ତାତ୍ରେୟ ଯଦୁରାଜାଙ୍କୁ କହୁଛନ୍ତି—''ରାଜନ୍ ! ମୁଁ ମୋ ଆତ୍ମା ସହିତ କ୍ରୀଡ଼ା କରି କରି ନିଃଶଙ୍କଭାବରେ ବାଳକଭଳି ବିଚରଣ କରୁଥାଏ । ମୋର ମାନ ପ୍ରତି ଧ୍ୟାନ ନ ଥାଏ କି ଅପମାନ ପ୍ରତି ବି ଧ୍ୟାନ ନ ଥାଏ । ମୋର ଘରଚିନ୍ତା ନ ଥାଏ କି ପୁତ୍ର ପରିବାରର । ମୁଁ ଏହି ଶିକ୍ଷା ବାଳକ ଠାରୁ ସଂଗ୍ରହ କରିଛି ।''

ବୋହୂକୁ ଘରକୁ ନେଇ ଆସନ୍ତି, ବୋହୂ ତ ନୁହେଁ, ଦୁଃଶ୍ଚିନ୍ତାର ପୁଟୁଳିଟିଏ ନେଇ ଆସିଥା'ନ୍ତି। ଆଜି ଚୁଡ଼ି ଆଣ, କାଲି ବିନ୍ଦୀ, ଆଉ ଦିନେ ପାହୁଞ୍ଚି ତ ଆଉ ଦିନେ ହାର। ଆଜି ଜ୍ୱର, ମୁଣ୍ଡବ୍ୟଥା ତ କାଲି ପୂଜା, ନାମକରଣ, କାନଫୋଡ଼ା, ନାକଫୋଡ଼ା, ପୁଣି ବିବାହ। କେତେ ବା କହିବା! କେଜାଣି, କେଉଁଠୁ ଅସରନ୍ତି ଦୁଶ୍ଚିନ୍ତା ହଠାତ୍ ହଠାତ୍ ଆସି ପହଞ୍ଚି ଯାଏ !

ଖେଳରେ ହସି ହସି ଆମେ କହୁ, ଏଇ ଲକ୍ଷେ ଟଙ୍କା ତୋ'ର, ନେ। ଖେଳରେ କାହାକୁ କିଛି ଜଣାପଡ଼େ ନାହିଁ। କିନ୍ତୁ ସତସତିକା ଜଣେ ଯଦି ସେହି ଲକ୍ଷେ ଟଙ୍କା ଅଡ଼ି ବସେ, ତେବେ କହିବା ଲୋକର ସେହି ରାତିରେ ଆଉ ନିଦ ହୁଏନାହିଁ। ଲକ୍ଷେ ଟଙ୍କା ନିଜର ହୋଇଗଲେ, ଏହାର ସୁରକ୍ଷା ତଥା ବୃଦ୍ଧି ନିମନ୍ତେ ମଣିଷକୁ କେତେ ପ୍ରକାର ଚିନ୍ତା କରିବାକୁ ପଡ଼େ। ଆରାମ ତ ହାରାମ ହୋଇଯାଏ।

ଠିକ୍ ଏହିଭଳି ସଂସାରର ପ୍ରତ୍ୟେକ ଘଟଣାକୁ ଯିଏ ଖେଳ ବୋଲି ଭାବେ, ସେ ସବୁବେଳେ ହସ ହସ ରହେ। ଆସିବା ହେଉଛି ଖେଳ, ଯିବାଟା ମଧ୍ୟ ଖେଳ। ଖେଳରେ ଖେଳରେ ପିଲାମାନେ କାନ୍ଦିପକାନ୍ତି। କାନ୍ଦିବା ବି ଖେଳର ଏକ ଅଙ୍ଗ। ଜଣଙ୍କୁ ବିଦାୟ ଦେବାବେଳେ ଲୋକମାନେ ଦେଖିଲେ ଜଣେ ସନ୍ଥ କାନ୍ଦୁଛନ୍ତି। ବିଦାୟ ହୋଇଯିବା ପରେ ଦେଖାଗଲା ସନ୍ଥ ଜଣଙ୍କ ହୃଦୟଖୋଲି ହସିବାରେ ଲାଗିଛନ୍ତି। ଦର୍ଶକଙ୍କ ମଧ୍ୟରୁ ଜଣେ ପଚାରିଲା—"ମହାରାଜ! ଆପଣ ପରା ଏବେ କାନ୍ଦୁଥିଲେ, ଆଉ ଏବେ ପୁଣି ଏପରି ହସୁଛନ୍ତି କିପରି?" ସନ୍ଥ ଜଣକ କହିଲେ—"ଆରେ ଭାଇ! ଏ ସବୁ ତ ଖେଳ। ସେତେବେଳେ କାନ୍ଦିବାଟା ଏକ ଖେଳ ଥିଲା, ଏବେ ହସିବାଟା ବି ସେଇ ଖେଳ।" ଖେଳିବା ସମୟରେ ଏଇ ଖେଳ ଖେଳିବା ନାହିଁ, ସେହି ଖେଳ ଖେଳିବା—ଏପରି କଥା ଚିନ୍ତା କରାଯାଏ ନାହିଁ। ଯାହା ମନକୁ ଆସେ ସେଇ ଖେଳ ଖେଳାଯାଏ। ଯେତେବେଳେ ତହିଁରେ ସତ୍ୟତା ଆରୋପିତ ହୁଏ, ଖେଳ ନଷ୍ଟ ହୋଇଯାଏ। ଏଣୁ ଜ୍ଞାନୀମାନଙ୍କର ବାଳକସୁଲଭ ପାଗଳାମି ଥାଏ ବୋଲି କୁହାଯାଏ। ପିଲାମାନେ ଖେଳରେ ଖେଳରେ କାନ୍ଦିପକାନ୍ତି, ହେଲେ ପରମୁହୂର୍ତ୍ତରେ ହସି ହସି ଗଡ଼ିଯାଆନ୍ତି। ସେମାନେ ହଠାତ୍ ରାଗି ରୁଷିଯାଆନ୍ତି। ପୁଣି ପରକ୍ଷଣରେ, କେହି ସୁନ୍ଦର ଫୁଲଟିଏ ଦେଖାଇଦେଲେ, ଫୁଲମାଳା କି ମନୋହରୀ ଜିନିଷ ଦେଖାଇଦେଲେ, ସେମାନେ ପାଖକୁ ଦୌଡ଼ିଆସନ୍ତି। ହସି ଦିଅନ୍ତି। ପାଗଳମାନେ ଠିକ୍ ଏହିପରି ହୋଇଥାନ୍ତି। ହଠାତ୍ କ'ଣ ଗୁଡ଼ାଏ କହୁଥାନ୍ତି, ପରକ୍ଷଣରେ କ'ଣ ଗୁଡ଼ାଏ କରିପକାନ୍ତି। ହଠାତ୍ କାନ୍ଦିପକାନ୍ତି ତ ପରମୁହୂର୍ତ୍ତରେ ହସିଥା'ନ୍ତି। ଲୁଗାପଟା ଚିରି ପକାନ୍ତି, ଅନ୍ୟଙ୍କୁ ଦେଖି ଢେଲା ମାରନ୍ତି—ଏହିପରି ହଠାତ୍ ହଠାତ୍ ନାନା କଥା କରୁଥା'ନ୍ତି।

ସାରକଥା ହେଉଛି, ସେମାନେ କୌଣସି ନିର୍ଦ୍ଦିଷ୍ଟ, ବିଶେଷ ଉଦ୍ଦେଶ୍ୟରେ କିଛି କରନ୍ତି ନାହିଁ। ସେମାନେ ନିଜେ ନିଜ ସହିତ କ୍ରୀଡ଼ା କରୁଥା'ନ୍ତି। ମନର ତରଙ୍ଗ ସହିତ ତାଳ ଦେଇ ବିବିଧ ଖେଳ ଖେଳୁଥା'ନ୍ତି। ଠିକ୍ ସେହିଭଳି ଜ୍ଞାନୀ ଯତି ସଦା ଆତ୍ମାନନ୍ଦରେ ନିମଗ୍ନ ରହିଥାଏ, ଆତ୍ମା ସହିତ କ୍ରୀଡ଼ା କରୁଥାଏ, ଆତ୍ମା ସହିତ ରତି କରୁଥାଏ। ଆତ୍ମଭାବରେ ଭାବିତ ହୋଇ ସାଂସାରିକ ସୁଖ-ଦୁଃଖ ସହିତ ସଦା ନିର୍ଲିପ୍ତ ଭାବରେ ରହିଥାଏ।

ମହର୍ଷି ସୂତ ଶୌନକାଦି ମୁନିଙ୍କୁ କହୁଛନ୍ତି—ହେ ମୁନିଗଣ! ବାଳକଙ୍କ ଠାରୁ ସଂଗ୍ରହ କରିଥିବା ଶିକ୍ଷାକୁ ବର୍ଣ୍ଣନା କରିବାକୁ ଯାଇ ଅବଧୂତ ଦତ୍ତାତ୍ରେୟ ମହାରାଜ ଯଦୁଙ୍କୁ କହୁଛନ୍ତି—"ରାଜନ୍! ଛୋଟ ଛୋଟ ଅବୋଧ ବାଳକଙ୍କୁ ବି ମୁଁ ମୋର ଗୁରୁ କରିଛି। ଅନୁଭବ ନିମନ୍ତେ ମୁଁ କିଛିଦିନ ପାଇଁ ଏକାନ୍ତ ଅରଣ୍ୟବାସ ତ୍ୟାଗକରି ନଗର ଓ ଗ୍ରାମମାନଙ୍କରେ ଭ୍ରମଣ କରିବାରେ ଲାଗିଲି। ସବୁଠାରେ ମୁଁ ଅନେକ ଛୋଟ ଛୋଟ ଶାନ୍ତ-ସରଳ ପିଲାଙ୍କୁ ଦେଖିଲି। ରାଜନ୍! ସେହି ପିଲାମାନଙ୍କୁ ଦେଖି ଖୁବ୍ ଖୁସୀ ଲାଗିଲା। ସେମାନେ ଫୁଲ ଭଳି ସଦା ପ୍ରସ୍ଫୁଟିତ ରହିଥା'ନ୍ତି। ସେମାନେ ଏପରି ଅପୂର୍ବ ସୁମନୋହର କଥା କହିଥା'ନ୍ତି, ତାହା ଦେଖି ସବୁବେଳେ ସେହି ବାଳକଙ୍କ ସହିତ ଖେଳିବାକୁ ଚିତ୍ତରେ ଆଗ୍ରହ ହୁଏ। ସେମାନେ ଏପରି ସୁନ୍ଦର ସୁନ୍ଦର ଖନେଇ ଖନେଇ କଥା ହୁଅନ୍ତି ଯାହା ମିଶ୍ରିଠାରୁ ହେଲେ ଅଧିକ ମିଠା ଅନୁଭୂତ ହୁଏ। ସେମାନଙ୍କର ସେପରି ମିଠାକଥା ସବୁବେଳେ ଶୁଣିବାକୁ ମନ ହୁଏ। ସେମାନଙ୍କ ଅନ୍ତଃକରଣରେ ନା ରାଗ ଥାଏ ନା ଦ୍ୱେଷ, ନା ପାପର ଭାବ ଥାଏ ନା ପୁଣ୍ୟର—ତେଣୁ, ସେମାନେ ଖୁବ୍ ଭଲ ଲାଗନ୍ତି। ଇଚ୍ଛା ହୁଏ ସେମାନଙ୍କୁ ହୃଦୟରେ ଚାପିଧରି ଆନନ୍ଦରେ ସେମାନଙ୍କ ମୁହଁକୁ ଚୁମ୍ବନ ଦେବାକୁ। ପିଲାମାନଙ୍କୁ ସମସ୍ତେ ଭଲ ପାଆନ୍ତି। ପିଲାମାନେ ଯେତେବେଳେ ନିଜ ନିଜ ଭିତରେ ଖେଳୁଥା'ନ୍ତି, ସେତେବେଳେ ସତେ କେତେ ଭଲ ନ ଲାଗେ!

"ପିଲାଙ୍କ ମନରେ କିଛି ଲୁଚାଇ ଦେବାର ଭାବ ନ ଥାଏ। ଯାହା ମୁହଁକୁ ଆସେ ସହସା କହିପକାନ୍ତି। ପିଲାଙ୍କୁ ଯେତେ ଭଲ ଜିନିଷଟିଏ ଦିଅ, ସେମାନଙ୍କର ଇଚ୍ଛା ଥିବାପର୍ଯ୍ୟନ୍ତ ଖେଳୁଥିବେ। ମନ ଭାଙ୍ଗିଗଲେ ଖେଳ ବି ଭାଙ୍ଗିଯାଏ। ସେଇ ସର୍ବୋତ୍ତମ ଜିନିଷଟିକୁ ସେମାନେ ସାଙ୍ଗେ ସାଙ୍ଗେ ଫୋପାଡ଼ି ଦିଅନ୍ତି। ଆମେ ପିଲାମାନଙ୍କୁ ଦେଖି ପ୍ରସନ୍ନ ହେଉଥିବା ଉଚିତ। ପିଲାଙ୍କ ଠାରେ ସମତ୍ୱ ଭାବ ରଖିବା ଉଚିତ। **ଏମାନେ ମୋ ପିଲା, ତେଣୁ ସୁଖୀ ରହିଥାନ୍ତୁ, ଅନ୍ୟଙ୍କ ପିଲାମାନେ ସୁଖୀ ନ ରୁହନ୍ତୁ—ଏପରି ଭାବନା ହେଉଛି ଦୁଃଖର ପ୍ରଧାନ କାରଣ।**

"ମୋ ପାଇଁ କିନ୍ତୁ ସବୁ ପିଲା ଏକା ଭଳି ହୋଇଥା'ନ୍ତି। ଯିଏ କୌଣସି ପିଲାକୁ ନିଜର ବୋଲି କହେ ନାହିଁ, ତା' ପାଇଁ ସମସ୍ତ ପିଲା ସମାନ ହୋଇଥା'ନ୍ତି। ଏଣୁ, ହେ ରାଜନ୍! ମୁଁ ଯେଉଁ ପିଲାଙ୍କୁ ବି ଦେଖେ ତାକୁ ସ୍ନେହ କରେ, ଆଦର କରେ। କୌଣସି ଗାଁ'ରେ ଦୁଇ ଚାରିଦିନ ରହିଗଲେ ଗାଁ'ଯାକର ପିଲା ମୋତେ ନିଜର, ଆପଣାର କରିଦିଅନ୍ତି, ମୋ ଚାରିପାଖରେ ଘେରି ଯାଆନ୍ତି। ଏମାନଙ୍କ ଭିତରୁ କାହାକୁ ମୁଁ ଗେଲ କରିଦିଏ, କାହା ମୁଣ୍ଡକୁ ଉଖାରି ଦିଏ, ତ ଆଉ କାହାକୁ କୋଳରେ ବସାଇଦିଏ। ଏଥିରେ ସେମାନଙ୍କର ଆନନ୍ଦ କହିଲେ ନ ସରେ। ତାଙ୍କଠାରେ ମାନ-ଅପମାନର ସାମାନ୍ୟ ଗନ୍ଧ ନ ଥାଏ।

"ସଂସାରୀ ଲୋକମାନେ ମାନ-ଅପମାନ ପାଇଁ ମରିଯାଉଛନ୍ତି। ସେ କାହିଁକି ମୋତେ 'ଆଜ୍ଞା' ବୋଲି ସମ୍ବୋଧନ ନ କରି 'ତୁମେ' ବୋଲି କହିଲା, ଏଥିରେ ସେ ମୋତେ ଖୁବ୍ ଅପମାନିତ କଲା। ଆରେ ଭାଇ! ତୋ'ର କି ଅପମାନ ହେଲା? 'ଆଜ୍ଞା'ରେ ଦୁଇଟି ଅକ୍ଷର ଅଛି, ଆଉ 'ତୁମେ'ରେ ବି ଦୁଇଟି ଅକ୍ଷର। ବରଂ 'ତ' ଆଉ 'ମ' ତ 'ଆ'ଓ'ଜ୍ଞ' ଏହି ଅକ୍ଷର ଦ୍ୱୟର ପରେ ଅଛି ବର୍ଣ୍ଣମାଳାରେ।

ଚେଣୁ, ଗରିଷ୍ଠ ବୋଲି ବିବେଚନା କରିବା ଉଚିତ। ଏଥିରେ ପୁଣି ଅପମାନ କ'ଣ ହୋଇଗଲା ? ମାତା ପିତା ଆଉ ଗୁରୁଜନ ପୁଣି 'ତୁ' ବୋଲି କହୁଛନ୍ତି ତ। ଏଥିରେ ମାନ କ'ଣ ଅପମାନ କ'ଣ ? କିନ୍ତୁ ଏହା ଏପରି ମିଥ୍ୟାଭିମାନ ହୋଇଯାଇଛି ଯେ, ଶବ୍ଦରେ ବି ମଣିଷ ମାନ-ଅପମାନ ଧରିବାରେ ଲାଗିଲେଣି। ଆମ ନାମ ପୂର୍ବରୁ ଏତେଟା 'ଶ୍ରୀ' କାହିଁକି ଲାଗିଲା ନାହିଁ, ଏହା ହେଉଛି ଅଜ୍ଞାନ, ମୂର୍ଖାମୀ। ପିଲାଙ୍କଠାରେ କିନ୍ତୁ ଏ ସବୁ ନାହିଁ। ସେମାନଙ୍କୁ ଅଧା ନାମରେ ଡାକ, ଗାଳି ଦେଇ ଡାକ, କିଛି କହି ଡାକ, ସେମାନେ ହସି ଦିଅନ୍ତି। ମଣିଷ ମିଥ୍ୟାଭିମାନକୁ ଧରି ଭିତରେ ଭିତରେ ଜଳିବାରେ ଲାଗିଥାଏ। ମାନ-ଅପମାନ ବିଷୟରେ ଖୁବ୍ ଚିନ୍ତା କରୁଥାଏ।

''ମଣିଷର ଅନ୍ୟ ଚିନ୍ତା ହେଉଛି ତା'ର ଘର ଓ ପରିବାର। ହାୟ, ମୋର ଘର ଭାଙ୍ଗିଗଲା, ଏଠି ଏତେ ଅସୁବିଧା ହେଉଛି, ସ୍ତ୍ରୀ ସବୁବେଳେ ରୋଗିଣୀ ହୋଇ ପଡ଼ିଛି, ପିଲାଙ୍କୁ ଜ୍ୱର ହେଉଛି, ପରିବାରରେ ଅନେକ ଲୋକ, ଏତେ କମ୍ ରୋଜଗାରରେ ଚଳିବି କେମିତି ? ସମସ୍ତେ କିପରି ସୁଖୀ ହେବେ— ଏହି ଚିନ୍ତାରେ ନିମଗ୍ନ ରହିଥିବା ମଣିଷ ଦୁଃଖୀ ହିଁ ରହିଥାଏ। ପିଲାଙ୍କର କିନ୍ତୁ ଏ ସବୁ ଚିନ୍ତା ନ ଥାଏ। ସେମାନେ ନିଜେ ନିଜଠାରେ ସଦା ପ୍ରସନ୍ନ ଥାଆନ୍ତି, ପ୍ରମୁଦିତ, ପ୍ରଫୁଲ୍ଲ ଥା'ନ୍ତି; କାହା ଉପରେ ଅଯଥା ଶଙ୍କା କରନ୍ତି ନାହିଁ। ସେମାନେ ସବୁବେଳେ ଖେଳୁ ଥା'ନ୍ତି। ଭୋକ ଲାଗିଲେ ଖାଆନ୍ତି, ଆଉ ପୁଣି ଖେଳରେ ଲାଗିଯାଆନ୍ତି। ବାଳକଙ୍କର ଏପରି ପ୍ରବୃତ୍ତି ମୋତେ ଖୁବ୍ ପ୍ରଭାବିତ କରିଛି। ମୁଁ ବାଳକଙ୍କୁ ମୋର ଗୁରୁ କରିଛି। ଆଉ ସେହି ଦିନରୁ ମାନ-ଅପମାନ କଥା ତ୍ୟାଗକରି ଦେହମୁଣ୍ଡ କଥା ଟିକିଏ ବି ନ ଭାବି, ନିଜେ ନିଜ ସହିତ କ୍ରୀଡ଼ା କରୁଛି। ଆତ୍ମାନନ୍ଦରେ ନିମଗ୍ନ ରହି ସରଳ ବାଳକଙ୍କ ଭଳି ଶଙ୍କାରହିତ ହୋଇ ପୃଥିବୀରେ ବିଚରଣ କରୁଛି।'' ★

ଦତ୍ତାତ୍ରେୟଙ୍କ ଠାରୁ ଏପରି କଥା ଶୁଣି ରାଜା ଯଦୁ କହିଲେ, ''ଭଗବନ୍! ସଂସାରରେ କେବଳ ଦୁଃଖ ଦେଖାଯାଏ। ଏପରି ଜଣେ କେହି ନାହାନ୍ତି ଯାହାଙ୍କୁ କିଛି ଦୁଃଶ୍ଚିନ୍ତା ଘାରୁ ନ ଥାଏ।''

ଅବଧୂତ କହିଲେ, ''ରାଜନ୍! ଯିଏ ଟିକିଏ ବି ସଂଗ୍ରହ କରେ ସେ ନିଶ୍ଚିତ ଚିନ୍ତିତ ରହେ। ଏଣୁ, ସଂସାରରେ କେବଳ ଦୁଇ ପ୍ରକାର ମଣିଷ ଚିନ୍ତା-ମୁକ୍ତ ଥିବା ଦେଖା ଯାଆନ୍ତି। ପ୍ରଥମତଃ, ସିଧା-ସାଦା ସରଳ ଶିଶୁ; ଦ୍ୱିତୀୟରେ ସେଇମାନେ,

---

★ ନ କରି ବସ୍ତ୍ର ପରିଗ୍ରହ । ଏକା ଭ୍ରମଇଁ ଶୂନ୍ୟଦେହ . ॥
ନାହିଁ ମୋ ମାନ ଅଭିମାନ । ଗୃହ କଳତ୍ର ପୁତ୍ର ଧନ ॥
ଆତ୍ମାରେ ରମଇ ମୁଁ ନିତ୍ୟେ । ନିଶ୍ଚିନ୍ତେ ଭ୍ରମଇ ଜଗତେ ॥
ପରମାନନ୍ଦ ରସ ପାଇ । ନିରତେ ସଂସାରେ ଭ୍ରମଇ ॥
ବାଳକ ଠହୁଁ ଏହା ଶିଖି । ନୁହଁଇ ନାନା ଦୁଃଖେ ଦୁଃଖୀ ॥
କେବଳ ଆହାର ବେଳାରେ । କ୍ରୀଡ଼ା କରଇ ସର୍ବଦ୍ୱାରେ ॥
କିଛି ହିଁ ଚିନ୍ତା ନାହିଁ ତାର । ଏଣୁ ବାଳକ ଗୁରୁମୋର ॥
[ଭାଗବତ : ଶ୍ରୀ ଜଗନ୍ନାଥ ଦାସ : ସ୍କ ୧୧ ଅ.୧୦ମ]

ଯେଉଁମାନେ ପ୍ରକୃତିର ତିନି ଗୁଣକୁ ଅତିକ୍ରମ କରିଥା'ନ୍ତି, ଯାହାଙ୍କ ଦୃଷ୍ଟିରେ ଭଲ-ମନ୍ଦର ଭେଦଭାବ ନ ଥାଏ। ଏହା ବ୍ୟତୀତ ଯେଉଁମାନେ ମଝିଆମଝି ଥା'ନ୍ତି, ମଧ୍ୟମ ଶ୍ରେଣୀରେ ଥା'ନ୍ତି, ସେମାନେ ସବୁବେଳେ ଚିନ୍ତାଗ୍ରସ୍ତ ରହିଥା'ନ୍ତି। ଯିଏ ଜ୍ଞାନୀ ହୋଇ ନ ଥାଏ, ରଜ ବା କୌଣସି ଗୋଟିଏ ଗୁଣର ଅଧୀନରେ ଥାଏ, ପାତାଳ ଠାରୁ ବ୍ରହ୍ମଲୋକ ପର୍ଯ୍ୟନ୍ତ ଯେଉଁଠି ଥାଉ ପଛେ, ଚିନ୍ତାଶୂନ୍ୟ ଆଦୌ ହୋଇପାରନ୍ତି ନାହିଁ। ସେ ହିଁ କେବଳ ଚିନ୍ତାରୁ ମୁକ୍ତ ହୋଇଥାଏ, ଯିଏ ବାଳକଙ୍କ ଭଳି ସମସ୍ତ ଘଟଣାକୁ ଖେଳ ବୋଲି ଭାବେ। ରାଜନ୍! ବାଳକଙ୍କର ସାଦା-ସିଧା ନିର୍ମଳ ସ୍ୱଭାବକୁ ହିଁ ଦେଖି ମୁଁ ସେମାନଙ୍କୁ ମୋର ଗୁରୁ କରିଛି, ଆଉ ସେମାନଙ୍କ ଶିକ୍ଷାକୁ ହୃଦୟଙ୍ଗମ କରି ସେପରି ବ୍ୟବହାର କରୁଛି।''

ରାଜା କହିଲେ, ''ବ୍ରହ୍ମନ୍! ଆପଣ ପୃଥିବୀ, ବାୟୁ, ଆକାଶ, ଜଳ, ଅଗ୍ନି, ଚନ୍ଦ୍ର, ସୂର୍ଯ୍ୟ, କପୋତ, ଅଜଗର, ସମୁଦ୍ର, ପତଙ୍ଗ, ମଧୁମକ୍ଷିକା, ହାତୀ, ଭ୍ରମର, ହରିଣ, ମୀନ, ବେଶ୍ୟା, କୁରରପକ୍ଷୀ ଆଉ ବାଳକ ଏପରି ଊଣଇଶ ଗୁରୁଙ୍କଠାରୁ ପାଇଥିବା ଶିକ୍ଷା ବର୍ଣ୍ଣନା କଲେ। ଏବେ ଆପଣଙ୍କର ବିଂଶତିତମ ଗୁରୁ, କୁମାରୀ କନ୍ୟାଙ୍କଠାରୁ ଆପଣ କି ପ୍ରକାର ଶିକ୍ଷା ଗ୍ରହଣ କରିଛନ୍ତି ତାହା ଶୁଣିବାକୁ ଆଗ୍ରହ କରୁଛି। ଆପଣ କୁମାରୀ କନ୍ୟାଙ୍କୁ ଆପଣଙ୍କ ଗୁରୁ କାହିଁକି କଲେ ?''

ଅବଧୂତ ଦତ୍ତାତ୍ରେୟ ଅଳ୍ପ ଅଳ୍ପ ହସି କହିଲେ, ''ରାଜନ୍! ଏ ସମ୍ପର୍କରେ ଗୋଟିଏ ଇତିହାସ ଅଛି। ମୁଁ ଆପଣଙ୍କୁ ତାହା କହୁଛି, ଶୁଣନ୍ତୁ।''

ମହାମୁନି ସୂତ କହୁଛନ୍ତି, ''ହେ ମୁନିଗଣ! ଏବେ ଅବଧୂତ କହିଥିବା କୁମାରୀ କନ୍ୟାଙ୍କ ପ୍ରସଙ୍ଗ ଶ୍ରବଣ କରନ୍ତୁ।''

### ଛପ୍ପୟ

ଦ୍ୱୈ ଈ ଜଗ ମହଁ ସୁଖୀ ଔର ସବ ଦୁଃଖୀ ଭୂମିପତି।
ଏକ ଗୁଣନିତୈ ପାର ଜ୍ଞାନ ବିଜ୍ଞାନ ନପୁଣ ଯତି॥
ଦୂସର ଛଲତୈ ରହିତ ସରଲ ଶିଶୁ ଭୋରୋ ଭାରୋ।
ଅଧିକରେ ନିତ ରହେଂ ଦୁଖୀ' ଚିନ୍ତିତ ହିୟ ଧାରୋ॥
ବାଲକ ଗୁରୁ କରି ଜଗତ ମହଁ, ବିଚରୁଁ ହ୍ୱୈ ନିଃଶଙ୍କ ନିତ।
ନିଜ ପର ଭେଦ ଭୁଲାଇକେଂ, ସମଝୁଁ ସବକୂଁ ଆତ୍ମବତ॥



# କୁମାରୀ କନ୍ୟାଙ୍କଠାରୁ ଶିକ୍ଷା

ବାସେ ବହୂନାଂ କଲହୋ ଭବେଦ୍ ବାର୍ତା ଦ୍ୱୟୋରପି ।
ଏକ ଏବ ଚରେତ୍ତସ୍ମାଦ୍ କୁମାର୍ୟା ଇବ କଙ୍କଣଃ ॥ ★
[ଶ୍ରୀ ଭା. ୧୧ ସ୍କ. ୯ ଅ. ୧୦ ଶ୍ଳୋ.]

**ଛପ୍‌ପୟ**

ନିରଖୀ କନ୍ୟା ଏକ ଅକେଲୀ ବୈଠୀ ଆଁଗନ।
ଖୋଜନ ମାତା ପିତା ଗୟେ ଵର ପହୁଁଚେ ପାହୂନ॥
ଚାଵଲ ଘର ନହିଁ ରହେ ଧାନ ବହ ଲାଗୀ କୂଟନ।
ପହିନେ କର ମହଁ ଚୂରୀ ଶଙ୍ଖ କୀ ଲଗାଂ ବାଜନ॥
ପୃଥକ୍ କରୀଂ କରତେ କଲୂ, ରହୀ ବଜୀଂ ଦ୍ୱୈ ଶେଷ ଜୋ।
ଏକ ଉତାରୀ ନହିଁ ବଜୀଂ, ହୌଁ ଗୁରୁ କାହ୍ନୀଂ ତୁରତ ସୋ॥

ନିର୍ଜୀବ ବାସନ ଯେତେବେଳେ ଏକାଠି ରହେ ଠଣ ଠାଣ୍ ଶବ୍ଦ କରେ। ସେପରି ସ୍ଥଳରେ ସଜୀବ ପୁରୁଷ, ଯାହାଙ୍କଠାରେ କିଛି ନା କିଛି ଭିନ୍ନତା ଥିବା ସ୍ୱଭାବିକ, ଯେତେବେଳେ ଏକତ୍ରିତ ହୁଅନ୍ତି, କିଛି କିଛି ବାକ୍-ବଚସା ହୋଇଯାଏ। ସନ୍ନ୍ୟାସୀ, ସଦାଚାରୀ, ତ୍ୟାଗୀ-ବିରାଗୀ ପୁରୁଷମାନେ ବି ଏକାଠି ହେଲେ ଅନେକ ସମୟରେ କଳି ଅବଶ୍ୟ କରନ୍ତି। କଳହ କଳିଯୁଗର ରୂପ। ତେଣୁ, ଏହା ସ୍ୱାଭାବିକ। ଚାରିଯୁଗରେ କଳିର କିଛି ନା କିଛି ଅଂଶ ଥାଏ। ଅର୍ଥାତ୍, କଳହ ଚାରି ଯୁଗରେ ବି ଥାଏ। ସତ୍ୟଯୁଗରେ କମ୍ ଥାଏ, ତ୍ରେତାରେ ଟିକିଏ ଅଧିକ, ଦ୍ୱାପରରେ ତା' ଠାରୁ ଅଧିକ ଓ କଳିଯୁଗରେ କଳହ ଘର କରିଦେଇଥାଏ।

ଦିନକର କଥା। ଥରେ ସପ୍ତର୍ଷି ସାତଜଣ ସାଙ୍ଗହୋଇ ଯାଉଥିଲେ। ସେମାନଙ୍କ ସହିତ ସେବକମାନେ ବି ଥିଲେ। ବାଟରେ ଖୁବ୍ ଭୋକ ଲାଗିଲା। ସେଇ ସେବକମାନେ ଜ୍ଞାନୀ ଥିଲେ। ପ୍ରତ୍ୟେକ ପ୍ରତ୍ୟେକଙ୍କୁ ଖୁବ୍ ଭଲପାଉଥିଲେ। କିନ୍ତୁ କ୍ଷୁଧା ସମୟରେ ମଣିଷର ବୁଦ୍ଧି ବିପରୀତ ହୋଇଯାଏ। ବସ୍ତୁତଃ, କଳହ କ୍ଷୁଧା ପାଇଁ ହୋଇଥାଏ।

---

★ ଅବଧୂତ ମୁନି ଯଦୁରାଜଙ୍କୁ କହୁଛନ୍ତି– ''ରାଜନ୍! ବେଶୀ ଲୋକଙ୍କ ସହିତ ରହିଲେ କଳହ ଉପୁଜେ। ଦୁଇଜଣ ବି ରହିଲେ କଥା ବଢ଼େ। ଏଣୁ ଭିକ୍ଷୁ ସବୁବେଳେ ଏକାକୀ ନିଃଶବ୍ଦ ବିଚରଣ କରୁଥିବା ଉଚିତ, ଯେପରି କୁମାରୀ କନ୍ୟାଙ୍କ ଚୁଡ଼ି ଏକାକୀ ରହି ନିଃଶବ୍ଦ ହୋଇ ଯାଇଥିଲା।''

କେହି ଧନ ପାଇଁ ଭୋକିଲା, କେହି ଅନ୍ନ ପାଇଁ ଭୋକିଲା, ତ ଆଉ କେହି, କାମ ପାଇଁ ଭୋକିଲା ଥା'ନ୍ତି। ଯିଏ କ୍ଷୁଧାକୁ ଜୟ କରିଛି ତା' ପାଖରେ କଳହର କାଟ୍‌ତି ହୁଏ ନାହିଁ। ହଁ, କ'ଣ ହେଲା କି, ଯାଉ ଯାଉ ଋଷିମାନେ ଗୋଟିଏ ସରୋବର ପାଖରେ ପହଞ୍ଚିଗଲେ। ସେଥିରେ କମଳ-ପୁଷ୍ପ ଫୁଟିଥିଲା। ସମସ୍ତେ କହିଲେ—"ଚାଲ ସମସ୍ତେ ମିଶି କମଳ ମୂଳ ସଂଗ୍ରହ କରିବା। କମଳ-କନ୍ଦ ଖାଇ କ୍ଷୁଧା ନିବାରଣ କରିବା।"

ସମସ୍ତେ ପାଣିରେ ପଶିଲେ, ଆଉ କମଳନାଡ଼ ଟାଣି ଖାଇବାରେ ଲାଗିଲେ। କଳିଯୁଗ ଭାବିଲା—"ଏମାନଙ୍କ ଭିତରେ ଏତେ ଘନିଷ୍ଠତା! କ୍ଷୁଧା ସମୟରେ ଜଣେ ଅନ୍ୟ ଜଣଙ୍କୁ ଅବିଶ୍ୱାସ କରିବା କଥା। ଏମାନଙ୍କ ମଧ୍ୟରେ କଳହ ହୋଇଯିବା ଉଚିତ।" ଏପରି ଭାବି କଳିଯୁଗ ସମସ୍ତ କମଳ-କନ୍ଦକୁ ଚୋରାଇ ନେଲା। ଏଥର ଜଣେ ଆର ଜଣକୁ, ଏପରି ସମସ୍ତେ ସମସ୍ତଙ୍କୁ ସନ୍ଦେହ କରିବାରେ ଲାଗିଲେ। 'ତୁ ଖାଇ ଦେଇଛୁ', 'ତୁ ଲୁଚାଇ ଦେଇଛୁ' ଏପରି ପରସ୍ପର ଆକ୍ଷେପ କରିବାରେ ଲାଗିଲେ। ଯେତେବେଳେ ପରସ୍ପରଙ୍କ ମଧ୍ୟରେ ସନ୍ଦେହ ଖୁବ୍ ବଢ଼ିଗଲା, ପ୍ରତ୍ୟେକ ରାଣ ପକାଇବାରେ ଲାଗିଲେ।

ଏଇ କାହାଣୀଟି ଖୁବ୍ ବଡ଼। କିନ୍ତୁ ଏଠାରେ ଏତିକି ଉଲ୍ଲେଖ କରିବାର ତାତ୍ପର୍ଯ୍ୟ ଏହା ଯେ, ଯେତେ ବଡ଼ ବଡ଼ ଜ୍ଞାନୀ, ଧ୍ୟାନୀ, ବିବେକୀ ତଥା ବହୁଶାସ୍ତ୍ରଜ୍ଞ ଲୋକ ହୋଇଥାନ୍ତୁ ପଛେ, ସେମାନେ ଏକାଠି ରହିଲେ ଦିନେ ନା ଦିନେ, କିଛି ନା କିଛି କଳହ ଅବଶ୍ୟ ହୋଇଯାଏ। ଏଣୁ, ପରମାର୍ଥ-ଚିନ୍ତନ କରୁଥିବା ଭିକ୍ଷୁ କେବେହେଲେ ଦଳବଦ୍ଧ ହୋଇ ବିଚରଣ କରିବା ଅନୁଚିତ।

ବହୁତ ହେଲେ କଳହ ସ୍ୱତଃ ହୋଇଯାଏ। ଦୁଇଟି ବାସନ ଏକାଠି ହେଲେ ଶବ୍ଦ କରିପକାନ୍ତି। ଗୋଟିଏ ପ୍ରକାର ମନର ଦୁଇଜଣ ଲୋକ ଏକାଠି ରହିଲେ, କଳହ ନ ହେଲେ ସୁଦ୍ଧା, କଥା କଟା କଟି ତ ହୋଇଥାଏ। କିଛି କଥା ନ ହେଲେ ବି ଭିକ୍ଷା କଥା ତ ହୁଅନ୍ତି—ଆଜି ସେଠିକି ଯାଇଥିଲି, ଭଦ୍ରଲୋକ ଖୁବ୍ ଶ୍ରଦ୍ଧାରେ ଭିକ୍ଷା ଦେଲେ। ଆଉ ସେ ଘରର ମା ତ ଡାହାଣୀ ଟେ। ସେ ପରା ଚିହିଁକି ଉଠି କହିଲା—'ପଳା ପଳା। ସବୁଦିନ ପଳାଇ ଆସି ହରି-ନାରାୟଣ, ହରି-ନାରାୟଣ ବୋଲି ଚିତ୍କାର ଛାଡୁଛନ୍ତି। କ'ଣ ରୋଜଗାର କରି ଆମ ପାଖରେ ରଖିଦେଇଛ କି? ଯା-ପଳା! ଆଉ, ଅମୁକ ଜାଗାକୁ ଯାଇଥିଲି ଯେ ସେଠି ମାଇପୁଅ ଛଣା ହେଉଥିଲା। ସେ ଆଦରରେ ଭିକ୍ଷା ଦେଲା।' ଇଚ୍ଛା ନ କଲେ ବି ଏମିତି କଥାବାର୍ତ୍ତା ହୋଇଯାଏ। ଏଣୁ, ପରମାର୍ଥ ପଥର ସନ୍ନ୍ୟାସୀଙ୍କୁ କେତେବେଳେ ବି ଆଉ ଜଣଙ୍କ ସହିତ ମିଶି ନ ରହିବା ଉଚିତ। ଭାବ, ଭୋଜନ ଓ ଭଜନ ଏକାନ୍ତରେ ଭଲ ରୂପେ ହୋଇଥାଏ।

ମହର୍ଷି ସୂତ କହୁଛନ୍ତି—ହେ ମୁନିଗଣ! କୁମାରୀକନ୍ୟାଠାରୁ ଶିକ୍ଷା ଗ୍ରହଣ ସଂପର୍କରେ ଯଦୁରାଜାଙ୍କୁ ଅବଧୂତ ଯେଉଁ ଇତିହାସ କଥା କହୁଥିଲେ ତାହା ମୁଁ ଆପଣମାନଙ୍କୁ କହୁଛି। ଅବଧୂତ ମୁନି କହୁଥିଲେ—"ରାଜନ୍! ଦିନେ ମୁଁ ଖୁବ୍ ବୁଲାବୁଲି କରି ଗୋଟିଏ ଗାଁ'ରେ ପହଞ୍ଚିଲି। ପୂର୍ବେ ବି ମୁଁ ସେଇ ଗାଁ'କୁ ଯାଇଥିଲି, ସେଠାରେ ଜଣେ ଅତି ଶ୍ରଦ୍ଧାବାନ୍ ବ୍ରାହ୍ମଣ ରହୁଥିଲେ। ମୁଁ ଯେତେବେଳେ ବି ଯାଏ, ସେ ବଡ଼ ଶ୍ରଦ୍ଧାରେ

ମୋତେ ଭିକ୍ଷା ଦିଅନ୍ତି। ମହାରାଜ୍‌! ସାଧୁ ଆଉ କ୍ରୂରଙ୍କର ଏପରି ସ୍ୱଭାବ ଯେ, ଯେଉଁଠାରେ ଟିକିଏ ପ୍ରେମ ପାଆନ୍ତି ସେମାନେ ସ୍ୱତଃ ସେଠାରେ ପହଞ୍ଚିଯାଆନ୍ତି। ମୁଁ ପ୍ରଥମେ ଯେତେବେଳେ ସେହି ବ୍ରାହ୍ମଣ ଘରକୁ ଯାଇଥିଲି, ସେ କହୁଥିଲେ—'ଭଗବନ୍‌! ମୋର ଏହି ଝିଅ ଅତି ସୁଶୀଳା, ଆଉ ବୁଦ୍ଧିମତୀ। ଯା ପାଇଁ ଉପଯୁକ୍ତ ବର ଖୋଜି ପାଉନାହିଁ। ମୋର ଯାରି ଚିନ୍ତା ହିଁ ଲାଗି ରହିଛି।' ଏହାଶୁଣି ମୁଁ କହିଦିଏ—'ଭଗବାନ ମଙ୍ଗଳ କରନ୍ତୁ। ଯାର ଯାହା ସହିତ ସମ୍ବନ୍ଧ ହେବାକୁ ଯୋଗ ଥିବ, ଅବଶ୍ୟ ଦିନେ ନା ଦିନେ ତାହା ସମ୍ଭବ ହେବ।' ସେ ଝିଅ ବି ମୋତେ ଜାଣିଥିଲା। ସେଦିନ ମୁଁ ଘର ଭିତରକୁ ଯିବାବେଳେ ସେ ବାରଣ୍ଡାରେ ବସିଥିଲା। ମୁଁ ପଚାରିଲି–'ଆଲୋ ମା! ପଣ୍ଡିତେ କୁଆଡ଼େ ଯାଇଛନ୍ତି?'

''ସେଇ ଝିଅ କହିଲା—'ସେ ତ ବାହାରକୁ, କୁଆଡ଼େ କାମରେ ଯାଇଛନ୍ତି।'

''ମୁଁ କହିଲି—'ତୋ ମା' କୁଆଡ଼େ ଗଲେ?'

''ସେ କହିଲା—'ମହାରାଜ୍‌! ସେ ବି ବାହାରକୁ କୁଆଡ଼େ ଯାଇଛି। ଆପଣ ବସନ୍ତୁ।'

''ଝିଅଟିର କଥା ଶୁଣି ମୁଁ ବସିଗଲି। ଏପରି ସମୟରେ ସେହି ଝିଅକୁ ଦେଖିବା ପାଇଁ କେତେକ ଲୋକ ଆସି ପହଞ୍ଚିଗଲେ। ଝିଅ ତ ସବୁ କଥା ଜାଣିଥିଲା। ତା' ବାପା-ମା ତା' ବିବାହ ପାଇଁ କେତେ ଖୋଜା ଖୋଜି କରୁଛନ୍ତି, କେତେ ଦୌଡ଼ା-ଧାପଡ଼ା କରୁଛନ୍ତି। ଆଉ ଏମାନେ ଆସିଛନ୍ତି ନିର୍ବନ୍ଧ କରିବାକୁ। ଘରେ ଅନ୍ୟ ଦ୍ୱିତୀୟ ଲୋକ ବି କେହି ନ ଥାନ୍ତି। ତେଣୁ, ଆଗନ୍ତୁକ ଅତିଥିମାନଙ୍କର ଚର୍ଚ୍ଚା କାମ ସେଇ ଝିଅ ଉପରେ ପଡ଼ିଗଲା। ଦୈବଯୋଗକୁ ସେଦିନ ଘରେ ଦାନାଟିଏ ବୋଲି ଚାଉଳ ନଥିଲା। ବାପା-ମା ଥିଲେ କେଉଁଠାରୁ ଯୋଗାଡ଼ କରି ଆଣିଥାନ୍ତେ। କେହି ଦ୍ୱିତୀୟ ଲୋକ ଥିଲେ ଦୌଡ଼ିଯାଇ ପାଖପଡ଼ିଶାରୁ କିଛି ନେଇଆସନ୍ତା। ଏମାନେ ପୁଣି ନିର୍ବନ୍ଧ କରିବାକୁ ଆସିଛନ୍ତି, ଏମାନଙ୍କ ଆଗକୁ ସେହି ଝିଅ ଆସନ୍ତା ବା କିପରି? ସେ ତେଣୁ ବଡ଼ ଚିନ୍ତାରେ ପଡ଼ିଗଲା।

''କିଛି ସମୟ ଭାବିବା ପରେ ତା'ର ମନେପଡ଼ିଗଲା ଯେ ଅମାର ଘରେ ଧାନ ଅଛି। ଶୀଘ୍ର ଧାନ କୁଟି କିଛି ଚାଉଳ କରିଦେବା ପାଇଁ ସେ ସ୍ଥିରକଲା। ସଂଗେ ସଂଗେ ଧାନକୁଟା କୁଣ୍ଡରେ ଧାନ ପୂରାଇ ଧାନକୁଟାରେ କୁଟିବାକୁ ଲାଗିଲା। ସେ ହାତରେ ଶଙ୍ଖର ଚୁଡ଼ି ପିନ୍ଧିଥିଲା। ଧାନ କୁଟିବାବେଳେ ତାହା ଝଣଝଣ ଶବ୍ଦ କରିବାରେ ଲାଗିଲା। ସେ ଭାବିଲା— 'ମୁଁ ନିରୋଳାରେ ଧାନ କୁଟୁଛି। ସେମାନେ ମୋତେ ସିନା ଦେଖିପାରୁ ନାହାନ୍ତି; କିନ୍ତୁ ମୋ ଚୁଡ଼ିର ଶବ୍ଦ ଶୁଣି ମୁଁ ଧାନ କୁଟୁଥିବା ସେମାନେ ଜାଣିଦେବେ। ସେତେବେଳେ ସେମାନେ ଭାବିବେ—ଏଇ ଲୋକଟା ନିର୍ଦ୍ଧନ ଲୋକ। ଯା ଘରେ ଖାଇବାକୁ ଚାଉଳ ବି ନାହିଁ। ଏପରି ଦରିଦ୍ର ବୋଲି ଭାବି ଆଗନ୍ତୁକ କୁଣିଆମାନେ ଚାଲିଯାଇ ପାରନ୍ତି। ସମ୍ବନ୍ଧ ବି ନ କରିପାରନ୍ତି। ତେଣୁ ଚୁଡ଼ିର ଶବ୍ଦ ଯେପରି ନ ହେବ ସେପରି ଉପାୟ ମୁଁ କରିବା ଉଚିତ।'

''ଝିଅଟି ବଡ଼ ବୁଦ୍ଧିମତୀ ଓ ଚତୁରା। ସେ ଏହା ଭାବି ହାତରୁ ଚୁଡ଼ି ବାହାର କଲା। ଭିତରେ କାଢୁଥିବା ବେଳେ କେତେଟା ଚୁଡ଼ି ଭାଙ୍ଗି ବି ଗଲା। ହାତରେ

କେବଳ ଦୁଇଟି ଚୁଡ଼ିକୁ ଛାଡ଼ି, ଆଉ ସବୁ ବାହାର କରିଦେଲା। ଦୁଇଟି ଥିବାରୁ ବିଶେଷ ଶବ୍ଦ ମଧ୍ୟ ହେଲା ନାହିଁ, ତେବେ ବି ଦ୍ୱୟର ସଂଘର୍ଷରେ କିଛି କ୍ଷୀଣ ଶବ୍ଦ ଶୁଣାଯାଉଥାଏ। ଏହି ଶବ୍ଦକୁ ପୂରା ବନ୍ଦ କରିବାକୁ ଯାଇ ସେଇ ବୁଦ୍ଧିମତୀ ଝିଅ, ଆଉ ଗୋଟିଏ ଗୋଟିଏ ଚୁଡ଼ି ବାହାର କରିଦେଲା। ଶବ୍ଦ ଆଉ ହେଲାନାହିଁ। କାରଣ ଗୋଟିଏ ପଟରେ ଶବ୍ଦ ଉତ୍ପନ୍ନ ବା ହୁଅନ୍ତା କିପରି? ସେ ଧାନ କୁଟି ଅତିଶୀଘ୍ର ଭାତ ରାନ୍ଧିଦେଲା। (୧)

"ରାଜନ୍! ମୁଁ ଜ୍ଞାନ ଖୋଜି ବୁଲୁଥାଏ। ପ୍ରତ୍ୟେକ ଘଟଣାରୁ ମୁଁ କିଛି ନା କିଛି ଶିକ୍ଷା ଗ୍ରହଣକରୁଥାଏ। ଏଣୁ, ସେହି ଝିଅକୁ ମୁଁ ମୋର ଗୁରୁ କରିନେଲି। ଆଉ ତା'ଠାରୁ ଏହି ଶିକ୍ଷା ଆହରଣକଲି ଯେ, ବେଶୀଲୋକଙ୍କ ସହିତ ରହିଲେ କଳହ ଅବଶ୍ୟ ହୋଇଯାଏ, ଯେପରି ଅନେକ ଚୁଡ଼ି ରହି ଶବ୍ଦ ସୃଷ୍ଟି କରେ। ବେଶୀ ନ ହେଲେ ବି ଯଦି ମାତ୍ର ଦୁଇ ରୁହନ୍ତି, ତେବେ କଳହ ନ ହେଲେ ବି ଗପ-ସପ ତ ହୋଇଯିବ। ବାଟରେ କେହି କଡ଼େଇ ନେଇ ଯାଉଥିଲେ ଜଣେ ସାଧୁ ଆର ଜଣକୁ କହିପକାଏ—'ହେ ଗୋପାଳ ଦାସ! ଶ୍ରୀରାମଙ୍କ ଅସରରୁ ଆଜି କଡ଼େଇ କୁଆଡ଼େ ଯାଉଛି କି?'

"ଦ୍ୱିତୀୟ ଜଣକ ଉତ୍ତର ଦେଇ କହେ—'ଆହେ ସୀତାଶରଣ ଦାସ, ଜାଣି ନାହଁ କି? ଆଜିପରା ଅମୁକ ସ୍ଥାନରେ ପଙ୍ଗତ ହେଉଛି।'

"ଇଚ୍ଛା ନଥିଲେ ବି ଏ ପ୍ରକାର ଅନାବଶ୍ୟକ କଥାବାର୍ତ୍ତା ସ୍ୱତଃ ହୋଇଯାଏ। ଏଣୁ, ବିରକ୍ତ ବ୍ୟକ୍ତି ଅନ୍ୟ ଦ୍ୱିତୀୟ ଜଣଙ୍କର ବି ସାଥୀ ହେବା ଅନୁଚିତ। କୁମାରୀ କନ୍ୟାର କଙ୍କଣ ଭଳି ଏକାକୀ ନିଶବ୍ଦ, ମୌନ ରହିବା ଉଚିତ। ଏକାନ୍ତରେ ଚିତ୍ତର ବୃତ୍ତି ବାହାର ଆଡ଼କୁ ଯାଏନାହିଁ। ଅନ୍ତରକୁ ଅଧିକ ଅନ୍ୱେଷଣ କରିଥାଏ। ଇନ୍ଦ୍ରିୟଙ୍କ ବୃତ୍ତି ବାହାରକୁ ହେବା ହିଁ ଅବନତି। ଚିତ୍ତବୃତ୍ତିକୁ ନିରୋଧ କରିବା ହେଉଛି ଉନ୍ନତି। ଏଣୁ, ଏକାନ୍ତରେ ଏକାକୀ ରହି ସତତ ଆତ୍ମଚିନ୍ତନରେ ନିରତ ରହିବା ଆବଶ୍ୟକ।"(୨)

---

(୧) ସୁସାଧୁ ସୁନ୍ଦର ଶରୀରେ । କନ୍ୟାଏ ଥିଲା ବିପ୍ରଘରେ ।।
ରୋଳେ ମୂଷଳ ଏକ କରି । କୁଟଇ ବେନି କରେ ଧରି ।।
ଭୁଜେ ତା ବଳୟ କଙ୍କଣ । କୁଟନ୍ତେ ବାଜେ ରୁଣ୍ଝୁଣ୍ ।।
ଶୁଣି କୁମାରୀ ଲଜ୍ଜା ପାଇ । ଅଧେ କଙ୍କଣ ହସ୍ତୁ ଫେଇ ।।
ପୁଣି କୁଟନ୍ତେ ଧୀରେ ଧୀରେ । ହସ୍ତ କଙ୍କଣ ନାଦ କରେ ।।
କୁମାରୀ ମନେ ବିଚାରଇ । ସଙ୍ଗ ଗହଳେ ଗୋଳ ହୋଇ ।।
ଏମନ୍ତ ବିଚାରି ବିବେକେ । ପୁଣି ଫେଇଲା ରଖି ଏକେ ।।
ବେନି କଙ୍କଣ ବେନି କରେ । କୁଟନ୍ତେ ଶବଦ ନକରେ ।।

(୨) ଅନେକ ଲୋକ ଯହିଁ ମିଳି । ଅବଶ୍ୟ ଉପୁଜଇ କଳି ।।
ତେଣୁ କୁମାରୀ ଅନୁରାଗେ । ଗୁରୁ ବଚନ ଶିକ୍ଷାଭାଗେ ।।
ଏକାନ୍ତେ ଭ୍ରମୁଥାଇଁ ମୁହିଁ । କେବେହେଁ ସଙ୍ଗ ନ କରଇ ।।
[ଭାଗବତ : ଜଗନ୍ନାଥ ଦାସ : ୧୧ସ୍କ.୧୦ଅ.]

ଏହା ଶୁଣି ମହାରାଜ ଯଦୁ ପଚାରିଲେ—"ବ୍ରହ୍ମନ୍! କୁମାରୀକନ୍ୟାଠାରୁ ନେଇଥିବା ଶିକ୍ଷା କଥା ତ କହିଲେ, ଏବେ ମୁଁ ଜାଣିବାକୁ ଚାହୁଁଛି, ବାଣ ତିଆରି କରୁଥିବା ଲୋକକୁ ଆପଣ ଗୁରୁ କାହିଁକି କଲେ? ତା'ଠାରୁ ଆପଣ କ'ଣ ଶିକ୍ଷା କଲେ?"

ଅବଧୂତ ମୁନି କହିଲେ—"ଉତ୍ତମ କଥା ମହାରାଜ! ଏବେ ମୁଁ ବାଣ ତିଆରି କରୁଥିବା ଲୋକଠାରୁ ସଂଗ୍ରହ କରିଥିବା ଶିକ୍ଷା ବିଷୟରେ କହୁଛି, ଶୁଣନ୍ତୁ।"

ମହର୍ଷି ସୂତ କହୁଛନ୍ତି—"ହେ ମୁନିଗଣ! ଆପଣମାନେ ବି ବାଣ ତିଆରି କରୁଥିବା ଲୋକର ଶିକ୍ଷା ପ୍ରସଙ୍ଗ ଶ୍ରବଣ କରନ୍ତୁ।"

### ଛପ୍ପୟ

ଶିକ୍ଷା ରବାଟେଂ ଲଇ କଲହ ହୋବେଁ ବହୁତନି ମହଁ।<br>
ଯଦି ସଂଗ ଦ୍ୱୈତ ରହେଂ ସମୟ ବୀତୟ ବାତନ ମହଁ॥<br>
ଭୀଡ଼ଭାଡ଼ ମେଁ ଭିକ୍ଷୁ ଭୂଲିକେଂ କବହୁଁ ନ ଜାବେଂ<br>
ରଖେ ନ ଦୂଜୌ ସଂଗ ଅକେଲୌ ସମୟ ବିତାବୈ॥<br>
ଏକାକୀ ଚିନ୍ତନ କରୈ, ଖଟପଟ ତେଂ ନିତ ହୀ ବଚୈ।<br>
ନର ନାରିନିକୀ ସଂଗତା, ଜନମ ମରନ ପୁନି-ପୁନି ରଚୈ॥



# ବାଣ କାରିଗରଠାରୁ ଶିକ୍ଷା

ତଦୈବମାତ୍ମନ୍ୟବରୁଦ୍ଧଚିତ୍ତୋ<br>
ନ ବେଦ କିଞ୍ଚିଦ୍ ବହିରନ୍ତରଂ ବା।<br>
ଯଥେଷୁକାରୋ ନୃପତିଂ ବ୍ରଜନ୍ତ-<br>
ମିଷୌ ଗତାତ୍ମା ନ ଦଦର୍ଶ ପାର୍ଶ୍ୱେ॥ ★

[ଶ୍ରୀ ଭା.୧୧ ସ୍କ.୯ଅ ୧୩ ଶ୍ଳୋକ]

---

★ ଅବଧୂତ ମୁନି ରାଜା ଯଦୁଙ୍କୁ କହିଲେ- "ରାଜନ୍! ଯେତେବେଳେ ଚିତ୍ତ ଆତ୍ମାରେ ଅବରୁଦ୍ଧ ହୋଇଯାଏ, ସେତେବେଳେ ଭିତରେ କି ବାହାରେ ଥିବା କୌଣସି ବିଷୟକୁ ଜାଣିପାରେ ନାହିଁ। ଯେଉଁଭଳି ସବାରିରେ ବସି ଅତି ପାଖଦେଇ ଯାଉଥିବା ରାଜାଙ୍କୁ ବାଣ କାରିଗର ବାଣ ତିଆରି କରିବା କାମରେ ତନ୍ମୟ ରହି ଦେଖିପାରି ନ ଥିଲା।"

## ଛପ୍‌ପୟ

ଗୁରୁ କୀୟୋ ଇଷୁକାର ବାନ ପଥ ମାହିଁ ବନାବୈଂ।
ହ୍ୱୈକେଂ ତନ୍ମୟ ଚିତ୍ତବୃତ୍ତି ସର ମାହିଁ ଲଗାବୈଂ॥
ରାଜା ସୈଂନା ସହିତ ଗୟୋ ଚିତ ନାହିଁ ଚଲାୟୌ।
'ଇତତେଂ ଭୂପତି ଗୟୋ' କହ୍ୟୌ କଛୁ ନହିଁ ସକୁଚାୟୌ॥
ବିଷୟନିତେଂ ବୈରାଗ୍ୟ କରି, ନିତ ନିତକେ ଅଭ୍ୟାସତେଂ।
ଚିତ୍ତ ମିଲାବୈଂ ଲକ୍ଷ୍ୟତେଂ, ଆସନ ପ୍ରାଣାୟାମତେଂ॥

ଦେଖିବା, ଶୁଂଘିବା, ଚାଖିବା, ଶୁଣିବା ତଥା ଥଣ୍ଡା-ଗରମକୁ ଅନୁଭବ କରିବା କାର୍ଯ୍ୟ ହେଉଛି ମନର। ଜ୍ଞାନେନ୍ଦ୍ରିୟଙ୍କ ଦ୍ୱାରା ମନ ଏ ସମସ୍ତ କାର୍ଯ୍ୟ କରିଥାଏ। ମନ ନ ହେବା ପର୍ଯ୍ୟନ୍ତ କେବଳ ଆଖି ଦେଖିବାକୁ ସମର୍ଥ ନୁହେଁ; କାନ ସେ ପର୍ଯ୍ୟନ୍ତ ଶୁଣିପାରେ ନାହିଁ, ଯେତେବେଳ ପର୍ଯ୍ୟନ୍ତ ମନ ତା' ସହିତ ସଂଯୁକ୍ତ ହୋଇ ନଥାଏ। ଅନ୍ୟ ଇନ୍ଦ୍ରିୟଙ୍କ ସମ୍ପର୍କରେ ମଧ ଏହା ପ୍ରଯୋଜ୍ୟ। ମନ ବଶୀଭୂତ ହୋଇଗଲେ, ଅନ୍ୟ ଇନ୍ଦ୍ରିୟମାନେ ସ୍ୱତଃ ବଶୀଭୂତ ହୋଇଯାଆନ୍ତି। ମନ ଯଦି ବଶୀଭୂତ ନ ହୋଇଥାଏ, କେବଳ ଉପରେ ଉପରେ ଇନ୍ଦ୍ରିୟଙ୍କୁ ଅଟକାଉଥାଏ, ତେବେ ସାମାନ୍ୟ ଅବସର ପାଇଗଲେ, ଇନ୍ଦ୍ରିୟମାନେ ବିଷୟରେ ପ୍ରବୃତ୍ତ ହୋଇଯାନ୍ତି। ମନକୁ ଅଟକାଇବା ପାଇଁ ଦୁଇଟି ଉପାୟ ଅଛି। ଉର୍ଦ୍ଧ୍ୱରେତା ହେବା, ଅଥବା ପ୍ରାଣକୁ ରୁଦ୍ଧ କରିବାର ଶକ୍ତି ଥିବା ପ୍ରାଣକୁ ରୁଦ୍ଧ କଲେ ମନ ସ୍ୱତଃ ଅଟକିଯାଏ। ସେ ଆଉ ଅଧିକ ଡିଆଁ ଡେଇଁ କରିପାରେ ନାହିଁ। କୌଣସି ପକ୍ଷୀର ଗୋଡ଼ରେ ଦଉଡ଼ିଟିଏ ବାନ୍ଧି ଗଛଡାଳରେ ବାନ୍ଧିଦେଲେ ତା'ର ପକ୍ଷ ଯେପରି ବ୍ୟର୍ଥ ହୋଇଯାଏ, କିଛି ସମୟ ଏପାଖ ସେପାଖ ଉଡ଼ି ଚୁପଚାପ ବସିଯାଏ, ଯେ ପର୍ଯ୍ୟନ୍ତ ଦୌଡ଼ିରେ ଗଛଡ଼ାଳ ସହିତ ବନ୍ଧାହୋଇଥାଏ ସେ ପର୍ଯ୍ୟନ୍ତ କେଉଁଆଡ଼େ ଯାଇପାରେ ନାହିଁ, ଠିକ୍ ସେହିଭଳି ପ୍ରାଣାୟାମ ହେଉଛି ଏକ ପ୍ରକାର ଦଉଡ଼ି ବା ରଜ୍ଜୁ; ମନରୂପୀ ପକ୍ଷୀକୁ ସେଥିରେ ବାନ୍ଧିଦେବା ଦରକାର, ଅଧିକ ଉଡ଼ିବାକୁ ସୁଯୋଗ ନ ଦେବା ଦରକାର; ବନ୍ଧା ହୋଇ ସେ ସେହିଠାରେ ବସିଥିବା ଉଚିତ।

ମହାମୁନି ସୂତ କହୁଛନ୍ତି– ହେ ମୁନିଗଣ! ବାଣ କାରିଗର ଠାରୁ ପାଇଥିବା ଶିକ୍ଷା ବର୍ଣ୍ଣନା କରିବାକୁ ଯାଇ ଅବଧୂତ ମୁନି କହିଲେ, ''ରାଜନ୍! ଦିନେ ମୁଁ ରାଜପଥରେ ଯାଉଥିଲି। ଜଣେ କାରିଗରକୁ ଦେଖିଲି। ରାଜପଥର ଦାଢ଼ରେ ତା' ଦୋକାନରେ ବସି ସେ ବାଣକୁ ସଳଖ କରୁଥିଲା। ବାଣ ଯେ ପର୍ଯ୍ୟନ୍ତ ପୂରା ସଳଖ ନ ହୋଇଥାଏ ତାହା ଲକ୍ଷ୍ୟଭେଦ ଠିକ୍‌ରୂପେ କରିପାରେ ନାହିଁ। ସେ ଏକାଗ୍ରତାର ସହିତ ସଳଖ କରିବା କାମରେ ଲାଗିଥାଏ। ବାହାରର ଟିକିଏ ବୋଲି ପ୍ରଭାବ ତା' ଉପରେ ପଡୁ ନ ଥିଲା।

''ମୁଁ ଦେଖିଲି, ସେ ବାଣ କାରିଗର ଏକାଗ୍ରତାର ସହିତ ବାଣ ତିଆରିରେ ଲାଗି ରହିଛି। ଅନେକ ସମୟ ଧରି ମୁଁ ଠିଆ ହୋଇ ତାକୁ ନିରୀକ୍ଷଣ କରିବାରେ ଲାଗିଲି। ମୁଁ ତାକୁ ସିନା ଦେଖୁଥିଲି, ହେଲେ ସେ ମୋତେ ଦେଖୁ ନ ଥିଲା। ଯା ନୁହେଁ ଯେ ଆଖି ବନ୍ଦ କରିଦେଇଥିଲା; ସେ ଚାହିଁଥିଲା, କିନ୍ତୁ ସେ ଏପରି ତଲ୍ଲୀନ ଥିଲା ଯେ ତା' ବାଣ ଛଡ଼ା ଅନ୍ୟ କିଛି ସେ ଦେଖିପାରୁ ନଥିଲା।''

ମହର୍ଷି ଶୌନକ ପଚାରିଲେ—''ହେ ମହର୍ଷି ସୂତ ! ଆଖି ଖୋଲାଥିଲେ ଯାହା ସମ୍ମୁଖକୁ ଆସେ ତାହା ତ ଦେଖାଯିବା କଥା । ଏଡ଼େବଡ଼ ମୁନି ତା' ପାଖରେ ଠିଆ ହୋଇଥିଲେ, ଅଥଚ ସେ ତାଙ୍କୁ ଦେଖିପାରୁ ନ ଥିଲା କିପରି ? ବାଣ ଅପେକ୍ଷା ମୁନି ତ ନିଶ୍ଚୟ ବଡ଼ !''

ମହର୍ଷି ସୂତ କହିଲେ—''ବଡ଼ ହେଲେ କ'ଣ ହେଲା, ଆମେ ସମୁଦାୟ ଆଖିରେ ଦେଖୁନା । ଆମେ ଆଖିର ତାରାରେ ଦେଖୁ । ତାରାରେ ବି ତା' ମଝିରେ ଯେଉଁ କ୍ଷୁଦ୍ର ବିନ୍ଦୁଟି ଅଛି, ତାହାଦ୍ୱାରା ଦେଖୁ । ଯଦି ଗୋଟିଏ ତିଳକୁ ଦେଖିବା ପାଇଁ ଆଖିକୁ ଦୃଢ଼ତାର ସହିତ ନିଯୁକ୍ତ କରିଦେଉ ତେବେ ସେଇ ତିଳ ବ୍ୟତିରେକ ଆଉ କିଛି ଦେଖାଯାଏ ନାହିଁ । ଏହି ପ୍ରସଙ୍ଗରେ କୌରବ ଓ ପାଣ୍ଡବଙ୍କର ଗୋଟିଏ ସୁନ୍ଦର ଦୃଷ୍ଟାନ୍ତ ଅଛି ।

''କୌରବ ପାଣ୍ଡବମାନେ ଏକାଠି ଦ୍ରୋଣାଚାର୍ଯ୍ୟଙ୍କଠାରୁ ଧନୁର୍ବାଣ-ବିଦ୍ୟା ଶିଖୁଥିଲେ । ବାଣବିଦ୍ୟା ଶିକ୍ଷା ସମାପ୍ତ ହେବାପରେ ଦିନେ ଗୁରୁଦେବ ସେମାନଙ୍କର ପରୀକ୍ଷା କଲେ । ଗୋଟିଏ କୃତ୍ରିମ ପକ୍ଷୀକରି ଗଛ ଉପର ଡାଳରେ ରଖି ସମସ୍ତଙ୍କୁ କହିଲେ 'ଦେଖ ! ସେଇ ପକ୍ଷୀଟିର ମୁଣ୍ଡ କାଟିବାକୁ ହେବ । ଗୋଟିଏ ଗୋଟିଏ ବାଣ ଧରି ଆସ । ମୁଁ ଯାହା ପଚାରିବି ତା'ର ଉତ୍ତର ଦେବ, ଆଉ ମୁଁ ଯେତେବେଳେ କହିବି ବାଣ ସନ୍ଧାନ କରିବ ।'

''ଆଚାର୍ଯ୍ୟଙ୍କର ଆଦେଶ ସମସ୍ତେ ଶିରୋଧାର୍ଯ୍ୟ କଲେ । ସମସ୍ତେ ଧନୁର୍ବାଣ ଧରି ଲକ୍ଷ୍ୟ ଭେଦ କରିବା ପାଇଁ ଯଥାସ୍ଥାନରେ ପ୍ରସ୍ତୁତ ହୋଇଗଲେ । ଆଚାର୍ଯ୍ୟ ସେମାନଙ୍କୁ ପଚାରିଲେ—'ତୁମେମାନେ କ'ଣ ଦେଖୁଛ ?''

''ଜଣେ କହିଲା—'ମୁଁ ଆପଣଙ୍କୁ, ବୃହତ୍ ବୃକ୍ଷକୁ, ବୃକ୍ଷର ବିଶାଳ ଶାଖା ପ୍ରଶାଖାକୁ ଓ ତହିଁ ଉର୍ଦ୍ଧ୍ୱରେ ଥିବା ପକ୍ଷୀକୁ ଦେଖି ପାରୁଛି ।'

''ଆଚାର୍ଯ୍ୟ ତାକୁ କହିଲେ—'ବାଣକୁ ତୂଣୀରରେ ରଖି ପଛକୁ ଘୁଞ୍ଚିଯା ।' ଆଉ ଜଣେ ଆଗକୁ ଆସିଲା । ଏହିଭଳି ଜଣ ଜଣ କରି ସମସ୍ତେ ଗୁରୁଦେବଙ୍କ ଆଗକୁ ଆସିଲେ । କିଏ ବୃକ୍ଷକୁ ଦେଖି ପାରୁଛି, କିଏ ଶାଖାକୁ ଦେଖିପାରୁଛି ତ ଆଉ କେହି କେବଳ ପକ୍ଷୀକୁ ଦେଖୁଛି ବୋଲି କହିଲେ । ସବାଶେଷରେ ଅର୍ଜୁନଙ୍କ ପାଳି ପଡ଼ିଲା । ସେ ଯେତେବେଳେ ଧନୁର୍ବାଣରେ ସଜ୍ଜିତ ହୋଇ ଠିଆ ହୋଇଗଲେ ସେତେବେଳେ ଆଚାର୍ଯ୍ୟ ପଚାରିଲେ—'ତୁମେ ମୋତେ ଦେଖି ପାରୁଛ ?' ଅର୍ଜୁନ କହିଲେ—'ନାହିଁ ଆଜ୍ଞା !' ଆଚାର୍ଯ୍ୟ ପଚାରିଲେ—'ଏଇ ବୃକ୍ଷକୁ ଦେଖି ପାରୁଛ ?' ପାର୍ଥ ନାହିଁ କଲେ । ଏହା ପରେ ଆଚାର୍ଯ୍ୟ ପଚାରିଲେ—'ଏହି ବୃକ୍ଷର ଯେଉଁ ଡାଳରେ ପକ୍ଷୀ ବସିଛି, ତୁମେ ସେହି ଡାଳକୁ ଦେଖି ପାରୁଛ ?' ସବ୍ୟସାଚୀ ଅର୍ଜୁନ କହିଲେ—'ନାହିଁ ଆଜ୍ଞା ! ମୁଁ ସେ ଡାଳକୁ ବି ଦେଖିପାରୁ ନାହିଁ ।' ଏହା ପରେ ପୁଣି ଆଚାର୍ଯ୍ୟ ମହାଶୟ ପଚାରିଲେ—'ତା ହେଲେ ପକ୍ଷୀକୁ ଦେଖି ପାରୁଛ ତ ?'

''ଏଥର ଅର୍ଜୁନ କହିଲେ—'ନାଁ, ମୁଁ ପକ୍ଷୀକୁ ବି ଦେଖୁ ନାହିଁ ।'

''ଦ୍ରୋଣାଚାର୍ଯ୍ୟ ଆଶ୍ଚର୍ଯ୍ୟ ହୋଇଗଲେ। ସେ ପଚାରିଲେ—'କ'ଣ କିଛି ଦେଖୁଛ ନା ଅନ୍ଧ ହୋଇଯାଇଛ ? ତୁମେ ଆଖି ଖୋଲି ଦେଖୁଛ ନା ନାହିଁ?'

''ଅର୍ଜ୍ଜୁନ କହିଲେ—'ଗୁରୁଦେବ ! ମୁଁ ପକ୍ଷୀ ମୁଣ୍ଡର ସେଇ ଅଂଶ ଦେଖିପାରୁଛି ଯେଉଁ ସ୍ଥାନରେ ମୁଁ ବାଣ ପ୍ରହାର କଲେ ମୁଣ୍ଡଟି କଟିଯିବ।'

''ଅର୍ଜ୍ଜୁନଙ୍କଠାରୁ ଏପରି କଥା ଶୁଣି ଦ୍ରୋଣାଚାର୍ଯ୍ୟ ଉତ୍‌ଫୁଲ୍ଲିତ ହୋଇଗଲେ। ସେ ପ୍ରସନ୍ନତାର ସହିତ କହିଲେ,'ଅର୍ଜ୍ଜୁନ ! ଲକ୍ଷ୍ୟଭେଦର ରହସ୍ୟ ତୁ ହିଁ କେବଳ ବୁଝିଛୁ। ଯାଅ, ମୁଁ ତୋତେ ଆଶୀର୍ବାଦ ଦେଉଛି, ତୋ ଲକ୍ଷ୍ୟ କଦାପି ବ୍ୟର୍ଥ ହେବ ନାହିଁ।' ଯେ ପର୍ଯ୍ୟନ୍ତ ମନ ଲକ୍ଷ୍ୟରେ ତନ୍ମୟ ରହିନଥାଏ, ଯେ ପର୍ଯ୍ୟନ୍ତ ତାହା ବ୍ୟତୀତ ଅନ୍ୟ ସବୁଥିରୁ ଦୃଷ୍ଟି ଅପହୃତ ହୋଇ ନ ଥାଏ, ସେ ପର୍ଯ୍ୟନ୍ତ ଲକ୍ଷ୍ୟଭେଦ ହୋଇପାରେ ନାହିଁ। ସେହିଭଳି **ବ୍ରହ୍ମ ହେଉଛି ଏକ ଲକ୍ଷ୍ୟ। ଆତ୍ମା ହେଉଛି ବାଣ, ପ୍ରଣବ ହେଉଛି ଧନୁ, ଆଉ ଯିଏ ଅପ୍ରମତ୍ତ ହୋଇ ଭେଦ କରେ ସେ ହିଁ ବ୍ରହ୍ମବିତ୍ ହୋଇଥାଏ।**

''ସଂକ୍ଷେପରେ କହିଲେ, **ଯେ କୌଣସି କାର୍ଯ୍ୟ ସୁଚାରୁରୂପେ ସଂପନ୍ନ ହୋଇପାରେ, ଯଦି ତହିଁରେ ତଦାକାର ହୋଇଯାଇ ଥିବା, ତାହା ବ୍ୟତିରେକ ଅନ୍ୟ କିଛି ଦେଖିପାରୁ ନଥିବା, ତହିଁରେ ମିଶିଯାଇଥିବା।''**

ମହର୍ଷି ଶୌନକ ପଚାରିଲେ, ''ତା ହେଲେ ହେ ମହର୍ଷି ସୂତ ! ଆମେ ଏହି କଥା ସହଜରେ ବୁଝିଗଲୁ। ଏବେ ସେହି ବାଣ ତିଆରି କରୁଥିବା ଲୋକର କଥା କୁହନ୍ତୁ।''

ମହର୍ଷି ସୂତ କହିଲେ, ହେ ମୁନିଗଣ ! ଅବଧୂତ ମୁନି ରାଜା ଯଦୁଙ୍କୁ କହିଲେ, ''ମହାରାଜ ! ମୁଁ ଅନେକ ସମୟ ପର୍ଯ୍ୟନ୍ତ ସେଠାରେ ଠିଆ ହେଲି। ଏହି ସମୟରେ ରାଜାଙ୍କ ସବାରି ସେଇ ବାଟେ ଗଲା। ତାଙ୍କ ସହିତ ଅନେକ ସୈନ୍ୟ ଥିଲେ। ହାତୀ-ଘୋଡ଼ା, ପଦାତିକ, ସବୁ ଥିଲା। ସର୍ବାଗ୍ରରେ ବାଜା ବାଜୁଥିଲା। ଗାୟକମାନେ ଗୀତ ଗାଉଥିଲେ ଓ ନର୍ତ୍ତକୀ ନୃତ୍ୟ କରୁଥିଲେ। ମୁଁ ଠିଆ ହୋଇ ସବୁ ଦେଖୁଥିଲି। ହେଲେ ସେହି ବାଣ ନିର୍ମାଣକାରୀ ନିଜ କାମରେ ବ୍ୟସ୍ତ ଥିଲା। ରାଜାଙ୍କ ଶୋଭାଯାତ୍ରା ଚାଲିଗଲା। କିଛି ସମୟପରେ ମୁଁ ଯାଇ ପଚାରିଲି—'ହେ ମହାଶୟ ! କ'ଣ କରୁଛନ୍ତି କି ? ତୁମେ ରାଜାଙ୍କର ଶୋଭାଯାତ୍ରା ଦେଖିଲ ନା ନାହିଁ?''

''ସେ ଚମକି ଉଠି କହିଲା, 'ନାହିଁ ଆଜ୍ଞା ! ମୁଁ ରାଜାଙ୍କ ଶୋଭାଯାତ୍ରା ତ ଦେଖିନାହିଁ।'

''ମୁଁ କହିଲି 'କ'ଣ ହେଲା ! ତୁମ ଆଗରେ ପରା ଗଲା !'

''ସେ ବୋକାଙ୍କ ଭଳି ମୋତେ ଚାହିଁ କହିଲା—'ଭଗବନ୍ ! କେତେବେଳେ ଏତେ ସବୁ ହୋଇଗଲା ? ମୁଁ କିଛି ବି ଜାଣି ନାହିଁ। ମୋ ଜାଣିବାରେ ତ ଯାଇନାହିଁ।''

ଅବଧୂତ ମୁନି କହିଲେ—"ରାଜନ୍! ତା'ର ତନ୍ମୟତା ମୋତେ ଖୁବ୍ ପ୍ରଭାବିତ କଲା। ସେଇ ମୁହୂର୍ତ୍ତରେ ମୁଁ ତାକୁ ମୋର ଗୁରୁ କଲି। ମୋକ୍ଷ ଯେଉଁମାନେ ଚାହାନ୍ତି, ସେପରି ଯତି ଏହି ବାଣ ନିର୍ମାଣକାରୀ ଭଳି ନିଜ ଚିତ୍ତକୁ ଏକାଗ୍ର କରିବା ଉଚିତ।"

ରାଜା ଯଦୁ ପଚାରିଲେ—"ବ୍ରହ୍ମନ୍! ଚିତ୍ତକୁ ଏକାଗ୍ର କରିବାର ଉପାୟ କ'ଣ ?"

ଅବଧୂତ ମୁନି କହିଲେ—"ରାଜନ୍! ସର୍ବପ୍ରଥମେ ବିଷୟ ପ୍ରତି ବୈରାଗ୍ୟ ହୋଇଯିବା ଉଚିତ୍। ଏହି ଦୃଶ୍ୟ-ପ୍ରପଞ୍ଚକୁ . ମିଥ୍ୟା ବୋଲି ବୁଝିବା ଉଚିତ, ଆଉ ଏପରି ଅଭ୍ୟାସ ଅଧିକରୁ ଅଧିକ କରୁଥିବା ଉଚିତ। ଅଭ୍ୟାସ ବିନା ବୈରାଗ୍ୟ ସ୍ଥିର ରହେନି। ଏଣୁ ଅଭ୍ୟାସ ଓ ବୈରାଗ୍ୟ ଉଭୟର ଆବଶ୍ୟକ ଅଛି। ଆଳସ୍ୟକୁ ସର୍ବଥା ବର୍ଜନ କରୁଥିବା ଉଚିତ। ଦୃଢ଼ ଆସନରେ ବସି ପ୍ରାଣକୁ ସଂଯମ କରିବା ଉଚିତ। ପ୍ରାଣାୟାମ ଅଭ୍ୟାସ କରି ପ୍ରାଣଉପରେ ବିଜୟହାସଲ କରିବା ଉଚିତ। ମନ ତ୍ରିଗୁଣାତ୍ମକ ବିଷୟର ବାସନାରେ ଅଶୁଦ୍ଧି ହୋଇଯାଇଛି। କିନ୍ତୁ ବାସ୍ତବରେ ଏହା ଅଶୁଦ୍ଧ ନୁହେଁ। ଏଥିରେ ସଂସର୍ଗଜନ୍ୟ ଦୋଷ ଲାଗିଯାଇଛି। ବସ୍ତ୍ର ତ ଶୁଦ୍ଧ ଓ ସ୍ୱଚ୍ଛ ହୋଇଥାଏ। କିନ୍ତୁ, ଏହା ଉପରେ ବାହାରୁ ମଳି ଲାଗିଯାଏ। ଯୁକ୍ତିପୂର୍ବକ କ୍ଷାରରେ ଧୌତ କଲେ ମଳି ଛାଡ଼ିଯାଏ। ଆଉ ତାହା ପୂର୍ବଭଳି ସ୍ୱଚ୍ଛ, ପରିଷ୍କାର ହୋଇଯାଏ। ପ୍ରଥମେ ତାହା ଶୁଦ୍ଧ ଥିଲା। କ୍ଷାର ଲଗାଇବାଦ୍ୱାରା ଅନ୍ୟକେଉଁଠାରୁ ଶୁଦ୍ଧତା ପଳାଇ ଆସିଲା ନାହିଁ। ତା'ର ଶୁଦ୍ଧତା ଥିଲା, ଓ ପୁଣି ତାହା ପ୍ରକାଶ ପାଇଲା। ଠିକ୍ ସେହିଭଳି ସତ୍ତ୍ୱ, ରଜ ଆଉ ତମ ଏହି ତିନୋଟି କାରଣରେ ମନ ମଇଳା ହୋଇଯାଏ। କର୍ମରୂପୀ ଧୂଳି ତାହା ଉପରେ ବୋଳିହୋଇଯାଏ। ରଜ ଓ ତମର ବୃଦ୍ଧିରେ ରାଗ, ଅଜ୍ଞାନ, ମୋହ, ଆଳସ୍ୟ ତଥା ପ୍ରମାଦ ଆଦି ବଢ଼ିଯାଏ। ଏଣୁ ସର୍ବପ୍ରଥମେ ସତ୍ତ୍ୱଗୁଣକୁ ବଢ଼ାଇବା ଆବଶ୍ୟକ। ସତ୍ତ୍ୱଗୁଣ ବଢ଼ିବାଦ୍ୱାରା ରଜୋଗୁଣ ଓ ତମୋଗୁଣ ସ୍ୱତଃ ବଢ଼ିଯିବ। ଯେପରି ଅଗ୍ନିରେ ଯେ ପର୍ଯ୍ୟନ୍ତ ଇନ୍ଧନ ପଡୁଥିବ, ସେ ପର୍ଯ୍ୟନ୍ତ ଅଗ୍ନି ପ୍ରଜ୍ୱଳିତ ହେଉଥାଏ ଓ ସେଥିରୁ ଧୂଆଁ ବାହାରୁଥାଏ। ଇନ୍ଧନ ନ ପକାଇଲେ ତାହା ଧୂଆଁବିନା ଦହକୁ ଥାଏ। କିଛିସମୟ ପରେ ତାହା କୋଇଲା ଆଉ ପାଉଁଶକୁ ତ୍ୟାଗକରି ନିଜେ ମହାଜ୍ୟୋତିରେ ମିଳେଇଯାଏ। ଠିକ୍ ଏହିଭଳି ରଜୋଗୁଣ ଓ ତମୋଗୁଣ ହେଉଛି ଇନ୍ଧନ। ସତ୍ତ୍ୱର ବୃଦ୍ଧିରେ ମନ ନିର୍ଧୂମ ଅଗ୍ନିଭଳି ହୋଇଯିବ। ଆତ୍ମା ପରମାତ୍ମାଙ୍କୁ ପ୍ରାପ୍ତ ହୋଇଯିବ। ଚିତ୍ତର ନିରୋଧ (ନିରୁଦ୍ଧ) ହୋଇଗଲେ ନା ବାହାରର କିଛି ଦେଖାଯିବ ନା ଭିତରର। କେବଳ ନିଜର ଲକ୍ଷ୍ୟ ହିଁ ଦୃଷ୍ଟିଗୋଚର ହେବ।" ★

---

★ ଅଭ୍ୟାସେ ଜିଣି ମୁଁ ପବନ । ନିରୋଧ ଏ ଚଞ୍ଚଳ ମନ ।।
ବୈରାଗ୍ୟ ଯୋଗ ଅଭ୍ୟାସେନା ବୁଲଇ ଆତ୍ମ ସଂଯମେନ ।।
ଏକାଗ୍ର କରି ଦୃଢ଼ ମନ । ହରିର ପାଦେ ନିବେଦନ ।।
ତେଣୁ ନିଶ୍ଚଳ ମୋର ଧ୍ୟାନ । ବଞ୍ଚଇ ଦୁଃଖ ସୁଖେ ଦିନ ।।
ସ୍ୱଭାବେ ରଜୋଗୁଣ ଛାଡ଼ି । ସତ୍ତ୍ୱ ସଂଯୋଗେ ତମ ଏଡ଼ି ।।
ସତ୍ତ୍ୱକୁ ଜିଣି ସତ୍ତ୍ୱ ଗୁଣେ । ନିର୍ବାଣ ପରମକାରଣେ ।।

ରାଜା ଯଦୁ କହିଲେ—''ବ୍ରହ୍ମନ୍! ବାଣ ତିଆରି କରୁଥିବା ଲୋକଠାରୁ ପାଇଥିବା ଶିକ୍ଷା କଥା ତ ମୁଁ ଶ୍ରବଣ କଲି, ଏବେ ଆପଣ ମୋତେ ସର୍ପକୁ କାହିଁକି ଗୁରୁ କଲେ କୁହନ୍ତୁ। ସର୍ପ ସହଜେ ବିଷଧର, ତା' ପାଖରେ ପୁଣି କେଉଁ ଗୁଣ ଅଛି ?''

ଏପରି କଥା ଶୁଣି ଅବଧୂତ ମୁନି ହସି ହସି କହିଲେ—''ରାଜନ୍! ସେ ବିଷଧର ହେଲେ କ'ଣ ହୋଇଯାଉଛି, ମୁଁ ତ କେବଳ ଗୁଣ ଗ୍ରହଣ କରେ। ଗୁଣ ଯେ କୌଣସି ସ୍ଥାନରେ ଦେଖିଲେ ତାହା ଗ୍ରହଣ କରିବା ଉଚିତ। ଠିକ୍ ଅଛି। ଏବେ ମୁଁ ସର୍ପଠାରୁ ଯାହା ଶିକ୍ଷା କରିଛି ତାହା ବର୍ଣ୍ଣନା କରୁଛି ଶୁଣନ୍ତୁ।''

ମହର୍ଷି ସୂତ କହୁଛନ୍ତି, ''ହେ ମୁନିଗଣ! ଏବେ ଆପଣ ସର୍ପଠାରୁ ପାଇଥିବା ଶିକ୍ଷା ପ୍ରସଙ୍ଗ ଶାନ୍ତ ଭାବରେ ଶ୍ରବଣ କରନ୍ତୁ।

## ଛପ୍ପୟ

ରଜ ତମ ରୂପୀ ମୈଳ ତ୍ୟାଗି ଜଗବନ୍ଧନ ତୋଡ଼େ।
ପ୍ରବିଶି ପରମ ପଦ ଚିତ୍ତ ଧୂଳି କରମନିକୀ ଛୋଡ଼େ॥
ଆତ୍ମା ମହଁ ଚିତରୋଧ ହୋହି ମହଁ ସୁଖ ପାଓ୍ୱେ।
ଭୀତର ବାହାର ଫେରି ନ କଛୁ ଜଗ ବସ୍ତୁ ଦିଖାଓ୍ୱେ॥
ବାଣକାରକେ ସରିସ ନିତ, କରୈ ଚିତ୍ତ ଏକାଗ୍ର ଯତି।
ଦେହି ଧ୍ୟାନ ନହିଁ ଜଗତ ମହଂ, ତବ ପାଓ୍ୱେ ତ୍ୟାଗୀ ସୁଗତି॥



---

ନିଶ୍ଚଳେ ଥାଇ ଆତ୍ମଧ୍ୟାନେ । ବାହ୍ୟ ଅନ୍ତର ନ ପ୍ରମାଣେ ॥
ଯେସନେ ସରକାରୀ ପଥେ । ଶର ବିନ୍ଧଇ ହେତମାଥେ ॥
ତାର ନିକଟେ ରାଜା ଗଲା । ସେ ତାହା ଜାଣି ନ ପାରିଲା ॥
ତେଣୁ ତାହାର ତହୁଁ ଦେଖି । ମୁଁ ଏବେ ଗୁରୁଶିକ୍ଷା ଶିଖି ॥
ଏକା ମୁଁ ଭ୍ରମଇଁ ସଂସାର । ମୋହର କାହିଁ ନାହିଁ ପର ॥

—ଭାଗବତ : ଜଗନ୍ନାଥ ଦାସ : ସ୍କ ୧୧ଶ ଅ.୧୦ ମ.

# ସର୍ପଠାରୁ ଶିକ୍ଷା

ଗୃହାରମ୍ଭୋତିଦୁଃଖାୟ    ବିଫଲଶ୍ଚାଧ୍ରୁବାତ୍ମନଃ ।
ସର୍ପଃ ପରକୃତଂ ବେଶମ୍ ପ୍ରବିଶ୍ୟ ସୁଖମେଧତେ ॥ 

[ଶ୍ରୀଭା.୧୧ ସ୍କ.୯ ଅ.୧୫ ଶ୍ଳୋକ]

### ଛପ୍ପୟ

ଅହି ସମ ବିଚରୈ ଭିକ୍ଷୁ ଅକେଲୌ ସବ ତୈ ଛିପିକେଂ ।
ଏକ ସ୍ଥାନ ନହିଁ ରହୈ ଗୁହା ମେଂ ସୋବେଁ ଲୁକିକେଂ ।
କବହୁଁ ନ କରୈ ପ୍ରମାଦ ସମୟକୁଁ ବ୍ୟର୍ଥ ନ ଖୋବୈ ।
ଜନ ସଂଗ୍ରହ ନହିଁ କରୈ ଅଲ୍ପଭାଷୀ ନିତ ହୋବୈ ॥
ପରୈ ନ ମଠକେ ଫେର ମେଂ, କଙ୍କର ପଥର ଜୋରିକେଂ ।
ପରୟୋ ରହୈ ଏକାନ୍ତ ମେଂ, ସବତେଂ ନାତୋ ତୋରିକେଂ ॥

ଗୃହ ଶବ୍ଦର ଅର୍ଥ ଯାହା ବାନ୍ଧି ଦିଏ, ଫସାଇ ଦିଏ । ଗୃହସ୍ଥ ଘର ତିଆରି କରି ଏପରି ଫସିଯାଏ ଯେ ତହିଁରୁ ବାହାରିବା ଅତ୍ୟନ୍ତ କଷ୍ଟସାଧ୍ୟ ହୋଇଯାଏ । ପ୍ରତ୍ୟେକ ଇଟାପ୍ରତି ତା'ର ଅନୁରାଗ ହୋଇଯାଏ । ଘର ଚାଳରେ ଯେତେ ଗଣ୍ଠିପଡ଼େ ସେତିକି ଗଣ୍ଠି ତାହାର ହୃଦୟରେ ପଡ଼ିଯାଏ । ଏହି ସଜୀବ ଦେହରୂପୀ ଘରେ ଯେତେ ମମତ୍ୱ ଥାଏ ସେତିକି ମମତ୍ୱ ସେହି ନିର୍ଜୀବ ଗୋଡ଼ି ଓ ପଥର ଘରେ ହୋଇଯାଏ । ଯେଉଁ ବସ୍ତୁକୁ ପ୍ରତ୍ୟହ ଅନୁରାଗର ସହିତ, ଆପଣାପଣର ସହିତ ଦେଖିବା, ସେଥିରେ ମୋହ ନିଶ୍ଚିତ ହୋଇଯିବ । ହୃଦୟ ଉପରେ ସଂସ୍କାର ଧୀରେ ଧୀରେ ପଡ଼େ, ଆଉ ତାହା ଅଲିଭା ହୋଇଯାଏ । ପେଟରେ ପିଲା ରହିବା ସମୟରୁ ପିତା-ମାତାଙ୍କ ଉପରେ ସଂସ୍କାର ପଡ଼ିବା ଆରମ୍ଭ ହୋଇଯାଏ । ପିଲା ହେବ, ବଡ଼ ହେବ । ଗର୍ଭ ଛ'ମାସର ହୋଇଗଲେ କେତେ ନା କେତେ ଦୁଃଖ ହୁଏ । ଏ ପର୍ଯ୍ୟନ୍ତ ପିଲା ନାହିଁ, ପୂରା ଶରୀର ବି ହୋଇନାହିଁ, ତେବେ ବି ଛ ମାସରୁ ହିଁ ସଂସ୍କାର ପଡ଼ିଯାଏ । ଏଥିପାଇଁ ଦୁଃଖ ଆସେ । ଜନ୍ମହୋଇ ମରିଗଲେ ଆହୁରି ଦୁଃଖହୁଏ, କାରଣ ତା'ର ମୁହଁ ଦେଖିବା କ୍ଷଣି ମୋହ ହୋଇଯାଏ । ଦୁଇ ତିନି ବର୍ଷର ହୋଇଯିବା ପରେ ମଲେ ତା'ଠାରୁ ଅଧିକ ଦୁଃଖ

---

 କ୍ଷଣଭଙ୍ଗୁର ଯା' ଶରୀର । ଗୃହ-ଆରମ୍ଭ ସେ ଲୋକର ॥
ଦୁଃଖ ନିମିତ୍ତରେ ହୁଅଇ । ନିତ୍ୟରେ ବିଫଳ ଅଟଇ ॥
ପରନିର୍ମିତ ଗୃହେ ରହି । ସର୍ପ ଯେସନେ ସୁଖ ପାଇ ॥

[ଭାଗବତ : ଜଗନ୍ନାଥ ଦାସ : ୧୧ଶ ସ୍କନ୍ଧ]

ହୁଏ। ବଡ଼ ହୋଇ ଯୁବାବସ୍ଥାରେ ଯଦି କାହା ପୁଅ ମରେ ତେବେ ମାତାପିତାଙ୍କୁ କେତେ ଦୁଃଖ ହୁଏ ତାହା କେବଳ ସେଇମାନେ ଜାଣନ୍ତି। ପିଲା ତ ଜନ୍ମବେଳେ ଯେପରି, ବଡ଼ହେଲେ ବି ସେହିପରି। କିନ୍ତୁ, ଏତେଦିନ ଏକାଠି ରହିବାଦ୍ୱାରା ତା' ପ୍ରତି ମମତା ଅତ୍ୟଧିକ ବଢ଼ିଯାଇଥାଏ। ଯାହାପ୍ରତି ଯେତେ ଅଧିକ ମମତା ହୋଇଥାଏ, ତା' ବିୟୋଗରେ ସେତେ ଅଧିକ କଷ୍ଟ ହୋଇଥାଏ। ବସ୍ତୁଗୁଡ଼ିକ ଦୁଃଖର କାରଣ ହୋଇ ନ ଥାନ୍ତି, ଦୁଃଖର କାରଣ ହୋଇଥାଏ (ବସ୍ତୁପ୍ରତି) ମମତା। ନିରନ୍ତର ସଂଗ କରିବା ଦ୍ୱାରା, ନିରନ୍ତର ତା'ର ସୁବିଧାକୁ ସ୍ୱୀକାର କରିବା ଦ୍ୱାରା ମମତା ହୋଇଯାଏ। ଏଣୁ ତ୍ୟାଗପଥର ପଥିକକୁ ଅଧିକ ଦିନ ପର୍ଯ୍ୟନ୍ତ କୌଣସି ଗୋଟିଏ ସ୍ଥାନରେ ରହିବା ଉଚିତ ନୁହେଁ, କି କାହା ପ୍ରତି ମମତା ରଖିବା ଉଚିତ ନୁହେଁ।

ମହର୍ଷି ସୂତ କହିଲେ—ହେ ମୁନିଗଣ! ସର୍ପଠାରୁ ଗ୍ରହଣ କରିଥିବା ଶିକ୍ଷା ପ୍ରସଙ୍ଗ ବର୍ଣ୍ଣନା କରିବାକୁ ଯାଇ ଅବଧୂତ ମୁନି ଯଦୁରାଜାଙ୍କୁ କହିଲେ—''ରାଜନ୍! ସର୍ପ ବିଷାକ୍ତ ଜନ୍ତୁ ହେଲେ କ'ଣ ହେଲା, ଆମେ ତ ଆମ୍ବ ଖାଇବା କଥା, ଗଛ ଗଣିବାର କି ଆବଶ୍ୟକତା! ଉତ୍ତମ ବିଦ୍ୟା ଯଦି ନୀଚ ପାଖରେ ବି ଥାଏ, ତାହା ତା'ଠାରୁ ଗ୍ରହଣ କରିବା ଉଚିତ। ଏହି ସଂସାର ଗୁଣ-ଦୋଷରେ ନିର୍ମିତ। ପ୍ରାଣୀମାନଙ୍କଠାରେ ଦୋଷଥିବା ସ୍ୱାଭାବିକ କଥା। ଆମେ ଯଦି ଅନ୍ୟର ଦୋଷ ଦେଖିବା ତେବେ ସେହି ଦୋଷର ସଂସ୍କାର ଆମ ଭିତରକୁ ପ୍ରଥମେ ଆସିଯାଏ। ଏଣୁ, ପରମାର୍ଥ ପଥର ଏତେ ଟିକିଏ ଗୁଣକୁ ପର୍ବତ ଭଳି ମନେକରି ନିଜ ହୃଦୟରେ ତାହାର ବିକାଶ କରିଥା'ନ୍ତି। ସର୍ପଠାରେ ମୁଁ ଅନେକ ଗୁଣ ଦେଖିଛି, ତା'ଠାରୁ ମୁଁ ଅନେକ ଶିକ୍ଷା ଗ୍ରହଣ କରିଛି. ତେଣୁ, ତାକୁ ମୁଁ ମୋର ପରମଗୁରୁ ବୋଲି ମାନିଛି।''

ରାଜା ପଚାରିଲେ—''ବ୍ରହ୍ମନ୍! ସର୍ପଠାରୁ ଆପଣ କି କି ଶିକ୍ଷା ଗ୍ରହଣ କରିଛନ୍ତି ?''

ଅବଧୂତ ମୁନି କହିଲେ—''ରାଜନ୍! ସର୍ବପ୍ରଥମେ ମୁଁ ଏହି ଶିକ୍ଷା ସର୍ପଠାରୁ ଗ୍ରହଣ କରିଛି ଯେ, ସର୍ପ ଯେଉଁଭଳି ଏକାକୀ ରହେ, ସେହିଭଳି ଯତି ସର୍ବଦା ଏକାକୀ ରହିବା ଉଚିତ। ରାଜନ୍! ଆପଣ ମାନନ୍ତୁ ବା ନମାନ୍ତୁ, ଯିଏ ଯାହା ସହିତ ରହିବ ତା'ହୃଦୟର ପ୍ରଭାବରେ ନିଶ୍ଚୟ ପ୍ରଭାବିତ ହେବ। ଦେଖନ୍ତୁ! ହୃଦୟ ତ ହେଉଛି ଅତି କୋମଳ ବସ୍ତୁ। ପଥର କେଡ଼େ କଠିନ, କିନ୍ତୁ ଦଉଡ଼ି ସଂସ୍ପର୍ଶରେ ଆସି ଘର୍ଷଣରେ ତହିଁରେ କେଡ଼େ ବଡ଼ ଗର୍ତ୍ତ ହୋଇଯାଏ। ତେଣୁ, ସର୍ପ ଭଳି ଏକାନ୍ତରେ ନିଃସଙ୍ଗ ଭାବରେ ଆତ୍ମ-ଚିନ୍ତନ କରୁଥିବା ଉଚିତ।''

''ଦ୍ୱିତୀୟ ଶିକ୍ଷା, ସର୍ପ କେତେବେଳେ ହେଲେ କୌଣସି ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ରହେନାହିଁ, ଏହି ଶିକ୍ଷା ମୁଁ ତା'ଠାରୁ ଗ୍ରହଣ କରିଛି। ଆଜି ଏଠି ତ କାଲି ସେଠି, ଏପରି ବୁଲୁଥାଏ। ଠିକ୍ ଏହିଭଳି ଭିକ୍ଷୁ ଯତି କୌଣସି ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ସବୁବେଳେ ରହିବା ଉଚିତ ନୁହେଁ। ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ରହିଲେ ଉକ୍ତ ସ୍ଥାନ ପ୍ରତି ଆସକ୍ତି ହୋଇଯାଏ। ସଂସାରର ଅଣୁ ପରମାଣୁ ତା' ଆଡ଼କୁ ସବୁବେଳେ ଆକର୍ଷଣ କରିବାରେ ଲାଗିଥାଏ। ସମସ୍ତେ ଆମକୁ ବାନ୍ଧିବାକୁ ଚାହାନ୍ତି, ସମସ୍ତେ ଆମକୁ ଏକାଠି-ସମ୍ବନ୍ଧ ରଖି ରହିବା ପାଇଁ ସତତ ଉତ୍ସୁକ ଥା'ନ୍ତି। ଏଣୁ, ସାଧୁ ସର୍ବଦା ବିଚରଣ କରିବାରେ ଆନନ୍ଦ ଉପଲବ୍ଧ କରୁଥିବା ଆବଶ୍ୟକ। ଯେଉଁ ଜଳ ବହିଚାଲିଥାଏ ତାହା ନିର୍ଦ୍ଦୋଷ

ଓ ଶୁଦ୍ଧ ରହିଥାଏ। ଆବଦ୍ଧ ଜଳରୁ ଦୁର୍ଗନ୍ଧ ବାହାରେ, ପୋକ ଜାତ ହୁଏ। ଏଣୁ, ସାଧୁ ବିଚରଣ କରୁଥିବା ଦରକାର। କଥିତ ଅଛି, 'ପାଣି ବୋହୁଥିଲେ ଭଲ, ସାଧୁ ବୁଲୁଥିଲେ ଭଲ।'' (୧)

''ସର୍ପଠାରୁ ମୁଁ ଏପରି ତୃତୀୟ ଶିକ୍ଷା ଗ୍ରହଣ କରିଛି ଯେ—ସର୍ପ ସବୁବେଳେ ସଚେଷ୍ଟ ରହିଥାଏ। ତା'ର କାନ ନାହିଁ, ଆଖିରେ ଦେଖେ, ସେଥିରେ ବି ଶୁଣେ। ଏଣୁ, ସର୍ପର ଆଉ ଏକ ନାମ ହେଉଛି 'ଚକ୍ଷୁଶ୍ରବା'। ଠିକ୍ ଏହିଭଳି ଯତି ସବୁସମୟରେ ପରମାର୍ଥଙ୍କ ବିଷୟରେ ସଚେଷ୍ଟ ରହିଥିବା ଉଚିତ। କେତେବେଳେ ବି ଆଳସ୍ୟ ପ୍ରମାଦକୁ ପ୍ରଶ୍ରୟ ଦେବା ଉଚିତ ନୁହେଁ। ନିଦ୍ରା, ଆଳସ୍ୟ, ପ୍ରମାଦ ଏ ସବୁ ହେଉଛି ତମୋଗୁଣର ଚିହ୍ନ। ତମୋଗୁଣ ଅଜ୍ଞାନରୁ ହୁଏ। ଏଣୁ ଯୋଗୀ ସବୁବେଳେ ସତ୍ତ୍ୱରେ ସ୍ଥିତ ରହିଥିବା ଦରକାର।

''ମୁଁ ଯେଉଁ ଚତୁର୍ଥ ଶିକ୍ଷା ଗ୍ରହଣ କରିଛି ତାହା ଶୁଣନ୍ତୁ। ସର୍ପ କେବେହେଁ କାହା ସମ୍ମୁଖକୁ ଆସି ଶୁଏ ନାହିଁ। ସେ ଏକାକୀ ଯାଇ ଚୁପ୍‌ଚାପ କୌଣସି ଏକାନ୍ତ ସ୍ଥାନରେ ବା ଗୁମ୍ଫାରେ ପଡ଼ିରହେ, ଆହାର ନିମନ୍ତେ ଅନ୍ୟଙ୍କର ଦୃଷ୍ଟି ଅନ୍ତରାଳରେ ବାହାରେ। ଠିକ୍ ଏହିଭଳି ଯତିକୁ ଜନ ସମୁଦାୟଠାରୁ ପୃଥକ୍ ରହି କୌଣସି ପର୍ବତ କନ୍ଦରରେ ହେଉ, ଘଞ୍ଚ ବନରେ ହେଉ, ଅଥବା ନିର୍ଜନ ସ୍ଥାନରେ, ଭଙ୍ଗା ରୁଜା କୌଣସି ମଠ ବା ମନ୍ଦିରରେ ରହି ଧ୍ୟାନ-ଧାରଣାରେ ସମୟ ଅତିବାହିତ କରିଦେଉଥିବା ଉଚିତ।

''ମୋର ପଞ୍ଚମ ଶିକ୍ଷା ହେଉଛି—ସର୍ପ ଯେଉଁଭଳି କ'ଣ ଖାଏ, କେତେ ଶୁଏ, କ'ଣ କରେ, ଏସବୁ କଥାକୁ ଗୋପନ ରଖେ, ଠିକ୍ ସେହିଭଳି ଯତି ବାହ୍ୟ ଆଚରଣରେ ନିଜକୁ ଲୁଚାଇ ରଖିବା ଉଚିତ। ସେ ଏପରି ଆଚରଣ କରୁଥିବା ଉଚିତ ଯେ ଲୋକମାନେ ତାକୁ ବିଶିଷ୍ଟ ବ୍ୟକ୍ତି ବୋଲି ନ ଜାଣନ୍ତି ଓ ଆଦର ସତ୍କାର ନ କରନ୍ତି। ସାଧାରଣ ଲୋକଙ୍କ ଭଳି ବ୍ୟବହାର କରୁଥିବା ଉଚିତ। ଅତି ସାଧାରଣ ଭାବ ପ୍ରଦର୍ଶନ କରୁଥିବା ଉଚିତ। ସାରକଥା ଏହା ଯେ, **ନିଜର ତପ, ତେଜ ଓ ପ୍ରଭାବକୁ ଯଥାଶକ୍ତି ପ୍ରକଟ ହେବାକୁ ଦେବା ନାହିଁ। ଲୋକମାନେ ଆମର ଅଧିକ ପୂଜା, ସ୍ୱାଗତ ନ କରୁଥିବା ଭଳି ବ୍ୟବସ୍ଥାମାନ ଗ୍ରହଣ କରି ସମସ୍ତଙ୍କଠାରୁ ଦୂରେଇ ରହି, ଏକାନ୍ତରେ ନିଜର ଜୀବନ-ନିର୍ବାହ କରୁଥିବା ଉଚିତ।**

---

(୧) ବିଫଳ ଅନିତ୍ୟ ଦେହର । ଗୃହ ଆରମ୍ଭ ଦୁଃଖ ଘୋର ।।
ଏ ଘେନି ଗୃହାରମ୍ଭ ଛାଡ଼ି । ଦେହର ରକ୍ଷା ମାତ୍ର ଲୋଡ଼ି ।।
ପିତୃ ଅତିଥି ସେବା ଅର୍ଥେ । ଆଚାର ଥିବ ଲୋକମତେ ।।
ଆତ୍ମା କାରଣେ ବ୍ୟର୍ଥ ଘର । କେବେହେଁ ନ କରି ତତ୍ପର ।।
ଶରୀର ରଖଇ ବିରୋଳେ । ସର୍ପ ଯେସନେ ନାନା ବିଳେ ।।
ଏଣୁ ମୁଁ ସର୍ପଦୀକ୍ଷା ଧରି । ଗୃହସ୍ଥ ଆଶ୍ରମ ନ କରି ।।
ଥୟ ନ କରି ଏକସ୍ଥାନ । ବଞ୍ଚଇ ନାନତୀର୍ଥେ ଦିନ ।।

[—ଭାଗବତ : ଜଗନ୍ନାଥ ଦାସ : ସ୍କ.୧୧ଅ.୧୦]

''ସର୍ପଠାରୁ ଷଷ୍ଠ ଶିକ୍ଷା ମୁଁ ଏହା ଗ୍ରହଣ କରିଛି ଯେ, ସର୍ପ ଯେଉଁଭଳି ଅତ୍ୟନ୍ତ ସ୍ୱଳ୍ପଭାଷୀ ହୋଇଥାଏ, ସେହିଭଳି ଯୋଗୀ ବି ଅଧିକ କଥା କହିବା ଅନୁଚିତ। ସର୍ପର ବାଣୀ ଖୁବ୍ କମ୍ ଶୁଣାଯାଏ, କିନ୍ତୁ ତା'ର ଆତଙ୍କ ସର୍ବତ୍ର ଥାଏ। କିଛି ନ କହୁଥିଲେ ବି ଲୋକମାନେ ତାକୁ ଦେଖି ଡରିଯାଆନ୍ତି। ଏହିଭଳି ଯୋଗୀଙ୍କୁ ଅନେକପ୍ରକାର ବ୍ୟାଖ୍ୟାନ ଉପଦେଶ ନ କରୁଥିବା ଉଚିତ। ରାଜନ୍! ଉପଦେଶ, ବ୍ୟାଖ୍ୟାନକୁ କିଏ ଶୁଣୁଛି! କହୁଥାଅ, ସେଥିରେ ଜୀବିକା ଚଳିଯାଉଥାଏ। ଲୋକମାନେ ତ ଆଚରଣକୁ ଦେଖନ୍ତି। ଯାହାର ଆଚରଣ ବିଶୁଦ୍ଧ ତା'ର ଉପଦେଶ, ସେ ନ କହିଲେ ବି, ଲୋକମାନେ ତାହା କେବଳ ଦେଖି ଦେଖି ଗ୍ରହଣ କରିନିଅନ୍ତି। ଯିଏ ଆଚରଣ ହୀନ, ମୁହଁରେ କହେ, ଏକପ୍ରକାର ଆଚରଣ କରେ ଆଉଏକ ପ୍ରକାର, ସେ ଯଦି ଦିନତମାମ୍ ବି କହୁଥାଏ, ତା' କଥା କେହି ଶୁଣନ୍ତି ନାହିଁ। ଏଣୁ, ତ୍ୟାଗୀ ଭିକ୍ଷୁ ଅଧିକ ଗୁଡ଼ାଏ କଥାବାର୍ତ୍ତା କରିବାର ଆବଶ୍ୟକତା ନାହିଁ। ସର୍ପଭଳି ସ୍ୱଳ୍ପଭାଷୀ ହୋଇଥିବା ଉଚିତ।

''ଏଇ ଯେଉଁ ଛ'ଟି ଶିକ୍ଷା କଥା କହିଲି, ତାହା ଅନ୍ୟଠାରୁ ବି ମିଳିପାରିଥାନ୍ତା; ମାତ୍ର ସପ୍ତମ ଶିକ୍ଷା ଯାହା ମୁଁ ସର୍ପଠାରୁ ପାଇଛି ତାହା ଅତି ମହାନ୍। ଯୋଗୀମାନେ ଏହାକୁ ସବୁବେଳେ ଧ୍ୟାନରେ ରଖିଥିବା ଦରକାର।''

ଯଦୁରାଜ ପଚାରିଲେ—''ମହାରାଜ! ସେଇ ସପ୍ତମ ଶିକ୍ଷାଟି କ'ଣ?''

ଅବଧୂତ ମୁନି କହିଲେ—''ତାହା ଏହା ଯେ ଯତି କେବେହେଁ ଭୁଲରେ ବି ମଠ ବା ଆଶ୍ରମ ନ କରିବା ଉଚିତ। ଯିଏ ମଠ ପଛରେ ମାତେ ସେ ଦୁଃଖୀ ନିଶ୍ଚିତ ହୁଏ। ରାଜନ୍! ଏହି ଶରୀର ହେଉଛି ଅନିତ୍ୟ, କ୍ଷଣଭଙ୍ଗୁର। ଏବେ ଅଛି, ପରମୁହୂର୍ତ୍ତରେ କ'ଣ ହେବ କହିହେବ ନାହିଁ। ଏପରି ଶରୀରର ସବୁପ୍ରକାର ଉପଭୋଗ ପରମାର୍ଥ ନିରୂପଣରେ କରିବା ଉଚିତ। ଆତ୍ମ-ଚିନ୍ତନରେ ତାକୁ ଲଗାଇ ଦେବା ଉଚିତ। ଶରୀରକୁ ସୁଖ ଦେବାକୁ ଯାଇ ଯେଉଁମାନେ ଘର କରନ୍ତି ସେମାନେ ପଶ୍ଚାତାପ କରନ୍ତି। କେତେ ନା କେତେ ଝଙ୍କାଳିଆ ବୃକ୍ଷ ଅଛି, ଯାହା ମୂଳରେ ରହିଲେ ନା ଶୀତ ହୁଏ ନା ଗରମ। ପର୍ବତ ଗୁମ୍ଫା ଅଛି, ଭଙ୍ଗାରୁଜା ଅନେକ ମଠ-ମନ୍ଦିର ପଡ଼ିଛି, ସେପରି କୌଣସି ସ୍ଥାନରେ ପଡ଼ିରହି ସନ୍ୟାସୀ ଜୀବନ ନିର୍ବାହ କରିଦେବା ଉଚିତ। ଏହି ଶରୀର ପାଇଁ ଯିଏ ମଠ କରୁଛି, ଆଶ୍ରମ କରୁଛି, ଗୋଡ଼ି, ଇଟା, ପଥର, ଚୂନ, ବାଲି, ବଜ୍ରଲେପ, ଲୁହା, କାଠ ଆଦିର ବଖରାରେ ରହୁଛି, ତା'ର ଚିତ୍ତ ପରମାର୍ଥଙ୍କଠାରୁ ଦୂରେଇ ଯାଇ ଏପରି ଅନିତ୍ୟ, ଭୌତିକ ବସ୍ତୁରେ ଲାଗିଯାଏ। ସେ ଇଟାପଥରର ଚିନ୍ତା କରି କରି ମରନ୍ତି, ଆଉ ଇଟାପଥର ବା ସେଥିରେ ରହୁଥିବା ପୋକ ହୁଅନ୍ତି। ଗୃହସ୍ଥ ଘର ତିଆରି କରି କେବେ ସୁଖୀ ରହେ? ଯାହର ଘର ଯେତେ ବଡ଼ ହୋଇଥାଏ, ସେ ସେତେ ଅଧିକ ଦୁଃଖୀ ଓ ଚିନ୍ତିତ ରହିଥାଏ। ଯାହାର ଯେତେ ଅଧିକ ସଂଖ୍ୟକ ଘର ଥାଏ, ତା' ହୃଦୟରେ ସେତେ ଅଧିକ ଚିନ୍ତା ପୂରି ରହିଥାଏ।''

ରାଜା ପଚାରିଲେ, ''ଭଗବନ୍! ଘର କଲେ କ'ଣ ହାନି ହୋଇଯାଇଛି ଯେ? ଘର ତ ପୁଣି ମାଟି ଓ ପାଣିରେ ତିଆରି ହୋଇପାରେ?''

ତତ୍‌କ୍ଷଣାତ୍ ଅବଧୂତ ମୁନି କହିଲେ, ''ନା ରାଜନ୍! ଖରାପ ତ ସେପରି କିଛି ନାହିଁ। ଯତି ତ କାହାର ନା କାହାର ଘରେ ହିଁ ରହେ। ସର୍ପ ଯେଉଁ ଭଳି ଅନ୍ୟର ଘରେ ପଶି ତାକୁ ଅଧିକାର କରିନିଏ, ଇଚ୍ଛା ଅନୁସାରେ ସେଇ ଘରକୁ ସେହିପରି ପରିତ୍ୟାଗ କରି ଚାଲିଯାଏ, ସେ ତହିଁରେ ମମତ୍ୱ ରଖେ ନାହିଁ। ନିଜ ପାଇଁ ତିଆରି କରେ ନାହିଁ। ଘର ଚୂନରେ କି ମାଟିରେ ନିର୍ମିତ, କଥା ସେଥିରେ ନାହିଁ। ତହିଁରେ ମମତା ହୋଇଗଲେ ତାହା ସଜୀବ ମୂର୍ତ୍ତିମାନ ହୋଇଯାଏ। **ଯାହା ନିଜକୁ ଧରିପକାଏ, ବାନ୍ଧିଦିଏ, ଗ୍ରହଣ କରିପକାଏ ତା'ର ନାମ ଘର।** ନିର୍ଜୀବ ଘର କ'ଣ ଧରିବ! ଧରେ ତ ଘରଣୀ। ଘରଣୀ ବିନା ଘର ଖାଲି ଖାଲି ଲାଗେ। ଏଇ ଘରଣୀ ହିଁ ଘରର ଦେଖା-ଶୁଣା କରେ। ତହିଁରେ ମମତ୍ୱ କରେ। ଏହି ତ୍ୟାଗୀମାନଙ୍କର ମଠ-ମନ୍ଦିର ପୂର୍ବେ ଅତି ବିଶୁଦ୍ଧ ଭାବରେ ତିଆରି ହେଉଥିଲା, ସେଥିରେ ଭିକ୍ଷୁ ଯତି ରହୁଥିଲେ, ସେଥିରେ ରହିଲେ ମନରେ ମମତ୍ୱ ଆସେନାହିଁ। **ମମତ୍ୱ ବିନା ଘର ତିଷ୍ଠିପାରେ ନାହିଁ।** ଏଣୁ ଧୀରେ ଧୀରେ ସେଇ ମଠରେ ଭିକ୍ଷୁଣୀଙ୍କର ପ୍ରବେଶ ଆରମ୍ଭ ହୋଇଯାଏ, ଆଉ ସେହି ମଠ-ମନ୍ଦିର ଗୃହସ୍ଥଙ୍କର ଘରରୂପରେ ପରିଣତ ହୋଇଯାଏ। ତ୍ୟାଗୀ, ବିରାଗୀ, ଭିକ୍ଷୁ, ସନ୍ୟାସୀ ପତିତ ହୋଇ ପରମାର୍ଥଙ୍କଠାରୁ ଚ୍ୟୁତ ହୋଇଯାଆନ୍ତି। ମଠ ତିଆରି କରି ତହିଁରେ ସ୍ତ୍ରୀମାନଙ୍କୁ ପ୍ରବେଶ କରିବାକୁ ଦେବାନାହିଁ ବୋଲି ଯଦି କେହି ନିୟମ କରିଦିଏ, ତେବେ ତାହା ସଂପୂର୍ଣ୍ଣ ଅସମ୍ଭବ କଥା। ଘର ତିଆରି ହେଲେ ସ୍ତ୍ରୀ-ପୁରୁଷ ସମସ୍ତେ ରହିବେ। ସ୍ତ୍ରୀ ଆଉ ପୁରୁଷ କ'ଣ ଭିନ୍ନ ଭିନ୍ନ କି? ସେଇ ମା' ପେଟରୁ ସ୍ତ୍ରୀ ଜାତ ହୁଏ, ପୁରୁଷ ବି। ସେଇ ପିତାର ବୀର୍ଯ୍ୟରୁ ପୁଅ ଜନ୍ମ ହୁଏ, ପୁଣି ଝିଅ ବି ଜାତ ହୁଏ। ଘରକୁ ହାତ ଯିବ କିନ୍ତୁ ଗୋଡ଼ ଯିବ ନାହିଁ, ଏହା ଅସମ୍ଭବ କଥା। ଘର ଛାଡ଼ି ତ ସନ୍ୟାସୀ ହେଲେ, ସନ୍ୟାସୀ ହେବାପରେ ପୁଣି ଘର ତିଆରି କରି କୋଠରିରେ ରହିଲେ ଜାଣିବାକୁ ହେବ ଯେ ଇଏ ସାଧୁତାରୁ ଚ୍ୟୁତ ହୋଇଛି। ସାଧୁ ଯେଉଁଠାରେ ଘର କରିବା ପାଇଁ ସଂକଳ୍ପ କରେ ସେଠାରେ ସେ ପରମାତ୍ମାଙ୍କଠାରୁ ଦୂରେଇ ଯାଇ ସଂସାର ଆଡ଼କୁ ମୁହାଁଏ। ଯିଏ ରସରୂପୀ ପରମ ମୃଦୁଳ ବ୍ରହ୍ମର ଚିନ୍ତନ ତ୍ୟାଗକରେ, ସେ ନିରସ ପରମ କଠୋର ଇଟା-ପଥରର ଚିନ୍ତା କରିବାରେ ଲାଗେ। ଏଣୁ, **ସାଧୁ ନିଜ ନାମରେ ହେଉ ବା ପରମାର୍ଥ ଉଦ୍ଦେଶ୍ୟରେ ହେଉ, ଭୁଲରେ ବି କୌଣସି ପ୍ରକାର ଭାବନାରେ ମଠ ବା ମନ୍ଦିର ନ କରିବା ଉଚିତ।** ସର୍ପ ଭଳି ଭଙ୍ଗାରୁଜା ଘରେ, ଏକାନ୍ତ ବଣରେ ରହି ଜୀବନ ନିର୍ବାହ କରୁଥିବା ଉଚିତ।

''ରାଜନ୍! ବଡ଼ ବଡ଼ ସାଧୁମାନେ ମଠ ପଛରେ ଲାଗିରହି ପତିତ ହୋଇଯାଇଥିବା **ଆମେ ସ୍ୱଚକ୍ଷୁରେ ଦେଖିଛୁ। ପ୍ରଥମେ ତ ସେମାନେ ଧର୍ମ ଭାବରେ, ପରୋପକାର ଭାବନାରେ ତାହା ତିଆରି କରନ୍ତି, କିନ୍ତୁ ପରବର୍ତ୍ତୀ କାଳରେ ତା'ପ୍ରତି ଆସକ୍ତ ହୋଇଯାଆନ୍ତି। ଗୃହନିର୍ମାଣ କରିବା ଗୃହସ୍ଥଙ୍କର କାମ। ତ୍ୟାଗୀ ତ ଗୃହ ତ୍ୟାଗ କରିଥା'ନ୍ତି। ଘର ତ୍ୟାଗକରିବା ପରେ ପୁଣି ଘର କରିବସିଲେ ଗୃହସ୍ଥଙ୍କଠାରୁ ବି ଅଧିକ ସଂଗ୍ରହୀ ହୋଇଯାଆନ୍ତି। ଏହିପରି ସର୍ପଠାରୁ ମୁଁ ମୋ ପାଇଁ ଗୃହ ନ କରିବାର ଶିକ୍ଷା ଗ୍ରହଣ କରିଛି।''**

ଯଦୁରାଜ୍ କହିଲେ, ''ବ୍ରହ୍ମନ୍! ଆପଣ ସର୍ପଠାରୁ ଗ୍ରହଣ କରିଥିବା ଶିକ୍ଷା ପ୍ରସଙ୍ଗରେ କହିଲେ, ବୁଢ଼ିଆଣୀଠାରୁ ଗ୍ରହଣ କରିଥିବା ଶିକ୍ଷା ବିଷୟ ଶୁଣିବାକୁ ଆମର ପ୍ରବଳ ଆଗ୍ରହ ହେଉଛି। ବୁଢ଼ିଆଣୀଠାରୁ ଆପଣ କେଉଁ ଶିକ୍ଷା ଗ୍ରହଣ କରି ତାକୁ ଗୁରୁ କଲେ, କହିବା ହୁଅନ୍ତୁ।''

ମହାପ୍ରାଜ୍ଞ ସୂତ କହୁଛନ୍ତି—''ହେ ମୁନିଗଣ! ଅବଧୂତ ଦତ୍ତାତ୍ରେୟ ବୁଢ଼ୀଆଣୀଠାରୁ ଗ୍ରହଣ କରିଥିବା ଶିକ୍ଷା ପ୍ରସଙ୍ଗ ରାଜା ଯଦୁଙ୍କ ପାଖରେ ଯେପରି ବର୍ଣ୍ଣନା କରିଥିଲେ ତାହା ଆପଣମାନେ ଶ୍ରଦ୍ଧାପୂର୍ବକ ଶ୍ରବଣ କରନ୍ତୁ।''

### ଛପ୍‌ପୟ

ଆମ ଘଡ଼ା ସମ ପାଇକ ମହଁ ଫଟତେଁ ଫୂଟେଁ।
କଚ୍ଚେ କାଁଚ ସମାନ ଆଁଚ ଲାଗତ ହୀ ଟୂଟେଁ।।
ଜା ଅନିତ୍ୟ ତନୁ ହେତୁ ଭବନ ଅତି ବିଶଦ ବନାବୈ।
ହରି ସୁମିରନ ନହିଁ କରେଁ ବ୍ୟର୍ଥ ମହଁ ପାପ କମାବେଁ।।
ପାବେଁ ସୂନୋ ଭବନ ଜହଁ, ଅହି ସମ ରୈନି ବତାଇବେଂ।
ଚଲେଁ ଫେରି ଶିକ୍ଷା ଲଇ, ଅହି ଗୁରୁଦେବ ବନାଇବେଂ।।



# ବୁଢ଼ିଆଣୀଠାରୁ ଶିକ୍ଷା

**ଯଥୋର୍ଣନାଭିର୍ହୃଦୟାଦୂର୍ଣାଂ ସନ୍ତତ୍ୟ ବକ୍ତ୍ରତଃ।**
**ତୟା ବିହୃତ୍ୟ ଭୂୟସ୍ତାଂ ଗ୍ରସତ୍ୟେବଂ ମହେଶ୍ୱରଃ।।** ★

[ଶ୍ରୀଭା.୧୧ସ୍କ.୯ଅ.୨୧ଶ୍ଳୋକ]

### ଛପ୍‌ପୟ

ମକରୀ ତେଁ ଶୁଭ ସୀଖ ମହେଶ୍ୱର ଲୀଲା ଲୀହ୍ନୀ।
ନିତ୍ୟ ସୃଜନ ଥିତି ପ୍ରଲୟ କରେଁ ଗୁରୁ ତାତେଁ କୀହ୍ନୀ।।
ହିୟ ତେ ମୁଖକେ ଦ୍ୱାର ଜାଲ ବିସ୍ତୃତ ଫୈଲାବେଁ।
ତାମେଁ କରେଁ ବିହାର ଲୀଲି ପାଛେଁ ତେଁ ଜାବେଁ।।
ଜସ ଆଦି ମହଁ ଜଗତକୁଁ, ରଚେଁ ମଧ କ୍ରୀଡ଼ା କରେଁ।
ଜସ ଅନ୍ତ ମହଁ ନିଜ ରଚିତ, ସବକୂଁ ହର ବନି ସଂହାରେଁ।।

---

★ ଅବଧୂତ ଦତ୍ତାତ୍ରେୟ ରାଜାଙ୍କୁ କହୁଛନ୍ତି—''ରାଜନ୍! ବୁଢ଼ିଆଣୀ ଯେଉଁଭଳି ନିଜ ହୃଦୟରୁ ମୁଖ ଦ୍ୱାରା ସୂତାକୁ ବାହାର କରି ଜାଲ ବିଛାଇ ତହିଁରେ ବିହାର କରିବା ପରେ ଶେଷରେ ତାକୁ ଗିଳି ପକାଏ, ସେହିଭଳି ପରମାତ୍ମା ଏହି ଜଗତକୁ ପ୍ରସାର କରି, ଏଥିରେ ବିହାର କରି ପରିଶେଷରେ ନିଜ ମଧ୍ୟରେ ଲୀନ କରି ଦିଅନ୍ତି।''

ପିଲାଟିଏ ଯେତେବେଳେ ଖେଳୁଥାଏ, ସେ ମନେ ମନେ ଖେଳନାଟିକୁ କଳ୍ପନା କରେ ଓ ମନେ ମନେ ତାକୁ ନଷ୍ଟ ବି କରିଦିଏ। ଏ ସମସ୍ତ ହେଉଛି ମନର ବିଳାସ। ଏଥିରେ ଯିଏ ସତ୍ୟକୁ ଆରୋପିତ କରେ ସେ ଫସିଯାଏ, ପ୍ରତାରିତ ହୁଏ। ସମସ୍ତକୁ ଭଗବାନଙ୍କର କ୍ରୀଡ଼ା ଭାବିଲେ ସଂସାରର କୌଣସି ଘଟଣା-ଅଘଟଣାରେ ସୁଖ-ଦୁଃଖ ହୁଏ ନାହିଁ। ଭଗବାନ ତାଙ୍କ ନିଜର ଆନନ୍ଦ ନିମନ୍ତେ ବିହାର କରୁଥା'ନ୍ତି। ପଶା ଖେଳାଳି ନିଜେ ପଶାପାଲି ବିଛାଏ, ନିଜେ ନିଜେ ଦାନଗୁଡ଼ିକୁ ହାତୀ, ଘୋଡ଼ା, ରାଜା, ମନ୍ତ୍ରୀ ଆଦି ବୋଲି କଳ୍ପନା କରିଥାଏ। ତା' ଇଚ୍ଛା ହେଉଥିବା ଯାଏ ଖେଳେ। ଯେତେବେଳେ ଇଚ୍ଛା ଭାଙ୍ଗିଯାଏ, ସମସ୍ତଙ୍କୁ ଏକାଠି କରି ଥଳିରେ ପୂରାଇ ଘରେ ରଖିଦିଏ। ପ୍ରତ୍ୟେକ କର୍ମକୁ ଯିଏ କୃଷ୍ଣଙ୍କ କ୍ରୀଡ଼ା ବୋଲି ଅବବୋଧ କରେ, ତା' ପାଇଁ ଜନ୍ମ-ମରଣ କିଛି ନୁହେଁ। ସବୁ ହେଉଛି ସେହି ବିହାରୀଙ୍କ ବିହାର, ଲୀଳାମୟଙ୍କ ଲୀଳା, କ୍ରୀଡ଼ାପ୍ରିୟଙ୍କ କ୍ରୀଡ଼ା, ଖେଳାଳିଙ୍କ ଖେଳ, ମାୟେଶଙ୍କର ମୋହିନୀ ମାୟା।

ମହାପ୍ରାଜ୍ଞ ସୂତ କହୁଛନ୍ତି, ହେ ମୁନିଗଣ! ଦତ୍ତାତ୍ରେୟ ମୁନି ବୁଢ଼ିଆଣୀଠାରୁ ପାଇଥିବା ଶିକ୍ଷା ପ୍ରସଙ୍ଗ ବର୍ଣ୍ଣନା କରିବାକୁ ଯାଇ ରାଜା ଯଦୁଙ୍କୁ କହିଲେ—"ରାଜନ୍! ଦୃଶ୍ୟପ୍ରପଞ୍ଚକୁ ବୁଢ଼ିଆଣୀର ସୂତା—କେବଳ ମାୟାମାତ୍ର—ବୁଝିବା ଉଚିତ ବୋଲି ମୁଁ ବୁଢ଼ିଆଣୀଠାରୁ ଶିକ୍ଷା ପାଇଛି। ଭଗବାନ ନିଜେ ହିଁ ମାୟାରେ ମାୟାର ପସରା ମେଲାଇ ଥାଆନ୍ତି, ଶେଷରେ ସେ ହିଁ ଏକାଠି ଗୋଟାଇ ନିଅନ୍ତି। ପ୍ରଥମେ ଏପରି କିଛି ନ ଥିଲା, ମଝିରେ ଦୃଶ୍ୟ ହେଲା, ଶେଷରେ ସେ ହିଁ ସମସ୍ତଙ୍କୁ ଗୋଟାଇ ନେଇଗଲେ।"

ରାଜା ପଚାରିଲେ—"ଏପରି ଶିକ୍ଷା ଆପଣ କୀଟଠାରୁ କିପରି ପାଇଲେ ?"

ଅବଧୂତ ମୁନି କହିଲେ—"ରାଜନ୍! ଦେଖନ୍ତୁ! କୀଟ କେଉଁଠାରୁ ହେଲେ କପା ଆଣେ ନାହିଁ। ସେ ଚରଖା ଚଳାଏ ନାହିଁ, କି ସୂତା କାଟେ ନାହିଁ, କି ତାକୁଡ଼ି ବ୍ୟବହାର କରେନାହିଁ। ନିଜ ହୃଦୟରୁ ସେ ମୁଖ ବାଟେ ସୂତା ବାହାର କରେ। ତା' ହୃଦୟରେ କେତେ ସୂତା ଅଛି ତା'ର କଳନା ନାହିଁ। ସେ ବାହାର କରି ଚାଲିଥାଏ। ସୂତା ବାହାର କରି ସେ ଅତି ସୁନ୍ଦର ଜାଲ ତିଆରି କରେ। ଆଉ ତହିଁରେ ସେ ଆନନ୍ଦରେ ବିହାର କରେ, ଏପାଖରୁ ସେ ପାଖକୁ ଯାଏ, ତହିଁରେ ସେ କ୍ରୀଡ଼ା କରୁଥାଏ। ଯେତେବେଳେ ଇଚ୍ଛା ହୁଏ, ସେ ତାହା ନିଜେ ଗିଳି ପକାଏ। ନିଜ ହୃଦୟରେ ରଖିଦିଏ। ଭଗବାନ୍ ଠିକ୍ ଏହିଭଳି ଏହି ସଂସାରକୁ ରଚନା କରିଛନ୍ତି।"

ରାଜା ଯଦୁ ପଚାରିଲେ—"ହେ ବ୍ରହ୍ମନ୍! ଭଗବାନ କିପରି ରଚନା କରନ୍ତି ? ଏହି ବିଶାଳ ଜଗତ କ'ଣ ଶ୍ରୀହରିଙ୍କର ?"

ମୁନି କହିଲେ—"ରାଜନ୍! ଭଗବାନଙ୍କ ପାଇଁ ବଡ଼ କ'ଣ, ଛୋଟ କ'ଣ ? ଯିଏ ସକଳ ଭୂମିର ସ୍ୱାମୀ ସେ ଖେଳିବା ଉଦ୍ଦେଶ୍ୟରେ ଯେତେ ଭୂମି ଇଚ୍ଛା କରନ୍ତି, ଚରିଥା'ନ୍ତି। ପୂର୍ବକାଳରେ ଏହି ଦୃଶ୍ୟପ୍ରପଞ୍ଚ ଏଭଳି ବ୍ୟକ୍ତ ନ ଥିଲା। ରମଣ କରିବା ପାଇଁ ଭଗବାନଙ୍କର ଇଚ୍ଛା ହେଲା। ଅକାମ ପୁରୁଷର ଖେଳିବା ପାଇଁ କାମନା ହେଲା। ପୂର୍ବ ସୃଷ୍ଟିର ଅନ୍ତ ହେବାପରେ ତ୍ରିଗୁଣମୟୀ ପ୍ରକୃତି କାଳ (ସମୟ) ପାଇ ଗୁଣର ସାମ୍ୟାବସ୍ଥା ହୋଇଥିବା ହେତୁ ସେହିପରି ରହିଥିଲା। ସେ ଅନ୍ୟ କେଉଁଠାରେ ଖଟ

ପକାଇ ଶୋଇଥିଲେ, ତାକୁ ଖୋଜିବା ପାଇଁ ଭଗବାନଙ୍କୁ ସେଠାକୁ ଯିବାକୁ ପଡ଼ିଥାନ୍ତା। କିନ୍ତୁ ସେ ଶୋଇଥିଲା ଭଗବାନଙ୍କର ନିଜ ଭିତରେ। କାଳ ମଧ୍ୟ ସେହିଠାରେ ଠିଆ ରହି ପ୍ରହରୀର କାର୍ଯ୍ୟ କରୁଥିଲା। ସେ ଅତି ସତର୍କ ଅବସ୍ଥାରେ ଠିଆ ହୋଇଥିଲା। କେତେବେଳେ କେଜାଣି ସେ କି ପ୍ରକାର ଆଦେଶ ଦେବେ! 'କର୍ମ' ଆଉ 'ସ୍ୱଭାବ' ବି 'ପ୍ରକୃତି' ପାଖରେ ଶୋଇଥିବା ଭଳି ପଡ଼ିରହିଥିଲେ। ସମସ୍ତ ଗୁଣ ସମାନ ଭାବରେ ଥିଲେ। ସମସ୍ତଙ୍କୁ ସମାନ ଭାବରେ ନିଦ୍ରା ଆସୁଥିଲା। ସେମାନଙ୍କର ଦଶା ଟିକିଏ ବୋଲି ନ୍ୟୁନାଧିକ ନ ଥିଲା। ସମସ୍ତେ ସାମ୍ୟଭାବରେ ସ୍ଥିତ ଥିଲେ। ସେତେବେଳେ ବାହାରେ କିଛି ନ ଥିଲା। ସେହି ଆଦିପୁରୁଷ ପ୍ରଭୁ କେବଳ ଅଦ୍ୱୟ ଭାବରେ ଅବସ୍ଥିତ ଥିଲେ। ଏବେ ସେହି ବିଶୁଦ୍ଧ ବିଜ୍ଞାନାନନ୍ଦଘନ ନିରୁପାଧିକ ପରମାତ୍ମାଙ୍କର କିଛି କ୍ରୀଡ଼ା କରିବା ପାଇଁ ଇଚ୍ଛା ହେଲା। କାଳ ତ ସେଠାରେ ଜାଗ୍ରତ ଥିଲା, ସଚେଷ୍ଟ ଥିଲା, ପ୍ରଭୁଙ୍କ ଇଚ୍ଛା ଜାଣି ସେ ପ୍ରକୃତିକୁ ହଲେଇଲା। ରଜୋଗୁଣ ଉଠିପଡ଼ିଲା। ସତ୍ତ୍ୱଗୁଣ ଶୋଇରହି ଉଠିବ କି ନ ଉଠିବ ଏପରି ଭାବିବାକୁ ଲାଗିଥିଲାବେଳେ, ତମୋଗୁଣ ଅଳସ ଭାଙ୍ଗିବାରେ ଲାଗିଲା। ଅଳସ ଭାଙ୍ଗି, ହାଇ ମାରି ପୁଣି ଶୋଇପଡୁଥାଏ। ଆଉ ବାରମ୍ବାର କଡ଼ ଲେଉଟାଇବାରେ ଲାଗିଥାଏ। ଏହିଭଳି ତିନିଙ୍କର ସମଗ୍ର ବିଷମ ଅବସ୍ଥା ହୋଇଗଲା।

କାଳ ଏମାନଙ୍କ ଦଶାରେ ବିଷମତା ଆସିଯିବା ଦେଖିଲା। ରଜୋଗୁଣର ବୋହୂ କ୍ରିୟାଶକ୍ତି ବି ଉଠିପଡ଼ିଲେ। ସତ୍ତ୍ୱଗୁଣର ବୋହୂ ଜ୍ଞାନଶକ୍ତି ବି ପତିଙ୍କ ସହିତ ଭାବିବାରେ ଲାଗିଲେ ; ଆଉ ତମୋଗୁଣର ବୋହୂ ଆବରଣଶକ୍ତି ନିଜ ସ୍ୱାମୀଙ୍କର ବିପରୀତ ଆଚରଣ କଲେ ନାହିଁ, ସେ ସେହି ପଥ ଅନୁସରଣ କରିବାରେ ଲାଗିଲେ।

ସେତେବେଳେ କାଳ କ୍ରିୟାଶକ୍ତିକୁ କହିଲା—ହେ ଦେବି! ଶୁଣୁଚ ନା ନାହିଁ! ଭଗବାନ ଖେଳିବା ପାଇଁ ମନକରୁଛନ୍ତି। ଅତିଶୀଘ୍ର ଗର୍ଭଧାରଣ କର। କିଛି ସନ୍ତାନ ହୁଅନ୍ତୁ, ବଂଶ ବଢୁ, ଦୌଡ଼ା-ଧାପଡ଼ା ହେଉ।' ଚେଁ ଚାଁ ଶୁଣି ଭଗବାନ୍ ହସିବାରେ ଲାଗିଲେ।''

''ସେହି ବୋହୂ କହିଲା—କାଳଦେବ! ଆପଣ ଅତି ତରତର କରୁଛନ୍ତି। ଏମିତି ଏକାଥରକେ ଏତେ ପିଲା କିପରି ଜନ୍ମ ହେବେ। ମୁଁ ଜଣକୁ ଜନ୍ମ କରିଦେଉଛି। ତା'ର ବଂଶ ବଢ଼ିଯିବ।''

''ସେତେବେଳେ କାଳ କହିଲା—''ଯାହା ହେଲେ କିଛି କରୁନ କାହିଁକି! ଏମିତି କଥା କହିଲେ କ'ଣ ହେବ! କିଛି ସ୍ଥିର କର।''

''ଏପରି ଶୁଣି ସେହି ମାୟାଦେବୀ, ଯିଏ ଥିଲେ କ୍ରିୟାଶକ୍ତି-ପ୍ରଧାନ, ଗୋଟିଏ ପିଲା ଜନ୍ମ କରିଦେଲେ। ତା' ପେଟରେ ଜାଲ ତିଆରି କରିବା ପାଇଁ ସୂତା ଭର୍ତ୍ତିହୋଇ ରହିଥିଲା। ଏଣୁ, ତା'ର ନାମ ଦେଲେ ସୂତ୍ରାତ୍ମା। ସୃଷ୍ଟିର ପ୍ରାରମ୍ଭରେ ସେ ହିଁ ସବୁଠାରୁ ମହତ୍ ତତ୍ତ୍ୱ ଥିଲା। ତେଣୁ ତା'ର ନାମ 'ମହତତ୍ତ୍ୱ' ରୂପେ ପ୍ରସିଦ୍ଧ ହେଲା। ସେ ତା'ର ଦଦେଇ ସତ୍ତ୍ୱଗୁଣର, ନିଜର ପିତା ରଜୋଗୁଣର ଓ ନିଜର କକେଇ ତମୋଗୁଣର ଏକମାତ୍ର ଉତ୍ତରାଧିକାରୀ ହେଲା। ତାକୁ ବି ସମସ୍ତେ ପୁତ୍ରରୂପେ ଅଙ୍ଗୀକାର କଲେ।

ବେଦର ବାକ୍ୟ ଏହା ଯେ, ତିନିଭାଇଙ୍କ ଭିତରୁ କାହାର ବି ଗୋଟିଏ ସନ୍ତାନ ହୋଇଗଲେ, ତିନିହେଁ ପୁତ୍ରବାନ୍ ବୋଲି କହିବେ। ଏହି ନ୍ୟାୟରେ ମହତତ୍ତ୍ୱକୁ ତିନିଙ୍କର ଗୁଣ ଅନୁସାରେ କାର୍ଯ୍ୟ କରିପାରିବ ବୋଲି କୁହାଗଲା। ତ୍ରିଗୁଣମୟୀ ସମସ୍ତ ସୃଷ୍ଟି ଏହି ମହତତ୍ତ୍ୱରୁ ହିଁ ହୋଇଛି। ଏହାପରେ ଯେଉଁ ସନ୍ତାନମାନେ ହେଲେ ସମସ୍ତେ ଏହାର ଛୋଟପିଲା ବୋଲି ପରିଗଣିତ ହେଲେ। ମହତତ୍ତ୍ୱରୁ 'ଅହଙ୍କାର' ହେଲା। ତାହାର ମଧ୍ୟ ସାତ୍ତ୍ୱିକ, ରାଜସିକ ଆଉ ତାମସିକ, ଏପରି ତିନି ଭେଦ ହେଲା। ପୁଣି, ଦଶ ଇନ୍ଦ୍ରିୟ ତାଙ୍କର ଅଧିଷ୍ଠାତୃଦେବ– ମନ, ପୃଥିବୀ, ଜଳ, ତେଜ, ବାୟୁ, ଆକାଶ, ଶବ୍ଦ, ରସ, ଗନ୍ଧ, ସ୍ପର୍ଶ, ଦଶ ପ୍ରକାରର ପ୍ରାଣ, ଅନ୍ୟ ସମସ୍ତ ସ୍ଥାବର ଜଙ୍ଗମ ଉତ୍ପନ୍ନ ହେଲେ। ଅତି ବିଶାଳ ଜାଲ ବିଛାଇ ହୋଇଗଲା। ମହାନ୍ ବିସ୍ତାର ହୋଇଗଲା। ସତ୍ତ୍ୱମୂର୍ତ୍ତି ଭଗବାନ ବିଷ୍ଣୁରୂପରେ ଏଥିରେ ଖେଳିବାରେ ଲାଗିଲେ। ଏହାକୁ ରକ୍ଷା କରିବାରେ ଲାଗିଲେ, ଏହାର ଦେଖାଶୁଣା କରିବାରେ ଲାଗିଲେ। ଖେଳି ଖେଳି ଭଗବାନଙ୍କୁ କ୍ଳାନ୍ତି ଆସିଗଲା। ସେ ଏହାର ଉପରେ ଦେଖାଯିବାରେ ଲାଗିଲେ। କାଳଦେବ ସୂଚନା ପାଇଗଲା ଯେ ଭଗବାନ ବିଶ୍ରାମ ନେବାକୁ (ଶୋଇବାକୁ) ଚାହୁଁଛନ୍ତି। ତାଙ୍କର ଆଉ ଖେଳିବା ପାଇଁ ଇଚ୍ଛା ନାହିଁ। କାଳ ଯଥାଶୀଘ୍ର କଳକୁ ଚାପିଦେଲା। ପୃଥିବୀ ଦବି ଯାଇ ଜଳରେ ଲୟ ହୋଇଗଲା। ଜଳ ଅଗ୍ନିରେ ଜଳିଗଲା। ଅଗ୍ନି ବାୟୁରେ ଉଡ଼ିଗଲା, ବାୟୁ ଆକାଶରେ ନିଶ୍ଚିହ୍ନ ହୋଇଗଲା। ଏ ସମସ୍ତ କାର୍ଯ୍ୟ ଏହାଙ୍କ ଭିତରେ ଲୀନ ହୋଇଗଲା। ଏ ସମସ୍ତ ଅହଙ୍କାରରେ ପଶିଗଲା। ଅହଂକାର ମହତତ୍ତ୍ୱରେ ମିଶିଗଲା। ତିନିଗୁଣ ପୁଣି ସାମ୍ୟାବସ୍ଥାର ହୋଇଗଲେ। ପ୍ରକୃତି ଏଥର ତା'ର ମଶିଣା ଝାଡ଼ି ଭଗବାନଙ୍କ ଭିତରେ ଲୁଚି ଶୋଇଗଲା। ପ୍ରଧାନ ଓ ପୁରୁଷର ନିୟନ୍ତା ସେହି ସର୍ବାଧିଷ୍ଠାନ ରୂପୀ ଆତ୍ମାଧାର ପୁରୁଷୋତ୍ତମ ଏକାକୀ ରହିଗଲେ। ଏବେ ସେ ରମଣରୁ ଚିତ୍ତକୁ ଦୂର କରିନେଲେ। କାରଣ, ଏକାକୀ ତ ରମଣ ହୋଇପାରେ ନାହିଁ। ଖେଳର ସମସ୍ତ ସାମଗ୍ରୀକୁ ଏକାଠି କରି ତ ସେ ନିଜ ଭିତରେ ରଖିଦେଲେଣି, ଉଦରସ୍ଥ କରିଦେଲେଣି। ସମସ୍ତ ଲୌକିକ ତଥା ଅଲୌକିକ ପ୍ରପଞ୍ଚର ଆଦି-କାରଣ ସେହି ଶ୍ରୀମନ୍ନାରାୟଣ ଶେଷଙ୍କ ଶଯ୍ୟା ଉପରେ ଚାଦର ଘୋଡ଼ାଇ ହୋଇ ଶୋଇଗଲେ।''

ଅବଧୂତ ମୁନି କହୁଛନ୍ତି—''ହେ ଚନ୍ଦ୍ରବଂଶାବତଂଶ ରାଜନ୍! ଏହା ହେଉଛି ଭଗବାନଙ୍କ ମାୟା। ଏହା ହେଉଛି ସୃଷ୍ଟି, ସ୍ଥିତି ଆଉ ପ୍ରଳୟର ଗୂଢ଼ ରହସ୍ୟ। ଏହାକୁ କେହି କେହି ଜ୍ଞାନୀ-ବିଜ୍ଞାନୀ ପୁରୁଷ ବୁଝିପାରନ୍ତି। ବୁଢ଼ିଆଣୀଠାରୁ ମୁଁ ଏହି କଥା ଶିଖିଲି, ଆଉ ତାକୁ ମୋର ଗୁରୁ କରିଛି।''

ରାଜା କହିଲେ—''ଭଗବନ୍! ବୁଢ଼ିଆଣୀଠାରୁ ଶିକ୍ଷା କଥା ଶୁଣିଲି, ଏବେ ଆପଣ ପେଶସ୍କାରୀକୁ ଗୁରୁ କରି ତା'ଠାରୁ ଆପଣ କି ଶିକ୍ଷା ଲାଭ କଲେ?''

ମୁନି କହିଲେ—''ରାଜନ୍! ଭୃଙ୍ଗୀକୀଟ ପେଶସ୍କାରୀ ହେଉଛି ଚବିଶ ଗୁରୁଙ୍କ ମଧ୍ୟରେ ଅନ୍ତିମ ଗୁରୁ। ଏବେ ଆପଣ ତା'ଠାରୁ ପାଇଥିବା ଶିକ୍ଷା ପ୍ରସଙ୍ଗ ଶୁଣନ୍ତୁ।''

ମହାପ୍ରାଜ୍ଞ ସୂତ କହୁଛନ୍ତି—''ହେ ମୁନିଗଣ! ଅବଧୂତ ଦତ୍ତାତ୍ରେୟ ଭଗବାନ୍ ଯେଉଁ ପ୍ରକାରେ ଭୃଙ୍ଗୀକୀଟଠାରୁ ଶିକ୍ଷା କରିଥିଲେ ମୁଁ ଆପଣମାନଙ୍କୁ ତାହା ଶୁଣାଉଛି।''

### ଛପ୍ପୟ

ଈଶ୍ୱର ଆତ୍ମାଧାର ଅକେଲେ ନ ରହି ଜାବେଂ।
ମାୟାକୁଁ କରି କ୍ଷୁବ୍‌ଧ ସୃଷ୍ଟି ଫେରି ବନାବେଂ।।
ଜାମେଁ ଓତପ୍ରୋତ ଜଗତିକେ ଜୀବ ଚରାଚର।
ପ୍ରକୃତି ପୁରୁଷକେ କରଣ କରେଂ ନିତ ଖେଲ ପରାବର।।
ରଚୈ ହରେ ରକ୍ଷା କରୈ, ହରି ସମାନ କ୍ରୀଡ଼ା କରତି।
ଜଗ ବନ୍ଧନ ମେଁ ନହିଁ ପରୈ, ସମୁଝି ଖିଲାରୀ ଖେଲ ଯତି।।



# ପେଶସ୍କାରୀଠାରୁ ଶିକ୍ଷା

**କୀଟଃ ପେଶସ୍କୃତଂ ଧ୍ୟାୟନ୍ କୁଡ୍ୟାଂ ତେନ ପ୍ରବେଶିତଃ**
**ଯାତି ତତ୍‌ସାତ୍ମତାଂ ରାଜନ୍ ପୂର୍ବରୂପମସନ୍ତ୍ୟଜନ୍।।** ★

[ଶ୍ରୀ.ଭା.ସ୍କ.୧୧-ଅ.୬.ଶ୍ଳୋକ ୨୩]

### ଛପ୍ପୟ

ରଚି ଘର ଭୃଙ୍ଗୀ କୀଟ ପକରି କୀଡ଼ାକୁଁ ଲାବୈ।
କରିକେଂ ଘରମେଂ ବନ୍ଦ ନିରନ୍ତର ଶବ୍ଦ ସୁନାବୈ।।
ତାକୌ ସୁନି ସୁନି ଶବ୍ଦ ଧ୍ୟାନ ଭୃଙ୍ଗୀକୋ କରିକେଂ।
ଭୃଙ୍ଗୀ ହୀ ବନି ଜାୟ, ଏକ ହୀ ତନତେଂ ଡରିକେଂ।।
ଧ୍ୟାନ ଧରତ ନିଦରୂପତା, ହୋବୈ ନିଶ୍ଚୟ ଯହ ଭଈ।
ଗୁରୁ କରି ଭୃଙ୍ଗୀକୁଁ ତୁରତ, ଉପଯୋଗୀ ଶିକ୍ଷା ଲଈ।।

ମାନବ ହୃଦୟ ହେଉଛି ଗୋଟିଏ ଆକର୍ଷକ ଯନ୍ତ୍ର। ତା'ର ସମ୍ମୁଖକୁ ଯାହା ଆସେ ତା'ର ଚିତ୍ର ଆକର୍ଷିତ ହୋଇ ସେଥିରେ ଛାପ ହୋଇଯାଏ। ଜଳରେ, ଦର୍ପଣରେ ଦେଖିଲେ ତା'ର ପ୍ରତିବିମ୍ବ ଦେଖାଯାଉଥାଏ। ଠିକ୍ ସେହିଭଳି ହୃଦୟରେ ଯାହାର ଛାପ ଲାଗିଯାଏ, ହୃଦୟକୁ ଯିଏ ଧରିନିଏ, ପ୍ରାଣୀ ଯାହାକୁ ନିରନ୍ତର ଚିନ୍ତା କରୁଥାଏ, ସେ ତା'ର ଅନୁରୂପ ହୋଇଯାଏ।

---

★ ଅବଧୂତ ମୁନି ଯଦୁରାଜାଙ୍କୁ କହୁଛନ୍ତି—"ରାଜନ୍! ଭୃଙ୍ଗୀ (ଭ୍ରମର, ବିରୁଡ଼ି ବା ପେଶସ୍କାରୀ) ନିଜ ଘରେ କୀଟଙ୍କୁ ବନ୍ଦୀ କରିଦିଏ। ଭୟ ହେତୁ ସେହି କୀଟ ସବୁବେଳେ ତାକୁ ହିଁ ଧ୍ୟାନ କରୁଥାଏ। ଆଉ ପରିଶେଷରେ ଠିକ୍ ତା'ର ରୂପଭଳି ହୋଇଯାଏ। ସେ ତା'ର ପୂର୍ବ ଶରୀରକୁ ଛାଡ଼େ ନାହିଁ, ତେବେ ବି ସେ ପେଶସ୍କାରୀ ଭଳି ହୋଇଯାଏ।

ଗୋଟିଏ କଥା ଅଛି। କୌଣସି ଜଣେ ଯୋଗୀଙ୍କ ପାଖକୁ ଥରେ ଜଣେ କୃଷକ ଯାଇଥିଲା। ସେ ଯୋଗୀଙ୍କୁ ଯୋଗ ଶିଖାଇ ଦେବାପାଇଁ କହିଲା।

ଯୋଗୀ ଭାବିଲେ, ''ଯୋଗ ହୁଏ ଚିତ୍ତର ବୃତ୍ତି ସମୁଦାୟକୁ ନିରୋଧ କରିବା ପରେ। ଚିତ୍ତର ବୃତ୍ତିକୁ ନିରୋଧ କରିବା ସେପରି ସହଜ କଥା ନୁହେଁ। ଅତ୍ୟନ୍ତ ଦ୍ୱେଷ ଥିବା ସ୍ଥାନରେ ଚିତ୍ତ ରହେ, ଯେପରି ଶିଶୁପାଳ ଆଦିଙ୍କର ଶ୍ରୀକୃଷ୍ଣ ଭଗବାନଙ୍କଠାରେ ଥିଲା ; ଅଥବା ଅତ୍ୟନ୍ତ ଭୟରେ ବି ଚିତ୍ତ ଏକାଗ୍ର ହୋଇଯାଏ, ଯେପରି କଂସର କୃଷ୍ଣଙ୍କ ପ୍ରତି ନିରନ୍ତର ଭୟହେତୁ ତନ୍ମୟ ହୋଇ ରହିଥିଲା। ଚିତ୍ତକୁ ଏକାଗ୍ର କରିବାର ସର୍ବଶ୍ରେଷ୍ଠ ଉପାୟ ହେଉଛି ସ୍ନେହ। କାହା ପ୍ରତି ଯଦି ହୃଦୟରେ ସ୍ନେହ ଉତ୍ପନ୍ନ ହୋଇଯାଏ, ସେ ପାଖରେ ଥାଉ ବା ନ ଥାଉ, ପ୍ରତ୍ୟେକ କ୍ଷଣରେ ତାହା କଥା ଚିନ୍ତନ କରୁଥାଏ। ତା' ତୁଳନାରେ ଅନ୍ୟ ସବୁ ତୁଚ୍ଛ ଜଣାଯାଏ। ସ୍ନେହ ହୁଏ ସରସ ହୃଦୟରେ। ଯିଏ ନିରସ, ପାଷାଣ ହୃଦୟର ହୋଇଥାଏ, ସେ ସ୍ନେହ କରିବା ବା ଜାଣିବ କିପରି ? ଏଣୁ, ଯାହାର ଯାହାପ୍ରତି ପ୍ରେମ ଥିବ ତାକୁ ଧ୍ୟାନ କରିବା କଥା କହିବି। କାରଣ ଯଥାଭିମତ ଧ୍ୟାନରେ ହିଁ ଚିତ୍ତର ବୃତ୍ତି ସମୁଦାୟ ନିରୋଧ ହୋଇପାରେ।''

ଏପରି କଥା ଚିନ୍ତାକରିବା ପରେ ସେହି ଯୋଗୀ ଜଣକ କହିଲେ, ''ଭାଇ ! ତୁମେ ବିବାହିତ ?''

କୃଷକ କହିଲା, ''ନାଇଁ ଆଜ୍ଞା। ମୁଁ ଅତି ଦରିଦ୍ର ଲୋକ। ମୋତେ କିଏ ବିଭାହେବ ?''

ଯୋଗୀ ପଚାରିଲେ, ''ଆଚ୍ଛା, କହିଲ ଦେଖି, ତୁମେ କେବେ କାହାକୁ ପ୍ରେମ କରିଛ ? ତୁମର ସବୁଠାରୁ ପ୍ରିୟ କ'ଣ ?''

କୃଷକ କହିଲା, ''ମହାରାଜ ! ମୋ ମଇଁଷିଟି ଅତି ଧୁଧାର। ସେ ମୁଣ୍ଡ ହଲାଏ ନାହିଁ କି ଲାତ ମାରେ ନାହିଁ। ଯେତେବେଳେ ଇଚ୍ଛା ତାକୁ ଦୁହାଁଯାଇ ପାରେ। ଯାହା ତା' ଆଗରେ ପକାଇ ଦିଏ, ତାହା ଖାଇଦିଏ। ଭାରି ସୁଧାର, ସୁଶୀଳା। ତାକୁ ମୁଁ ସବୁଠାରୁ ବେଶୀ ଭଲପାଏ।''

ଯୋଗୀ କହିଲେ, ''ଠିକ୍ ଅଛି। ତୁମେ ଏକାନ୍ତରେ ସେହି ମଇଁଷିଟିକୁ ଧ୍ୟାନ କରିବାରେ ଲାଗ।'' ଏପରି ଉପଦେଶ ଦେଇ ଯୋଗୀ ଚାଲିଗଲେ।

କିଛି ଦିନ ପରେ ସେହି ଯୋଗୀ ପୁଣି ଥରେ ଆସିଲେ। ସେ ତାଙ୍କ କୃଷକ ଶିଷ୍ୟକୁ ପଚାରିଲେ, ''ଆଉ, ସବୁ ଭଲ ତ ? ଧ୍ୟାନ କିପରି ହେଉଛି ?''

କୃଷକ କହିଲା, ''ଭଗବନ୍ ! ଏତେବଡ଼ ମଇଁଷିକୁ ଧ୍ୟାନ କରି ହେଉନାହିଁ।''

ଲୋକଟି ସାଧନାରେ ଏଥର କିଛି ଆଗେଇଛି ବୋଲି ଯୋଗୀ ଜାଣିଗଲେ। କଥା ହେଉଛି, ମଣିଷ ଯେତେବେଳେ ସାଧନା ନିମନ୍ତେ ପ୍ରବୃତ୍ତ ହୁଏ, ସେତେବେଳେ ତାକୁ ନାନା ଅସୁବିଧା ପ୍ରତୀତ ହୁଏ। ଲୋକମାନେ [illegible] କହନ୍ତି, 'ମନକୁ ବଶୀଭୂତ କର, ମନକୁ କାବୁରେ ରଖ', କିନ୍ତୁ ମନଟା କ'ଣ [illegible] ଲୋକମାନେ ଜାଣନ୍ତି

ନାହିଁ। ଯିଏ ଅନବରତ ସାଧନା କରୁଥାଏ ସେ ହିଁ ମନର ସ୍ୱରୂପକୁ ଜାଣିପାରେ। କୁହାଳିଆ ତ ଜୀବନ-ଯାକ ବକର ବକର ହୋଇ ମଲେ ସୁଦ୍ଧା ମନର ସ୍ୱରୂପ ଜାଣିପାରେ ନାହିଁ। ତାକୁ ଜ୍ଞାନର ନାନା ଅସୁବିଧା ଜ୍ଞାତ ହେବାରେ ଲାଗିଲା। ଏପରି ଭାବି ଯୋଗୀ କହିଲେ, "ଆଚ୍ଛା କହିଲ, ମଇଁଷିର କେଉଁ ଅଙ୍ଗଟି ତୁମକୁ ସବୁଠାରୁ ବେଶୀ ଭଲ ଲାଗେ ?"

ସେ କହିଲା, "ମହାରାଜ ! ମଇଁଷିର ଶିଙ୍ଗ ମୋତେ ଭଲଲାଗେ।

ଯୋଗୀ କହିଲେ, "ଏଥର ତା'ର ଅନ୍ୟ ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗକୁ ଛାଡ଼ି କେବଳ ଶିଙ୍ଗକୁ ଧ୍ୟାନ କର।" ଏପରି ଉପଦେଶ ଦେଇ ଯୋଗୀ ଅନ୍ୟତ୍ର ଚାଲିଗଲେ। କୃଷକ-ଶିଷ୍ୟ ଗୋଟିଏ ଛୋଟିଆ କୋଠରିରେ ବସି ଧ୍ୟାନ କରୁଥିଲା। କିଛି ଦିନ ପରେ ସେହି ଯୋଗୀଗୁରୁ ପୁଣି ଆସିଲେ, ଆଉ ତାକୁ ପଚାରିଲେ, "ମହିଷ ଦାସ ! ଆରେ ଭାଇ, ବାହାରକୁ ଆସ ତ !"

ସେ କୋଠରି ଭିତରେ ପୂର୍ବବତ୍ ଆଖି ବନ୍ଦକରି ବଡ଼ପାଟିରେ କହିଲା, "ଗୁରୁଜି ! ଯିବି କେମିତି, ମୋ ମୁଣ୍ଡରେ ଏଡ଼େ ବଡ଼ ବଡ଼ ଦୁଇଟା ଶିଙ୍ଗ ଅଛି ପରା। ଏହି ଶିଙ୍ଗ ଯୋଗୁଁ ମୁଁ କୋଠରି ଭିତରୁ ବାହାରି ପାରୁନାହିଁ।"

ଏଥର ଯୋଗୀ ବୁଝିଗଲେ ଯେ ଶିଷ୍ୟର ମନ ହୃଦୟରେ ତଦରୂପ, ତଦାକାର ହେବା ଆରମ୍ଭ ହେଲାଣି। ଇଏ ଧ୍ୟାନର ଅଧିକାରୀ ହୋଇଗଲାଣି। ପରେ ପରେ ସେ ମଇଁଷିର ଶିଙ୍ଗ ବଦଳରେ ଭଗବାନଙ୍କର ହାସ୍ୟମୟୀ ମୁଖାରବିନ୍ଦର ଧ୍ୟାନ ଶିଖାଇ ଦେଇଥିଲେ। ଚିତ୍ତକୁ ଏକାଗ୍ର କରିବା ତ ଶିଖିଯାଥିଲା, ମଇଁଷିର ଶିଙ୍ଗ ବଦଳରେ ତାକୁ ଭଗବାନଙ୍କର ଶ୍ରୀମୁଖ ଧ୍ୟାନ କରିବାକୁ ବିଶେଷ କିଛି କଷ୍ଟ ହେଲା ନାହିଁ। ଶେଷରେ ସେ ବି ଜଣେ ଉତ୍ତମ ଯୋଗୀ ହୋଇଗଲା।

ଏହିକଥା ବର୍ଣ୍ଣନା କରିବାର ସାରାଂଶ ହେଉଛି, କୌଣସି କାରଣରୁ ଯଦି ଜଣଙ୍କ ଚିତ୍ତ ଗୋଟିକରେ ତନ୍ମୟ ହୋଇଯାଏ, ସେ ଅତି ସହଜରେ ଭଗବାନଙ୍କୁ ପାଇଯାଏ। ଯାହାର ଚିତ୍ତ ଅନେକଙ୍କ ଆଡ଼କୁ ଯାଉଥାଏ, ସେପରି ଚଞ୍ଚଳ ଚିତ୍ତବିଶିଷ୍ଟ ମନୁଷ୍ୟର ମନ କଦାପି ଏକାଗ୍ର ହୋଇପାରେ ନାହିଁ। ଜଣେ ସ୍ୱାମୀଙ୍କୁ ଇଷ୍ଟଦେବ ବୋଲି ଗ୍ରହଣ କରିଥିବା ସ୍ତ୍ରୀ ପତିଲୋକକୁ ପ୍ରାପ୍ତ ହୋଇପାରେ। ଯାହାର ଚିତ୍ତ ଚଞ୍ଚଳ, ଯିଏ ସ୍ୱେଚ୍ଛାଚାରିଣୀ, କାମିନୀ ତଥା ପୁରୁଷପ୍ରିୟା, ସେ ଗୋଟିଏ ନର୍କରୁ ଆଉ ଗୋଟିଏ ନର୍କକୁ ଯାଉଥାଏ। **ମଣିଷ ଯାହା ଚିନ୍ତାକରେ ସେଠାରେ ସେ ତାହା ପାଏ ଓ ପରଲୋକରେ ବି ପ୍ରାପ୍ତ ହୁଏ। ଏଠାରେ ଯାହା କରେ ପରଲୋକରେ ସେୟା ପ୍ରାପ୍ତ ହୁଏ। ହାଟରେ ଯାହା ରୋଜଗାର କରିବ ତାହାହିଁ ଘରେ ଖାଇବ।**

ମହର୍ଷି ସୂତ କହୁଛନ୍ତି, ହେ ମୁନିଗଣ ! ଅବଧୂତ ମୁନି ଯଦୁରାଜଙ୍କୁ କହିଲେ, "ରାଜନ୍ ! ଦିନେ ମୁଁ ବୁଲୁବୁଲୁ ଗୋଟିଏ ଗାଁ'ରେ ପହଞ୍ଚିଗଲି। ମୁଁ ଦେଖିଲି, ଗୋଟିଏ କୀଟ ମୁହଁରେ ମାଟି ପୂରାଇ ପୂରାଇ କାନ୍ଥରେ ଗୋଟିଏ ଘର ତିଆରି କରିବାରେ ଲାଗିଛି। ମୁଁ କୌତୂହଳରେ ଦେଖିବାରେ ଲାଗିଲି। ସେ ଗୋଟିଏ ଅତି ସୁନ୍ଦର ଘର

ତିଆରି କରିଦେଲା। ସେହି ଘରୁ ବାହାରିବା ପାଇଁ କେଉଁଠାରେ ହେଲେ ବାଟ ରଖିନଥିଲା। କେବଳ ମୁହଁରେ ବାଟଟିଏ ଥିଲା। ସେ ଗୋଟିଏ କୀଟକୁ କେଉଁଠୁ ଧରି ଆଣିଲା।''

''ମୁଁ ଭାବିଲି, 'ଯାକୁ ଇଏ ନିଶ୍ଚୟ ମାରି ଖାଇଦେବ।' କିନ୍ତୁ ତାକୁ ମାରିଲା ନାହିଁ। ଜୀବିତାବସ୍ଥାରେ ସେଇ ଘର ଭିତରେ ଭର୍ତ୍ତିକରି ଦେଇ ତା' କାନ ପାଖରେ ଗୁଣୁଗୁଣୁ ହେବାରେ ଲାଗିଲା। ଦ୍ୱାର ମୁହଁରେ ଏପରି ଏକ ଜାଲ ଭଳି କରିଦେଇଥିଲା, ଯେଉଁବାଟେ ବାୟୁ ତ ଯାଇପାରୁଥିଲା, ହେଲେ ସେଇ କୀଟ ସେହି ବାଟରେ ବାହାରି ଆସିବାର ଉପାୟ ନଥିଲା। ପେଶସ୍କାରୀ ଏଣେତେଣେ ଯାଉଥାଏ, ବୁଲାବୁଲି କରି ଫେରିଆସି ପୁଣି ତା'କାନ ପାଖରେ ଗୁଣୁଗୁଣୁ ହେଉଥାଏ। ସେହି ରୁଦ୍ଧଘରେ ଥିବା କୀଟ ଭୟ ପାଇ ସେଇ ପେଶସ୍କାରୀକୁ ଅନବରତ ଚିନ୍ତା କରିବାରେ ଲାଗିଥାଏ। ଅନବରତ ଚିନ୍ତା କରୁଥିବା ହେତୁ ଏପରି ପ୍ରଭାବ ପଡ଼ିଲା ଯେ ସେଇ ପୋକ ଯାର ଶରୀର ଭଳି ହୋଇ ନ ଥିଲେ ସୁଦ୍ଧା ସେହି ପେଶସ୍କାରୀ ଭଳି ହୋଇଗଲା। ଠିକ୍ ତା'ରି ଭଳି ହୋଇଗଲା। (୧) ଠିକ୍ ସେତିକି ବେଳେ ମୁଁ ପେଶସ୍କାରୀକୁ ମୋର ଗୁରୁ କରିନେଲି। ତା'ଠାରୁ ମୁଁ ଏହା ଗ୍ରହଣ କଲି ଯେ, ଦେହଧାରୀ ଜୀବ ଯାହାକୁ ଦ୍ୱେଷରେ, ଭୟରେ ଅଥବା ସ୍ନେହରେ ଚିନ୍ତାକରେ, ଅନବରତ ମନରେ ଧାରଣ କରେ, ପୂରାପୂରି ତା'ଠାରେ ମନୋନିବେଶ କରିଦିଏ, ପରିଶେଷରେ ଠିକ୍ ତା'ଭଳି ହୋଇଯାଏ, ତଦରୂପ ହୋଇଯାଏ। **ଯିଏ ବିଷୟବସ୍ତୁକୁ ଧ୍ୟାନ କରିବ ତା'ମନ ବିଷୟାକାର ହୋଇଯିବ। ଆଉ ଯିଏ ବ୍ରହ୍ମକୁ ଧ୍ୟାନ କରିବ ସେ ବ୍ରହ୍ମରୂପ ହୋଇଯିବ।** ଏପରି ଶିକ୍ଷା ଗ୍ରହଣକରି ମୁଁ ଚାଲି ଆସିଲି। ଆଉ ସେହି ସମୟଠାରୁ ବ୍ରହ୍ମକୁ ଧ୍ୟାନ କରି କରି ମୁଁ ବ୍ରହ୍ମଙ୍କ-ସଦୃଶ— ମାୟା-ମୋହ-ରହିତ, ଚିନ୍ତା-ଶୋକ-ଶୂନ୍ୟ ହୋଇଯାଇଛି। ଏବଂ ନିର୍ଦ୍ୱନ୍ଦ୍ୱ ହୋଇ ବିଚରଣ କରୁଛି। ଏ ହେଉଛି ମୋର ଚବିଶତମ ଗୁରୁ। ଏ ସମସ୍ତଙ୍କର ଶିକ୍ଷା ପାଇ ମୁଁ ମାନ-ଅପମାନ-ରହିତ ହୋଇ ବାଳକଙ୍କ ଭଳି କ୍ରୀଡ଼ା କରିବାରେ ଲାଗିଛି। (୨)

---

(୧) ଏକାନ୍ତ ସ୍ନେହ ଦ୍ୱେଷ ଭୟେ। ନିଶ୍ଚଳ ଧ୍ୟାନ ଯହିଁ ରହେ ॥
ଜନ୍ମଇ ସେହି ରୂପ ଧରି । ଯେସନେ କୀଟ ପେଶସ୍କାରୀ॥
କୀଟ ଆଣଇ ନାନାରୂପେ । ନିଜ ଭୁବନେ ନେଇ ସ୍ଥାପେ॥
ସେ କୀଟ ପ୍ରାଣ ଯିବାକାଳେ। ତାହାକୁ ରଖିଥାଏ ତୋଳେ ॥
ଭୟେ ଚିନ୍ତଇ ତାର ରୂପ । ଜନ୍ମଇ ଘେନି ସେ ସ୍ୱରୂପ ॥
[ଭାଗବତ : ଜଗନ୍ନାଥ ଦାସ ; ୧୧ସ୍କ.୧୦ଅ]

(୨) ମୋହର ମନ ସେହିମତେ । କୃଷ୍ଣ ଚରଣେ ଅବିରତେ ॥
ନିଶ୍ଚଳେ ସ୍ଥାପି ସାବଧାନେ । ବୁଲଇ ମହୀ ପର୍ଯ୍ୟଟନେ ॥
ଏମନ୍ତେ ମୋର ଗୁରୁ ଯେତେ। ତାହାଙ୍କ ଉପଦେଶ ମତେ ॥
କାୟ ବଚନ ମନେ ଧରି । ଭ୍ରମଇଁ ଅବନୀ ବିହରି ॥
[ଭାଗବତ :ଜଗନ୍ନାଥ ଦାସ : ସ୍କ ୧୧ଅ.୧୦]

ଏପରି କଥା ଶୁଣି ରାଜା ଯଦୁ ପଚାରିଲେ, "ହେ ବ୍ରହ୍ମନ୍! ଏହି ଚବିଶଜଣ ଗୁରୁଙ୍କ ଛଡ଼ା ଆପଣଙ୍କର ଆଉ କେହି ଗୁରୁ ଅଛନ୍ତି କି ?"

ଅବଧୂତ ମୁନି ତତ୍କ୍ଷଣାତ୍ କହିଲେ, "ହଁ ରାଜନ୍! ସବୁଠାରୁ ବଡ଼ ଗୁରୁ ହେଉଛି ମୋର ଏହି ଶରୀର। ଏହାଠାରୁ ମୁଁ ସବୁଠାରୁ ମହତ ଶିକ୍ଷା ପାଇଛି।"

ରାଜା ପଚାରିଲେ, "ଶରୀରକୁ ଗୁରୁ କରି ଯା ଠାରୁ ଆପଣ କି ଶିକ୍ଷା ଲାଭ କରିଛନ୍ତି, କୃପା କରି ତାହା ମୋତେ ଶୁଣାନ୍ତୁ।"

ମୁନି କହିଲେ, "ଆଚ୍ଛା ହେଉ ରାଜନ୍! ଶୁଣନ୍ତୁ। ଏବେ ଶରୀରଠାରୁ ପାଇଥିବା ଶିକ୍ଷା ପ୍ରସଙ୍ଗରେ କହୁଛି।"

ମହର୍ଷି ସୂତ ଶୌନକାଦି ମୁନିମାନଙ୍କୁ କହୁଛନ୍ତି, "ହେ ମୁନିଗଣ! ଦେହଠାରୁ ଗ୍ରହଣ କରିଥିବା ଶିକ୍ଷା ଶୁଣନ୍ତୁ।"

### ଛପ୍ପୟ

କାହୂମେଁ ଭୟ ଦ୍ୱେଷ ନେହବଶ ଚିତ ଲାଗି ଜାବୈ।
ଭୃଙ୍ଗୀ କ୍ରୀଡ଼ା ସରିସ ତୁରତ ତନ୍ମୟ ବନି ଜାବୈ॥
ତନ ଗୁରୁ କରୟୋ ବିବେକ ହୋହି ବୈରାଗ୍ୟ ଭୂପବର।
ଉତପତି ଔର ବିନାଶ ହୋୟ ସୁଖ ସହେ ନିରନ୍ତର॥
ଯଦ୍ୟପି ଜାତେଂ ତତ୍ତ୍ୱକୋ, ଚିନ୍ତନ ହୌଂ ନିତପ୍ରତି କରୂଁ।
ଜାନି ପରାୟୀ ମୋହ ତଜି, ହୈଂ ଅସଂଗ ନିର୍ଭୟ ଫିରୂଁ॥



# ଦେହଠାରୁ ଶିକ୍ଷା

ଦେହୋ ଗୁରୁର୍ମମ ବିରକ୍ତିବିବେକହେତୁ-
ର୍ବିଭ୍ରତ୍ ସ୍ମ ସତ୍ତ୍ୱନିଧନଂ ସତତାର୍ତ୍ତ୍ୟୁଦର୍କମ୍ ।
ତତ୍ତ୍ୱାନ୍ୟନେନ ବିମୃଶାମି ଯଥା ତଥାପି
ପାରକ୍ୟମିତ୍ୟବସିତୋ ବିଚରାମ୍ୟସଙ୍ଗଃ ।। ★

[ଶ୍ରୀ ଭା. ୧୧ ସ୍କ ୯ ଅ. ୨୫ ଶ୍ଲୋକ]

**ଛପ୍ପୟ**

ଦାରା, ସୁତ, ଧନ, ଭୃତ୍ୟ, କୁଟୁମ୍ବ ଘର ସଂଚୟ କରିକେଂ ।
ପରହିତ ଶ୍ରମ ନିତ କରେଂ ବୃକ୍ଷ ସମ ଦୁଖ ବହୁ ସହିକେଂ ।।
ଅପନୀ ଅପନୀ ଓର ଖେଂଚି ଇନ୍ଦ୍ରିୟ ଲୈ ଜାବେଂ ।।
ଜୈସେ ପତିକୂଁ ସୌତି ପକରିକେଂ ବହୁତ ନଚାବେଂ ।।
ପରମାରଥ ଜାତେଂ ସଧୈ, ବର ନର ତନକୂଁ ପାଇକେଂ ।
ମୋକ୍ଷ ହେତୁ ଶ୍ରମ ନହିଁ କରୈ, ସରବସୁ ଜାଇ ଗଁମାଇକେଂ ।।

ଯେ କୌଣସି ଦେଶକୁ ଯାଅ, ଯେ କୌଣସି ଯୋନିକୁ ଯାଅ, ପେଟ ସବୁଠି ପୂରଣ କରିବାକୁ ହେବ । ନିଜର ନିଜ ଭୋଜନ ବ୍ୟବସ୍ଥା ପ୍ରତ୍ୟେକଙ୍କୁ କରିବାକୁ ହୋଇଥାଏ । ସନ୍ତାନ ଉତ୍ପତ୍ତି ପାଇଁ କାହାକୁ ଶିଖାଇବା ଦରକାର ପଡ଼େନାହିଁ । ଏହା ପ୍ରତ୍ୟେକ ଯୋନିର ଏକ ସ୍ୱାଭାବିକ ପ୍ରବୃତ୍ତି । ଶ୍ରମକରି ସମସ୍ତେ କ୍ଳାନ୍ତ ହୁଅନ୍ତି । ପ୍ରତ୍ୟେକେ କିଛି କିଛି ବିଶ୍ରାମ କରି ଶ୍ରମ ଲାଘବ କରନ୍ତି । ଯେଉଁ ବସ୍ତୁ ଆବଶ୍ୟକ ତାହା ପାଖରେ ନ ଥିଲେ ସେଥିପାଇଁ ଉଦ୍ୟମ ଓ ଯାହା ଥାଏ ତାହାର ସୁରକ୍ଷା କରିବା ଜୀବଙ୍କର ସାଧାରଣ ସ୍ୱଭାବ । ଏଥିପାଇଁ ମଣିଷକୁ କହିବା, ଉପଦେଶ ଦେବା ସେପରି ବିଶେଷ କଥା ନୁହେଁ । ନର-ତନୁରେ ହିଁ ଯାହା ପ୍ରାପ୍ୟ ହେବା ସମ୍ଭବ— ଅନ୍ୟ ଚୌରାଅଶୀ ଯୋନିରେ ଯାହା ପ୍ରାପ୍ୟ ହେବା ଅସମ୍ଭବ, ସେଥିନିମନ୍ତେ ଉପଦେଶ ଦିଆହୁଏ ।

---

★ ଅବଧୂତ ମୁନି ଦତ୍ତାତ୍ରେୟ ରାଜା ଯଦୁଙ୍କୁ କହୁଛନ୍ତି— "ଏହି ଦେହ ବି ମୋର ଗୁରୁ । କାରଣ ଏହା ହେଉଛି ବିବେକ ଓ ବୈରାଗ୍ୟର ହେତୁ । ଉତ୍ପତ୍ତି ଓ ବିନାଶ ହେଉଛି ଏହାର ଧର୍ମ । ଅବିରାମ କଷ୍ଟ ଭୋଗକରିବା ହେଉଛି ଏହାର ଫଳ । ଯଦ୍ୟପି ମୁଁ ଏଥିରେ ତତ୍ତ୍ୱଚିନ୍ତା କରିବାରେ ଲାଗିଛି, ତଥାପି ମୁଁ ଏ କଥା ଜାଣିଛି ଯେ ଏହା ମୋର ନୁହେଁ । ଏଣୁ, ଏହା ସହିତ ଅସଂଗ ହୋଇ ବିଚରଣ କରିବାରେ ଲାଗିଛି ।"

**ଆଉ ଏହି ଶିକ୍ଷା ଦେବା ହିଁ ଧର୍ମ। ଏହା ହିଁ ହେଉଛି ମଣିଷ ଶରୀରରେ ବିଶେଷତା।** ଯିଏ ଏପରି କରେନାହିଁ ସେ ମଣିଷକୁ କାଚ ମୂଲ୍ୟରେ ବିକ୍ରି କରୁଛି ବୋଲି ଜାଣିବାକୁ ହେବ। ସୁନାର ବଟକରା ନେଇ ଘାସ, ପାଳ ଓଜନ କରୁଛି। ଅମୃତ ନେଇ କଲରା, ମନ୍ଦାର ଆଦି ଗଛ ମୂଳରେ ଦେଉଛି ବୋଲି ଜାଣିବ। ମଣିଷ-ଶରୀରର ସର୍ବୋତ୍ତମ ଉପଯୋଗ ହେଉଛି ଜନ୍ମ-ମୃତ୍ୟୁର ବନ୍ଧନରୁ ମୁକ୍ତି ପାଇବାରେ। ଯେଉଁ ମହାନ୍ ଶକ୍ତିରୁ ପୃଥକ୍ ହୋଇ ଆମେ ନିଜକୁ କ୍ଷୀଣ ଓ ସୀମିତ ବୋଲି ମନେକରୁଛେ, ତା' ପାଖକୁ ଯିବା, ତହିଁରେ ମିଶିଯିବା, ଏକୀଭୂତ ହୋଇଯିବା ଉଚିତ। ଯିଏ ଏଥିପାଇଁ ଯାହା ନ କରୁଛି ତାକୁ ବାରମ୍ବାର ଜନ୍ମ ଓ ମରଣ ହେବାକୁ ପଡ଼ିବ। ନାନା କ୍ଳେଶ ଭୋଗିବାକୁ ପଡ଼ିବ। (୧)

ମହର୍ଷି ସୂତ ଶୌନକ ଆଦି ମୁନିଙ୍କୁ କହୁଛନ୍ତି—ହେ ମୁନିଗଣ! ଅବଧୂତ ଦତ୍ତାତ୍ରେୟ ଶରୀରକୁ କାହିଁକି ଗୁରୁକଲେ ସେହି କଥା ବର୍ଣ୍ଣନା କରିବାକୁ ଯାଇ ରାଜା ଯଦୁଙ୍କୁ କହିଲେ, "ରାଜନ୍! ଚବିଶ ଗୁରୁ କରିବା ପରେ ମୁଁ ଏହି ଶରୀରକୁ ପଚିଶତମ ଗୁରୁ କଲି। ଏହି ଶରୀରରେ ହିଁ ମୋତେ ବିବେକ ପ୍ରାପ୍ତ ହୋଇଛି। ମୋର ବୈରାଗ୍ୟର ହେତୁ ହେଉଛି ଏହି ଶରୀର।"

ରାଜା ପଚାରିଲେ—"ହେ ଭଗବନ୍! ଏହି ଶରୀର କିପରି ବିବେକ ଓ ବୈରାଗ୍ୟର ହେତୁ ହେଲା ?"

ମୁନି କହିଲେ, "ରାଜନ୍! ଦେଖ, ଏହି ଶରୀର ଜାତ ହୁଏ, ବଢ଼େ, ପୁଣି ଧୀରେ ଧୀରେ ଜର୍ଜର ହୁଏ, ଏବଂ ପରିଶେଷରେ ନାଶ ହୋଇଯାଏ। ଏହାପରେ ପୁଣି ଏଥିରୁ ନୂଆ ଶରୀର ଉତ୍ପନ୍ନ ହୁଏ। ଏଥିରୁ ଜନ୍ମହେବା ଓ ମରିବା ଏହାର ସ୍ୱଭାବ ବୋଲି ମୁଁ ଜାଣିଲି। ଏହାର ନିତ୍ୟତା ନାହିଁ, ସ୍ଥାୟିତ୍ୱ ନାହିଁ। ଶରୀରଧାରୀ କେହି କଷ୍ଟ ପାଉନାହାନ୍ତି ବୋଲି ଆପଣ ମୋତେ ଦେଖାଇ ପାରିବେ ନାହିଁ। ଆମ ଭଳି ଗରିବ ଲୋକ ଧନୀମାନେ ସୁଖରେ ଅଛନ୍ତି ବୋଲି ଭାବୁ। କିନ୍ତୁ ମୋ ପାଖକୁ ଅନେକ ଧନୀ ଲୋକ ଆସନ୍ତି, ସେମାନଙ୍କର ଦୁଃଖ କଥା ଶୁଣି ମୋତେ ଲାଗେ ଯେପରି ଏମାନଙ୍କଠାରୁ ଗରିବ ଅଧିକ ସୁଖରେ ଅଛନ୍ତି। ଯିଏ ଯେତେ ସଂଗ୍ରହୀ ହୋଇଥାଏ, ସେ ସେତେ ଅଧିକ ଦୁଃଖୀ ହୋଇଥାଏ। ସଂସାରରେ କେବଳ ଉପସ୍ଥ ଓ ଜିହ୍ୱାର କ୍ଷଣକ ପାଇଁ ସୁଖ ହୋଇଥାଏ, ପରିଣାମତଃ ତାହା ମଧ୍ୟ ଦୁଃଖଦାୟୀ ହୁଏ। ଯାହାର ପରିଣାମ ଦୁଃଖଦ, ଅଜ୍ଞାନୀ ମୂର୍ଖ ହିଁ କେବଳ ତାକୁ ସୁଖଦ ବୋଲି କହିପାରେ। ସଂସାରରେ ଯେଉଁ ଆଡ଼କୁ ଚାହିଁବା, କେବଳ ଦୁଃଖ ହିଁ ଦୁଃଖ ଦେଖାଯିବ। ଚୋରର ଦୁଃଖ, ରାଜାର ଦୁଃଖ, ଶତ୍ରୁ ଦୁଃଖ, କୁଟୁମ୍ବର ଦୁଃଖ, ଧନରେ ଦୁଃଖ, ସବୁଆଡ଼େ

---

(୧) ଆତ୍ମାର ଗୁରୁ ମୁଁ ଆପଣେ । ତେଣୁ ଧରଇ ତାକୁ ମନେ ॥
ଦେହର ଜନ୍ମ-ମୃତ୍ୟୁ ଦୁଇ । ବିଷ୍ଣୁ ମାୟାରେ ପ୍ରବର୍ତ୍ତଇ ॥
ଏ ଭାବ ବୁଝି ମୋର ମତି । ଏ ଦେହେ ନ କର ପୀରତି ॥
ଅନେକ ଜନ୍ମ କର୍ମ ଭାଗ୍ୟେ । ମୋହର ଜ୍ଞାନ ବଇରାଗ୍ୟେ ॥
[ଭାଗବତ :ଜଗନ୍ନାଥ ଦାସ :୧୧ସ୍କ, ୧୦ଅ]

ଦୁଃଖର ମାତ୍ରା ବଢୁଥିବା ଆମକୁ ଦେଖାଯିବ। ଏଣୁ, ଏହି ଶରୀରରୁ ମୋତେ ବୈରାଗ୍ୟର ଶିକ୍ଷା ମିଳିଛି। ଦୁଃଖର ଭଣ୍ଡାର ଏହି ଶରୀରକୁ ମୁଁ ମୋ ନିଜର ବୋଲି ଭାବେ ନାହିଁ।''

ରାଜା ପଚାରିଲେ, ''ବ୍ରହ୍ମନ୍! ଏହି ଶରୀରର ଫଳ ଦୁଃଖ ହିଁ ଦୁଃଖ, ଏଥିରେ ସୁଖ ନିମନ୍ତେ ସାଧନା କରିହେବ ନାହିଁ?''

ସହସା ମୁନି କହିଲେ, ''ହୋଇପାରିବ ନାହିଁ କାହିଁକି ମହାରାଜ! ସୁଖ କେବଳ କାହିଁକି, ପରମସୁଖ ପ୍ରାପ୍ତ ହୋଇପାରିବ। ମଣିଷ ଶରୀରରେ ହିଁ ମୋକ୍ଷ ପ୍ରାପ୍ତି ସମ୍ଭବ। ଏହି ଶରୀରଦ୍ୱାରା ହିଁ ମୁଁ ପରମତତ୍ତ୍ୱ ଚିନ୍ତା କରିପାରୁଛି। କିନ୍ତୁ ଏହାକୁ ମୁଁ ସାଧ ବୋଲି ଗ୍ରହଣ ନ କରି ସାଧନ ରୂପେ ଗ୍ରହଣ କରିଛି। ଏହାକୁ ମମତା କରୁନାହିଁ। ବଦ୍ରୀନାଥକୁ ଚଢ଼ିବାବେଳେ ଆମେ କନାର ଯୋତା ପିନ୍ଧୁ, ଯାହା ସେଠାରେ ପହଁଞ୍ଚିବାବେଳକୁ ଫାଟି ଯାଇଥାଏ, ଏବଂ ଆମେ ତାହା ଫୋପାଡ଼ି ଦେଉ; ଠିକ୍ ସେହିଭଳି, ଏହି ଶରୀର ସାଧ ନୁହେଁ କେବଳ ମୋକ୍ଷର ସାଧନ। ଏହାଦ୍ୱାରା ଧ୍ୟାନ, ଧାରଣା, ସମାଧି, ଅଭ୍ୟାସ କରାଯାଏ। କିନ୍ତୁ, ମୁଁ ଦୃଢ଼ରୂପେ ଜାଣିଥାଏ ଯେ ଏହି ଶରୀର ହେଉଛି ଅନ୍ୟର ଭକ୍ଷ୍ୟ। ଯଦି ବଣରେ ମୃତ୍ୟୁ ହୋଇଯାଏ ତେବେ ବିଲୁଆ, ଚିଲ, କୁକୁରଙ୍କ ପେଟକୁ ଚାଲିଯିବ। କେହି ଜଳରେ ଫୋପାଡ଼ି ଦେଲେ କଇଁଚ ଆଦି ଖାଇଦେବେ। କେହି ଚିତାରେ ପକାଇଦେଲେ ଅଗ୍ନି ଭସ୍ମ କରିଦେବେ। ଯାହା ଅନ୍ୟର ଭକ୍ଷ୍ୟ ତାକୁ ମୁଁ ମୋର ବୋଲି କିପରି ଭାବିବି? ଏଣୁ, ଶରୀର ପ୍ରତି ମୋର ଆଦୌ ଆସକ୍ତି ନାହିଁ। ଏହା ସହିତ ଅସଙ୍ଗ ଭାବରେ ମୁଁ ବିଚରଣ କରୁଥାଏ। (୨)

''ଆପଣ ଭାବନ୍ତୁ ରାଜନ୍! ମଣିଷ ଯାହା ବି କରେ, ନିଜର ସୁଖ ପାଇଁ କରେ। ଜଣେ କୁଷ୍ଠରୋଗୀକୁ ଦେଖି ଆମ ମନରେ ଦୟା ଆସେ। ଆମେ ତାକୁ କିଛି ଧନ ଦେଉ। ଆମକୁ ନିଶ୍ଚିତ ଶାନ୍ତି ମିଳେ। ଅନେକ ଲୋକ ଦୁଃଖୀ ଅଛନ୍ତି। ସେମାନଙ୍କୁ ଦେଖି ଆମ ହୃଦୟ ଦ୍ରବିତ ହୋଇଯାଏ। ଆମକୁ ଲାଗେ, ଆମେ ଯଦି ଆମର ଏହି ଶରୀରର ଆହୁତି ଦେବା ଦ୍ୱାରା ତା'ର ଦୁଃଖ ଦୂର ହୋଇଯାଇପାରନ୍ତା। ତେବେ ଆମେ ତୁରନ୍ତ ଶରୀରର ହୋମ କରିଦିଅନ୍ତେ। ଏଥିପାଇଁ, ସ୍ୱାର୍ଥ ପରମାର୍ଥ ଯାହା କିଛି ମଣିଷ କରେ, ନିଜ ପାଇଁ ହିଁ କରିଥାଏ।''

''ବିବାହ କରୁ। କ'ଣ ସ୍ତ୍ରୀ ପାଇଁ କରୁ? ନାଁ ଆମେ ଆମ ନିଜ ପାଇଁ କରୁ। ସ୍ତ୍ରୀ ବି ନିଜର ସୁଖ ପାଇଁ ସ୍ୱାମୀକୁ ବରଣ କରେ। ଦୁହେଁ ମିଶି ଏକ

---

(୨) ଉଦାସୀ ମତେ ଦେହେ ଥାଇ । ଗୁରୁଙ୍କ ଉପଦେଶ ଧ୍ୟାୟି ॥
ପୁତ୍ର କଳତ୍ର ପଶୁ ଦାସେ । ଏହାକୁ ପୋଷି ଦେହ ଆଶେ ॥
ଶରୀର ସଙ୍ଗେ ସେ ରମନ୍ତି । ମରଣେ କେହି ନ ଗଚ୍ଛନ୍ତି ॥
ବୃକ୍ଷଙ୍କ ଧର୍ମ ପ୍ରାୟ ଦେହୀ । ଜନ୍ମିଲେ ଅବଶ୍ୟ ମରଇ ॥
ଏଣୁ ଅନିତ୍ୟ ହେଲେ ମୁହିଁ । କେବେହେଁ ବିଶ୍ୱାସ ନ ଯାଇ ॥

[... ଜଗନ୍ନାଥ ଦାସ : ୧୧ସ୍କ.୧୦ଅ]

ହୋଇଯାଆନ୍ତି। ଦୁହିଁଙ୍କ ସ୍ୱାର୍ଥ ଅଭିନ୍ନ ହୋଇଗଲେ ପରସ୍ପର ପ୍ରେମ କରନ୍ତି। ସ୍ତ୍ରୀ ଏଇଥିପାଇଁ ଭଲ ଲାଗେ ଯେ, ସେ ନିଜର ଓ ଆମର ଅନୁକୂଳ ହୋଇଥାଏ। ପୁଅ ତ କାହାର କାହାର ନିଶ୍ଚୟ ଅଛନ୍ତି, ହେଲେ ନିଜ ପୁଅ ନିଜକୁ ସବୁଠାରୁ ଅଧିକ ଭଲ ଲାଗେ। ଆମର ପୁଅ ହେଉ ବୋଲି ଲୋକମାନେ ଚାହାଁନ୍ତି। ଆମର କାମନାର ବିସ୍ତାର ଯେତେବେଳେ ହୁଏ, ପରିବାର ବଢ଼େ। ନିଜର ସ୍ତ୍ରୀ ଯଦି ଅଛି, ତା' ହେଲେ ପୁଅ ହେବା ଦରକାର। ଗୋଟିଏ ପୁଅରେ ମନ ଖୁସୀ ନ ହେଲେ ଅନେକ ପୁଅ ଜନ୍ମ କରେ। ଝିଅ ଥିଲେ, ତା' ବିଭାଘର କର। ଜୋଇଁ ହେବେ, ପୁଅର ବିବାହ ହେବ, ବୋହୂ ଆସିବେ। ସେମାନଙ୍କର ବି ପୁଅ ଝିଅ ହେବେ। ଧନ ବିନା ଏତେ ବଡ଼ ପରିବାର ଚଳିବ କିପରି, ତେଣୁ ଧନ ବି ହେଉ, ବ୍ୟବସାୟ ବି ହେଉ, ଜମି ହେଉ, ବଳଦ ହେଉ, ଘୋଡ଼ା ହେଉ, ହାତୀ ହେଉ, ରଥ ବି ରହୁ। ଏ ସମସ୍ତଙ୍କ ଦେଖା-ଚାହାଁ ପାଇଁ ନୌକର, ଚାକର ରହିବା ଦରକାର। ଘର ଦରକାର, ପକ୍କା ନହେଲେ ବି କଚାଘର ହେଉ ପଛେ। ଏହିଭଳି କୁଟୁମ୍ବଙ୍କର ଜାଲ ସ୍ୱତଃ ବିସ୍ତାର ଲାଭ କରେ। ନିଜେ ନିଜପାଇଁ ଖୁବ୍ କଷ୍ଟ କରି, ମିଛ କହି, ଧନ ସଂଚୟ କରିଥା'ନ୍ତି। କହିଲ ଦେଖି, ସଂଚୟକାରୀକୁ ମମତା ବିନା ଏଥିରୁ ଆଉ କିଛି ସୁଖ ମିଳେ କି?''

''ଜଣେ ଲୋକ କୋଟିଏ ଟଙ୍କା ଜମା କଲା; ସେ ଏଥିରୁ ଆଦୌ ଖର୍ଚ୍ଚ କରୁ ନଥାଏ। ସେ ଜଣେ କୋଟିପତି ବୋଲି ଆତ୍ମ-ସନ୍ତୋଷ ଲାଭ କରୁଥାଏ। ଜଣଙ୍କର ଦଶଟି ପୁଅ —ସେମାନଙ୍କୁ ମାରେ, ପିଟେ, ଗାଳିଦିଏ ବା ସ୍ନେହ କରେ, ଜୀବନଯାକ ସେମାନଙ୍କ ଚିନ୍ତା ହିଁ କରୁଥାଏ। ସେଥିରେ କି ସୁଖ? ଗୋଟିଏ ବୃକ୍ଷ। ମଇଳା ଖାଦ୍ୟ ଖାଇ ବଢ଼େ। ବର୍ଷା ଦିନରେ ବର୍ଷା ସହେ। ଗ୍ରୀଷ୍ମ ଦିନରେ ଗରମରେ ଠିଆ ହୋଇଥାଏ, ଲୁ ସହେ, ଶୀତରେ ଶୀତର ପ୍ରକୋପ ସହି ବାହାରେ ଠିଆ ହୋଇଥାଏ। ସୁନ୍ଦର ସୁନ୍ଦର ଫଳ ଫଳେ। ଏହା ସ୍ୱାଦ ଅନ୍ୟମାନେ ପାଆନ୍ତି। ତାକୁ ତ ପଚାସଢ଼ା ମଳିଳା ଉପରେ ଠିଆ ହୋଇ ସବୁପ୍ରକାର କଷ୍ଟ ଇ କଷ୍ଟ ସହ୍ୟ କରିବାକୁ ପଡୁଥାଏ। ମଣିଷ ଶରୀର ଠିକ୍ ଏହିପରି। କର୍ମ-ରୂପୀ ବୀଜରୁ ଏହା ଉତ୍ପନ୍ନ ହୋଇଛି। ନିଜର ଶାଖାଙ୍କର ଫଳରେ ଅନ୍ୟଙ୍କ ପାଇଁ ସବୁ କରିବାରେ ଲାଗିଥାଏ। ପୁଣି ବୀଜ ଉତ୍ପନ୍ନ କରେ। ତାହା ଅନ୍ୟଙ୍କ ପାଇଁ ଉତ୍ପନ୍ନ ହୋଇଥାଏ। **ମଣିଷ ଯେତେ ଚିନ୍ତା କୁଟୁମ୍ବ ପରିବାର, ଧନ ଆଉ ବ୍ୟବସାୟ ପାଇଁ କରେ, ସେତିକି ଯଦି ଭଗବାନଙ୍କପାଇଁ କରନ୍ତା ତାହା ହେଲେ ସେ ତରି ଯାଆନ୍ତା। ଜନ୍ମ-ମରଣର ଚକ୍ରରୁ ଚିରକାଳ ପାଇଁ ମୁକ୍ତ ହୋଇ ଯାଆନ୍ତା।''**

ରାଜା କହିଲେ, ''ଭଗବନ୍! ଧନ ଓ ପୁତ୍ରଙ୍କ ଠାରୁ ସୁଖ ନ ମିଳୁ, କିନ୍ତୁ ଇନ୍ଦ୍ରିୟଙ୍କର ଅନୁକୂଳ ବିଷୟ ତ ମିଳିଯାଏ। ସେଥିରେ ମଣିଷଙ୍କୁ ସୁଖ ଲାଗେ।''

ମୁନି କହିଲେ—''ହେ ରାଜନ୍! ସୁଖ କେଉଁଠି! ସତ କହିବାକୁ ଗଲେ, ଅଧିକ ସଂଗ୍ରହରେ ଦୁଃଖ ହିଁ ବଢ଼େ। ଗୋଟିଏ ସ୍ତ୍ରୀରେ ଯଦି ଏତିକି ସୁଖ ତେବେ ଅନେକ ସ୍ତ୍ରୀରେ କେତେ ଅଧିକ ସୁଖ ନ ମିଳିବ— ଏପରି ଭାବି ଯଦି ଜଣେ ଅନେକ ସ୍ତ୍ରୀଙ୍କୁ ବିବାହ କରେ ତେବେ ତାକୁ ତା'ର କଳ୍ପିତ ସୁଖ ମିଳେ କି?

''ରାଜନ୍! ଦିନେ ମୁଁ ବୁଲୁବୁଲୁ ଗୋଟିଏ ନଗରରେ ପହଞ୍ଚିଗଲି। ସେଠାରେ ଜଣେ ପୁରୁଷର ପାଞ୍ଚଟି ସ୍ତ୍ରୀ ଥିଲେ। ମୁଁ ଭାବିଲି, ଏଇଟା ବଡ଼ ଲୋକ, ଯାର ପାଞ୍ଚଜଣ ସ୍ତ୍ରୀ, ଇଏ ନିଶ୍ଚୟ ସୁଖୀ ହୋଇଥିବ— କିଛି ସମୟ ଯାର ସୁଖକୁ ଦେଖିବା। ମୁଁ ତ ସହଜେ ଅବଧୂତ। କେଉଁଠି ରହିବାର କି ଖାଇବାର ତ ନାହିଁ, ତେଣୁ ମୁଁ ସେଠି ବସିଗଲି।

ସେଇ ସ୍ତ୍ରୀଙ୍କ ଭିତରୁ ଜଣେ କହିଲା, 'ବାବାଜି! କ'ଣ ଦେଖୁଛନ୍ତି?'

ମୁଁ କହିଲି, 'କ'ଣ ଦେଖିବାର ଅଛି? ମୁଁ ତ ସଂସାରର ଖେଳ ଦେଖିବୁଲୁଛି।'

''ସେ ହସିଦେଲା, ଆଉ କହିଲା, 'ଆଚ୍ଛା, ବସିଥାନ୍ତୁ। ତୁମକୁ ମୁଁ ବି ଗୋଟିଏ ଖେଳ ଦେଖାଇବି।'' ମୁଁ ଗୋଟିଏ ଡିପ ଜାଗାରେ ବସିଗଲି।

''ସେଇ ପାଞ୍ଚଜଣ ସ୍ତ୍ରୀଙ୍କ ଘର ଅଲଗା ଅଲଗା ଥିଲା। ଚାରିଜଣ ଉପର ମହଲାରେ ରହୁଥିଲେ। ଜଣେ ସବୁ ଜାଗାରେ ତା' ନିଜ ପାଇଁ ଆସନ ରଖିଥିଲା। ସେ ବାଳରେ ଫୁଲ ଲଗାଇ, ବସ୍ତ୍ରାଳଙ୍କାରରେ ସୁସଜ୍ଜିତ ହୋଇ, ପାନଖାଇ, କଜ୍ଜଳ ଓ ବିନ୍ଦି ଲଗାଇ ସଜାଡ଼ି ହୋଇ ବସିଥିଲା। ଏତିକିବେଳେ ତା' ସ୍ୱାମୀ ଆସିଗଲା। ପ୍ରଥମେ ସବୁ ଜାଗାରେ ରହିପାରୁଥିବା ସ୍ତ୍ରୀ ସ୍ୱାମୀପାଖକୁ ଦୌଡ଼ି ଆସି କହିଲା, 'ଆଜି ତୁମକୁ ମୋ ସହିତ ରହିବାକୁ ହେବ।''

''ଏହି ସମୟରେ ଉପରେ ରହୁଥିବା ଚାରିଜଣଯାକ ଦୌଡ଼ି ଆସିଲେ, ଆଉ ଜଣେ ହାତ ଧରିନେଲା କହିଲା, 'ମୋ ଘରକୁ ଚାଲ।' ଦ୍ୱିତୀୟ ଅନ୍ୟ ହାତଧରି ତା' ଘର ଆଡ଼କୁ ଟାଣିଲା। ତୃତୀୟକୁ ଆଉ ହାତ ତ ମିଳିଲା ନାହିଁ, ସେ ସ୍ୱାମୀର ଚୁଟିଧରି ଝିଙ୍କିବାରେ ଲାଗିଲା। ଆଉ ଚତୁର୍ଥ ଜଣକ ବିଚରାର କାନ ଧରି ଟାଣିବାରେ ଲାଗିଲା। ମୁଁ ବସି ରହି ହସୁଥାଏ। ଏହି ଖେଳ ଦେଖି ମୋତେ ଖୁବ୍ ମଜା ଲାଗୁଥିଲା। ଅନେକ ସମୟ ପର୍ଯ୍ୟନ୍ତ ଏପରି ଭିଡ଼ା-ଓଟରା ଚାଲିଥିଲା।''

ଯଦୁରାଜ କହିଲେ, ''ବ୍ରହ୍ମନ୍! ସେହି ଲୋକଟି ଅତି ମୂର୍ଖ। ପାଞ୍ଚଜଣଙ୍କୁ ସେ ବିବାହ କାହିଁକି କରୁଥିଲା? ପାଞ୍ଚଜଣଙ୍କୁ ବିବାହ କରିବାର ଇଚ୍ଛା ଥିଲେ ସାଦାସିଧା ସରଳ ସ୍ୱଭାବର ପାଞ୍ଚଜଣଙ୍କୁ ବିବାହ କରିଥାଆନ୍ତା। ଏ ଭଳି ଚଞ୍ଚଳଚିତ୍ତ କଳିକାଣ୍ଡୋଇ ପାଞ୍ଚଜଣ ଚଣ୍ଡୀଙ୍କୁ କାହିଁକି ବିଭା ହେଲା?''

ଅବଧୂତ ମୁନି ହସି ହସି କହିଲେ, ''ରାଜନ୍! ସେ ମୂର୍ଖ ନଥିଲା। ପ୍ରତ୍ୟେକ ଇନ୍ଦ୍ରିୟବାନ୍ ପୁରୁଷ ହିଁ ମୂର୍ଖ। ଏହି ପଞ୍ଚ ଇନ୍ଦ୍ରିୟ ହେଉଛନ୍ତି ପଞ୍ଚ-ପତ୍ନୀ। ଏମାନେ ପୁରୁଷଙ୍କୁ ନିଜ ନିଜ ଆଡ଼କୁ ଭିଡ଼ା ଓଟରା କରୁଥା'ନ୍ତି। ସବୁ ସ୍ଥାନରେ ନିଜର ଆସନ ପ୍ରସାର କରି ରଖିଥିବା ଏହି ଚର୍ମ ଚାହେଁ— ଯିଏ ସୁନ୍ଦର କୋମଳ ସ୍ପର୍ଶଯୁକ୍ତ ତାକୁ ହୃଦୟରେ ଚାପି ରଖିବାକୁ। ଜିହ୍ୱା ଚାହେଁ, ସ୍ୱାଦିଷ୍ଟ ଯାହା ପାଉଛି ତାହା ଚାଟି ନେବା ପାଇଁ। ଶ୍ରବଣ-ଇନ୍ଦ୍ରିୟ ମଧୁର ଶବ୍ଦ ଶୁଣିବା ପାଇଁ ଆଗ୍ରହ କରୁଥାଏ। ଆଖି ସୁନ୍ଦର ସୁନ୍ଦର ରୂପ ଦେଖିବା ପାଇଁ ଲାଳାୟିତ ରହିଥାଏ। ପାଞ୍ଚଜଣ ସ୍ତ୍ରୀ ନିଜର ସ୍ୱାମୀକୁ ଯେପରି ସବୁବେଳେ ନଚାଉ ଥାଆନ୍ତି, ଏହି ପଞ୍ଚ ଇନ୍ଦ୍ରିୟ ମନୁଷ୍ୟକୁ ସବୁବେଳେ ନିଜ ନିଜ ଆଡ଼କୁ ସେହିଭଳି ଟାଣିବାରେ ଲାଗିଥାଆନ୍ତି। ଯାହାର ଇନ୍ଦ୍ରିୟମାନେ ବଶୀଭୂତ

ନ ଥା'ନ୍ତି ସେ କିପରି ସୁଖ ପାଇପାରିବ ! ମଣିଷଦେହ ପାଇ ବି ସେ ମୁକ୍ତି ପାଇପାରେ ନାହିଁ। ଏମିତି ତ ଅତି ଭାଗ୍ୟ କରିଥିଲେ ମଣିଷ ଶରୀର ମିଳିଥାଏ। ଭଗବାନ ଏହା ତିଆରି କରି ପ୍ରସନ୍ନ ହୋଇଛନ୍ତି।'' (୩)

ରାଜା ପଚାରିଲେ, ''ଭଗବନ୍ ! ମଣଷ ଶରୀର ସୃଷ୍ଟିକରି ଭଗବାନ୍ ପ୍ରସନ୍ନ କାହିଁକି ହେଲେ ?''

ଅବଧୂତ ମୁନି କହିଲେ, ''ରାଜନ୍ ! ଶ୍ରୁତିରେ ଏପରି ବର୍ଣ୍ଣନା ଅଛି ଯେ ସୃଷ୍ଟିର ଆରମ୍ଭରେ ଭଗବାନ୍ ବିବିଧ ଶରୀର ରଚନା କଲେ। ପ୍ରଥମେ ସେ ବୃକ୍ଷ ରଚନା କଲେ। ଏଥିରୁ ଜୀବ ସୃଷ୍ଟି ହେଲା ନାହିଁ, ନା ଚାଲିପାରିଲା ନା କହିପାରିଲା। ଏହାପରେ ତେଣୁ ସେ ଅଙ୍କା-ବଙ୍କା ସର୍ପ ଆଦିଙ୍କୁ ସୃଷ୍ଟି କଲେ। କିନ୍ତୁ ଏପରି ଯୋନି ବି ଜୀବଙ୍କୁ ଭଲ ଲାଗିବ ନାହିଁ, ଲୋକମାନେ ଦେଖି ଡରିଯିବେ, ସବୁବେଳେ କ୍ରୋଧପୂର୍ଣ୍ଣ ରହିବେ। ତେଣୁ ପଶୁଙ୍କୁ ରଚନା କଲେ। ସେଥିରେ ବି ସନ୍ତୋଷ ହେଲା ନାହିଁ। କେବଳ ଆହାର ଓ ନିଦ୍ରାରେ ସମୟ କଟାଇଦେବେ। ଘୋଡ଼ା, ହାତୀ, ଗଧ, ଓଟ, ଗାଈ, ମଇଁଷି ଏପରି କୌଣସି ଯୋନି ଭଲ ଲାଗିଲା ନାହିଁ। ମଶା, ମାଛି, ମାଛ, ବିଛା, କୁମ୍ଭୀର ସକଳ ପ୍ରକାର ଯୋନିଙ୍କୁ ଆଣିଲେ। ପୁଣି ଭୂତ, ପ୍ରେତ, ପିଶାଚ, ଗୁହ୍ୟକ, ରାକ୍ଷସ, ଗନ୍ଧର୍ବ, ବିଦ୍ୟାଧର, କିନ୍ନର, କିଂପୁରୁଷ ତଥା ଅନ୍ୟ ଦେବଯୋନି ରଚନାକରି ବି ତାଙ୍କୁ ଶାନ୍ତି ମିଳିଲା ନାହିଁ। ଏଥର ମନୁଷ୍ୟଙ୍କ ଆକାର ତିଆରି ହେଲା, ଆଉ ସେଥିରେ ପଞ୍ଚ ଇନ୍ଦ୍ରିୟ, ବୁଦ୍ଧି, ବିବେକ-ବିଚାର ଏ ସବୁ ହୋଇଗଲା। ସମସ୍ତେ କହିବାରେ ଲାଗିଲେ— 'ସୁକୃତଂବତ, ସୁକୃତଂବତ'— ଏହି ଶରୀର ତ ଅତି ସୁନ୍ଦର, ଖୁବ୍ ସୁନ୍ଦର ହୋଇଛି। ଏପରି କହି ନିତ୍ୟଦେବମାନେ ବ୍ରହ୍ମାଙ୍କୁ ପ୍ରଶଂସା କରିବାରେ ଲାଗିଲେ।''

ରାଜା ପଚାରିଲେ, **''ବ୍ରହ୍ମନ୍ ! ମଣିଷ ଦେହରେ ଏପରି କି ବିଶେଷତା ଅଛି ?''**

ଅବଧୂତ ମୁନି କହିଲେ, ''ରାଜନ୍ ! **ଏହାର ବିଶେଷତା ହେଉଛି, ଏହି ଶରୀରରେ ବ୍ରହ୍ମଦର୍ଶନ ସମ୍ଭବ ହୋଇଥାଏ। ମୁକ୍ତିର ସାଧନ ସମ୍ପନ୍ନ ହୋଇପାରେ। ଏଇଥିପାଇଁ ମଣିଷର ଅନ୍ୟନାମ 'ସାଧକ'। ପରମାର୍ଥଙ୍କର ସୁନ୍ଦର ସାଧନା ମନୁଷ୍ୟ ଶରୀରରେ**

---

(୩) ଇନ୍ଦ୍ରିୟେ ଏହାକୁ ଆବୋରି । ଭୁଞ୍ଜନ୍ତି ଜଣେ ଜଣେ କରି ॥
ଶ୍ମଶାନେ ମୃତପିଣ୍ଡ ଯେହ୍ନେ । ଶ୍ୱାନ ଶୃଗାଳଙ୍କ ବଦନେ ॥
ରସ ଲାଳସେ ଜିହ୍ୱା ଧରେ । ଆହାର ଅର୍ଥେ ଭ୍ରମ କରେ ॥
ନିଜ ସ୍ୱଭାବେ ଷଡ଼ରସେ । ଭ୍ରମଇଁ ନାନା ଦେଶେ ଦେଶେ ॥
ଇନ୍ଦ୍ରି ଧରଇ ପୁଣ୍ୟ ବଳେ । ଭ୍ରମଇଁ ମଇଥୁନ ଫଳେ ॥
ଅମୃତ ପ୍ରାୟ ଯୋନି ଦିଶେ । ଏଣୁ ଭ୍ରମଇଁ କାମ ବଶେ ॥
ଶ୍ରବଣ ଧରେ ପୁଣ ପୁଣି । ସ୍ତୁତି ନିନ୍ଦନ ବାକ୍ୟ ଶୁଣି ॥
ନାସିକା ଧରେ ଗନ୍ଧ ଆସେ । ଏଣୁ ଭ୍ରମଇଁ ସୁଖବାସେ ॥
ଚକ୍ଷୁ ଧରଇ ରୂପ ଅର୍ଥେ । ଏଣୁ ଭ୍ରମଇଁ ନାନା ପଥେ ॥

[ଭାଗବତ : ଜଗନ୍ନାଥ ଦାସ : ୧୧ସ୍କ.୧୦ଅ]

ହିଁ କରାଯାଇ ପାରେ। ଅନ୍ୟ କୌଣସି ଶରୀରରେ ଏହା ସମ୍ଭବ ନୁହେଁ। ଏଥିପାଇଁ ହିଁ ମାନବ-ଶରୀର ସକଳ ଶରୀରଠାରୁ ସର୍ବଶ୍ରେଷ୍ଠ ବୋଲି ପରିଗଣିତ।''

ରାଜା କହିଲେ, ''ଭଗବନ୍! ଏହି ମଣିଷ ଶରୀରକୁ ଆପଣ ଏତେ ପ୍ରଶଂସା କାହିଁକି କରୁଛନ୍ତି? ଏହା ତ ଅନିତ୍ୟ, କ୍ଷଣଭଂଗୁର, ନାଶବାନ୍। ଏହା କ୍ଷଣକ ମଧ୍ୟରେ ନଷ୍ଟ ହୋଇଯାଏ। ପାଣି ଫୋଟକା ଭଳି ଏହି ଦେହକୁ ଆପଣ ଏତେ ମହତ୍ତ୍ୱ କାହିଁକି ଦେଉଛନ୍ତି।''

ଅବଧୂତ ମୁନି କହିଲେ, ''ରାଜନ୍! ମୁଁ ଶରୀରକୁ ମହତ୍ତ୍ୱ ଦେଉନାହିଁ। ଏହି ଶରୀର ନିଶ୍ଚୟ ଅନିତ୍ୟ, ତେବେ ବି ଏଥିରେ ସାଧନା ହୁଏ। ପରମ ପୁରୁଷାର୍ଥର ପ୍ରାପ୍ତି ହୁଏ। ଏଥିପାଇଁ ହିଁ ଏହାକୁ ପ୍ରଶଂସା କରୁଛି। ଏହାର ଉପଯୋଗିତାର ଗୁଣକୁ କହୁଛି। ଯେଉଁ ପୁରୁଷ ଅନେକ ଜନ୍ମ ପରେ ଏହି ଦୁର୍ଲଭ ମନୁଷ୍ୟ ତନୁ ଲାଭ କରି ବି ଏହାର ସଦୁପଯୋଗ କରେନାହିଁ, ସେ ହିଁ ମୂର୍ଖ, ବୁଦ୍ଧିହୀନ। ବୁଦ୍ଧିମାନ ପୁରୁଷ ଏପରି କରୁଥିବା ଆବଶ୍ୟକ ଯେ, ଏହି ଶରୀର ଯେ ପର୍ଯ୍ୟନ୍ତ ନାଶ ନ ହୋଇଛି, ଯେ ପର୍ଯ୍ୟନ୍ତ ଏହା ଜର୍ଜର ହୋଇ ମୃତ୍ୟୁର କରାଳ ଗ୍ରାସରେ ପତିତ ନ ହୋଇଛି, ତା' ଭିତରେ ଏହା ମୋକ୍ଷର ସାଧନ କରିପକାଉ। ସୁବର୍ଣ୍ଣ ଭଳି ଏହି ସୁନ୍ଦର ଶରୀର ପାଇ ବିଷୟ ସଂଗ୍ରହରେ ସବୁବେଳେ ଲାଗି ନ ରହୁ। ଆହାର ନିଦ୍ରା ଆଦି ସୁଖ ତ ପ୍ରତ୍ୟେକ ଯୋନି ସମାନ ଭାବରେ ପ୍ରାପ୍ତ ହୋଇଥା'ନ୍ତି। କେବଳ ମୋକ୍ଷ ପ୍ରାପ୍ତି ଏହି ମାନବ ଶରୀରରେ ସମ୍ଭବ ହୋଇଥାଏ। ଏଣୁ, ମଣିଷ ଶରୀର ପାଇ ଏପରି ଅମୂଲ୍ୟ ସୁଯୋଗକୁ ବିଷୟ ସଂଗ୍ରହରେ ବ୍ୟର୍ଥରେ ବ୍ୟତୀତ କରିଦେବା ଅନୁଚିତ।''

ଅବଧୂତ ମୁନି କହୁଥିଲେ, ''ରାଜନ୍! ଏହି ଭଳି ମୁଁ ସବୁ ଗୁରୁଙ୍କଠାରୁ ଶିକ୍ଷା ପ୍ରାପ୍ତ ହୋଇ, ହୃଦୟରେ ବୈରାଗ୍ୟଯୁକ୍ତ ଜ୍ଞାନାଲୋକକୁ ଜଳାଇ, ଭୟବିନା ଅହଙ୍କାର ଶୂନ୍ୟ ହୋଇ ସମସ୍ତ ଭୂମଣ୍ଡଳରେ ସ୍ୱଚ୍ଛନ୍ଦ ବିଚରଣ କରୁଥାଏ। ମୋର ନା ଶୋକ, କି ମୋହ ଅଛି, ନା କୌଣସି କଥାର ଚିନ୍ତା। ଏ ସମସ୍ତ କାୟାର ଖେଳ ବୋଲି ଜାଣି ନା ମୋର ବିସ୍ମୟ ହୁଏ ନା ଶୋକ।''

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ! ରାଜା ଯଦୁଙ୍କୁ ଏତିକି କହି ଅବଧୂତ ଦତ୍ତାତ୍ରେୟ ନୀରବ ହୋଇଗଲେ।''

## ଛପ୍ପୟ

ହରିନେ ନାନା ଯୋନି ରଚୀଂ ପରି ତୋଷ ନ ପାୟୋ।
ସୁଖୀ ଭୟେ ଲଖି ମନୁଜ ମୋକ୍ଷକୋ ଦ୍ୱାର ବତାୟୋ॥
ପାଇ ମନୁଜ କୋ ଜନମ ଜନମକୋ ଅନ୍ତ ନ କୀୟୋ।
ବିଷୟନି ଫସି ମରି ଗୟୋ ଅମୃତ ତଜିକେଂ ବିଷ ପୀୟୋ॥
ସବ ଯୋନିନି ମହଁ ବିଷୟ ସୁଖ, ମିଲୈ କରୈ ତ୍ୟୌ ଶ୍ରମ ଅରେ।
ଛନିକ ଦୁଖଦ ସୁଖ ତଜି ସରସ, ନିତ୍ୟ ସୁଖହିଁ ଭଜି ବାବରେ॥

# ଅବଧୂତ ଗୀତାର ସମାପ୍ତି

ନ ହ୍ୟକସ୍ମାଦ୍ ଗୁରୋର୍ଜ୍ଞାନଂ ସୁସ୍ଥିରଂ ସ୍ୟାଦ୍ ସୁପୁଷ୍କଳମ୍ ।
ବ୍ରହ୍ମୈତଦଦ୍ୱିତୀୟଂ ବୈ ଗୀୟତେ ବହୁଧର୍ଷିଭିଃ ॥ ★

[ଶ୍ରୀଭା.୧୧ସ୍କ.୯ଅ.୩୧ ଶ୍ଳୋକ]

**ଛପ୍ପୟ**

ନହିଁ ସୀମିତ ମନ ଜ୍ଞାନ ଲୈହୁଁ ଜୋ ହୋହି ସବନି ପୈ ।
ସବତେଂ ଲୈ ଉପଦେଶ ଫିରୂଂ ନିଃସଂଗ ଅବନି ପୈ ॥
ବ୍ରହ୍ମ ଏକ ହୀ ମୁନିନି ନିରୂପନ ବହୁ ବିଧି କାୟୋ ।
ଜାତେଂ ଜୋ ମିଲି ଗୟୋ ଜ୍ଞାନ ଉବାଇ ତେଂ ଲୀୟୋ ।
କହେଁ କୃଷ୍ଣ-ଉଦ୍ଧବ ! ସୁନୋ, ୟୋ କହିକେଁ ଅବଧୂତ ମୁନି ।
ପୂଜିତ ହ୍ୱୈଂ ନୃପ ତେଂ ଗୟେ, ଭୟେ ମୁଦିତ ୟଦୁ ଜ୍ଞାନ ସୁନି ॥

ଏହି ସଂସାର ହେଉଛି ଜ୍ଞାନର ଭଣ୍ଡାର । ମଣିଷର ବୁଦ୍ଧି ଯଦି ସୂକ୍ଷ୍ମ ହୋଇଥିବ, ସେଥିରେ ସଦ୍ ଓ ଅସଦ୍‌କୁ ବିବେଚନ କରିବାର କ୍ଷମତା ଥିବ, ତାହାହେଲେ ପୁସ୍ତକ ପଢ଼ିବାର କୌଣସି ଆବଶ୍ୟକ ନାହିଁ । ସଂସାରର ଅଣୁ ପରମାଣୁ ଆମକୁ ଶିକ୍ଷା ଦେଉଥାଏ । ଅପରପକ୍ଷେ, ଯାହାର ବୁଦ୍ଧି ମଳିନ, ବିଷୟରେ ନିମଗ୍ନ ହୋଇ ରହିଛି, ତାକୁ ଯେତେ ଶାସ୍ତ୍ର ପଢ଼ିବାପାଇଁ ଦିଆ ଯାଉ ପଛେ, ଯେଉଁ ମୂର୍ଖକୁ ସେଇ ମୂର୍ଖ ହୋଇ ରହିଥିବ । ଯାହାର ସୀମିତ ଜ୍ଞାନ, ଯିଏ କୂପ ମଣ୍ଡୁକ ଭଳି ହୋଇଥାଏ, ତା'ର ବୁଦ୍ଧି ସଂକୁଚିତ ହୋଇଯାଏ । ସେ ଏକ କ୍ଷୁଦ୍ର ପରିସୀମା ଛଡ଼ା ବାହାର କଥା ଆଦୌ ଚିନ୍ତା କରିପାରେ ନାହିଁ । ସେପରି ଲୋକର ଯଥେଷ୍ଟ, ଆଉ ସୁସ୍ଥିର ଜ୍ଞାନ ହୋଇପାରେ ନାହିଁ । (୧)

ଏହି ସଂସାର ହେଉଛି ମେଲି ପଡ଼ିଥିବା ଶାସ୍ତ୍ର । ଏହାର ପ୍ରତ୍ୟେକ ଘଟଣା ଆମକୁ ଉପଦେଶ ଦେଉଥାଏ । ସଂସାରର ପ୍ରତ୍ୟେକ ପଦାର୍ଥ ପରିବର୍ତ୍ତନଶୀଳ, କ୍ଷଣ

---

★ ଅବଧୂତ ଦତ୍ତାତ୍ରେୟ ରାଜା ଯଦୁଙ୍କୁ କହୁଛନ୍ତି—"ରାଜନ୍ ! ଜଣେ ଗୁରୁଙ୍କଠାରୁ ସୁସ୍ଥିର ଓ ସୁପୁଷ୍କଳ ଜ୍ଞାନ ହୁଏ ନାହିଁ । ବ୍ରହ୍ମ ତ ଏକ ନା ! କିନ୍ତୁ ଋଷିମାନେ ତାଙ୍କ ସମ୍ବନ୍ଧରେ ବିବିଧ ପ୍ରକାର କହିଛନ୍ତି ।"

(୧) ଯେ ସର୍ବଶାସ୍ତ୍ରେ ସୁପଣ୍ଡିତ । ଜାଣଇ ସର୍ବ ଧର୍ମତତ୍ତ୍ୱ ॥
ସେ ଯେବେ ଏତେ ଗୁଣ ଘେନି । ପରମାନନ୍ଦକୁ ନ ଚିହ୍ନି ॥
ସକଳ ଶାସ୍ତ୍ର ବ୍ୟର୍ଥ ତାର । କେବଳ ଶ୍ରମ ମାତ୍ର ସାର ॥

[ଭାଗବତ : ଜଗନ୍ନାଥ ଦାସ, ସ୍କ ୧୧ ଅ.୧୨ଣ]

କ୍ଷଣରେ ବଦଳୁଥାଏ। ଏହାର ଅନିତ୍ୟତାକୁ ଯିଏ ହୃଦୟଙ୍ଗମ କରେ, ସେ ନିତ୍ୟ, ଶୁଦ୍ଧ, ବୁଦ୍ଧ, ସଚ୍ଚିଦାନନ୍ଦଙ୍କୁ ପାଇପାରେ।

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ! ଯେତେବେଳେ ଅବଧୂତ ମୁନି ନିଜର ଚବିଶ ପୃଥ୍ୱୀ ଆଦି ଗୁରୁଙ୍କଠାରୁ ତଥା ପଚିଶତମ ଶରୀରଠାରୁ ଗ୍ରହଣ କରିଥିବା ଶିକ୍ଷା ବର୍ଣ୍ଣନା କଲେ, ସେତେବେଳେ ରାଜା ପଚାରିଲେ, 'ବ୍ରହ୍ମନ୍! ଆପଣ ଏତେ ଗୁରୁ କାହିଁକି କଲେ ? ଜଣେ ଗୁରୁଙ୍କଠାରୁ ଆପଣ ଶିକ୍ଷା-ଦୀକ୍ଷା କାହିଁକି ଗ୍ରହଣ କଲେନାହିଁ ?''

ଅବଧୂତ ମୁନି କହିଲେ, ''ରାଜନ୍! ଶିକ୍ଷା ଆଉ ଦୀକ୍ଷା ଦୁଇଟି ପୃଥକ୍ କଥା। ଦୀକ୍ଷା କେବଳ ଜଣେ ଗୁରୁଙ୍କଠାରୁ ଗ୍ରହଣ କରାଯାଏ। କିନ୍ତୁ ଶିକ୍ଷାଗୁରୁ ଅନେକ ହୋଇଥା'ନ୍ତି। ଜ୍ଞାନ ତ ଅସୀମ, ସମସ୍ତଙ୍କଠାରୁ ତାହା ନିଆଯାଇ ହୁଏ। ଗୁରୁଙ୍କଠାରୁ ଯେଉଁ ଜ୍ଞାନ ମିଳେ ତାକୁ ନିଜେ ନିଜେ ଚିନ୍ତାକରିବା, ମନନ କରିବା ଓ ବ୍ୟବହାରରେ ଆଣିବା ଆବଶ୍ୟକ। ଏ କାନରେ ପୂରାଇ ସେ କାନରେ ବାହାର କରିଦେବା ଭଳି ତାହା ନୁହେଁ। ବସ୍ତୁତଃ ଏକା କଥା, ଯିଏ ଯେଉଁଭଳି ବୁଝାଇ ପାରିଲା। ସମସ୍ତେ ଜାଣନ୍ତି, ସମସ୍ତେ ମାନନ୍ତି ଯେ, ଈଶ୍ୱର ହେଉଛନ୍ତି ଏକ ଓ ଅଦ୍ୱୟ। କିନ୍ତୁ ମୁନିମାନେ ସେଇ ଏକଙ୍କୁ ଅନେକ ପ୍ରକାର ଭାବରେ ବୁଝାଇଛନ୍ତି। ନାନା ପ୍ରକାର ବୁଝାଇବାପରେ ପୁଣି ସେଇ ମୂଳ ଏକଙ୍କ ପାଖରେ ପହଞ୍ଚି ଯାଇଛନ୍ତି। କିଏ ତାଙ୍କୁ ଅଦ୍ୱୈତ କୁହେ ତ, ଆଉ କେହି କହେ ଯେ ସେ ଅଦ୍ୱୈତ ସତ୍ୟ, ମାତ୍ର ବିଶିଷ୍ଟ ସହିତ ଅଦ୍ୱୈତ। କେହି ଶୁଦ୍ଧ-ଅଦ୍ୱୈତ କହେ ତ, ଆଉ କେହି କହେ ଯେ ସେ ଦ୍ୱୈତ ଓ ଅଦ୍ୱୈତ ଉଭୟ। ଆଉ କିଏ ତାଙ୍କୁ କହେ ଭେଦ-ଅଭେଦ ଅଚିନ୍ତ୍ୟ ବୋଲି। ତାଙ୍କୁ ଦ୍ୱୈତ ବୋଲି କରିପାରନ୍ତି ନାହିଁ, କି ଅଦ୍ୱୈତ ବୋଲି। କେହି କହେ ନା, ନା, ରେ ଦ୍ୱୈତ। କେହି ଶୂନ୍ୟ କହେ ତ, କେହି ନାହିଁ ବୋଲି କହେ। ଆଉ କିଏ କହେ, ହୋଇଥିବେ, ଥାଆନ୍ତୁ, ସେଥିରେ ଆମର କିଛି ଆବଶ୍ୟକତା ନାହିଁ। ସାରକଥା ହେଉଛି, ଥାଆନ୍ତୁ ବା ନ ଥାଆନ୍ତୁ, ତାଙ୍କ ବିଷୟରେ ତ କହନ୍ତି ନା! ସେ ହିଁ ତ ଆଧାର ବିନ୍ଦୁ। ସେହିଭଳି ସେଇ ଏକ ଜ୍ଞାନକୁ ଭିନ୍ନ ଭିନ୍ନ ଘଟଣାରୁ ଶିକ୍ଷା କରିବା କଥା। ମୁଁ ପୃଥିବୀ, ବାୟୁ, ଆକାଶ, ଜଳ, ଅଗ୍ନି, ଚନ୍ଦ୍ର, ସୂର୍ଯ୍ୟ, କପୋତ, ଅଜଗର, ସମୁଦ୍ର, ପତଙ୍ଗ, ମହୁମାଛି, ହାତୀ, ମଧୁକରୀ, ମୃଗ, ମାଛ, ବେଶ୍ୟା, କୁରର ପକ୍ଷୀ, ବାଳକ, କୁମାରୀ, ବାଣ ତିଆରି କଲାବାଲା, ସର୍ପ, କୀଟ, ଭୃଙ୍ଗୀକୀଟ ଆଉ ଦେହ— ଏ ସମସ୍ତଙ୍କ ଠାରୁ ଯେଉଁ ଶିକ୍ଷା ଆହରଣ କରିଛି ସେ ସମସ୍ତ ପ୍ରାୟତଃ ଏକ। ବସ୍ତୁତଃ ପୁନରାବୃତ୍ତି କରାହୋଇଛି। ଅନେକଙ୍କଠାରୁ କାହିଁକି, ପ୍ରାୟ ସମସ୍ତଙ୍କଠାରୁ ଏହି ଶିକ୍ଷା ଗ୍ରହଣ କରିଛି ଯେ, **ଏ ସଂସାର ହେଉଛି ଅନିତ୍ୟ, ବିଷୟର ସୁଖ କ୍ଷଣିକ; ଏବଂ ପରିଣାମତଃ ଦୁଃଖଦ। ଏଣୁ ଭୂମା-ପୁରୁଷଙ୍କର ଶରଣ ଗ୍ରହଣ କରିବା ଉଚିତ। ଅନବରତ, ସବୁସମୟରେ ବ୍ରହ୍ମଙ୍କୁ ଚିନ୍ତନ କରୁଥିବା ଦରକାର।** ଏଇ ଗୋଟିଏ ଜ୍ଞାନର ଶିକ୍ଷା ମୁଁ ସମସ୍ତଙ୍କଠାରୁ ଗ୍ରହଣ କରିଛି। ମିଠାଇବାଲା ପିଲାଙ୍କୁ ଆକର୍ଷଣ କରିବା ପାଇଁ ଯେପରି ଭିନ୍ନ ଭିନ୍ନ ପ୍ରକାରର, ଅନେକ ପ୍ରକାରର ଯଥା ହାତୀ, ଘୋଡ଼ା, ମୟୂର ଆଦି ଛାଞ୍ଚରେ ମିଠାଇ ତିଆରି କରିଥାଏ, ନାନା ରଙ୍ଗରେ ରଙ୍ଗେଇ ଥାଏ, ସେ ସମସ୍ତଠାରେ କେବଳ ସେଇ ଏକ ଚିନି ହିଁ ଥାଏ। ଆକର୍ଷଣ, ଆକୃଷ୍ଟ ଓ ମନ ଭୁଲାଇବା ପାଇଁ ସେ ଭିନ୍ନ ଭିନ୍ନ ରଙ୍ଗର ଓ ଆକାରର ମିଠେଇ କରିଥାଏ।

ଏଣୁ ହେ ରାଜନ୍! ଆପଣ ବି ସଂସାରର ପ୍ରତ୍ୟେକ ଘଟଣାରୁ ଶିକ୍ଷା ଗ୍ରହଣ କରି ମୋ ଭଳି ନିଃଶଙ୍କ ଓ ନିର୍ଭୟ ହୋଇ ବିଚରଣ କରନ୍ତୁ।''

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ! ଏହି ଅବଧୂତ-ଗୀତାର ଉପଦେଶ ଭଗବାନ କୃଷ୍ଣଚନ୍ଦ୍ର ଯଦୁକୁଳ ସଂହାର କରିବା ପୂର୍ବରୁ ଦ୍ୱାରକାରେ ଉଦ୍ଧବଙ୍କୁ କହିଥିଲେ। ଅବଧୂତ-ଗୀତା କହିସାରିବାର ପରେ ପରେ ସେ ଉଦ୍ଧବଙ୍କୁ କହିଲେ, 'ହେ ଉଦ୍ଧବ! ଏହି ଭଳି ମୁନି ଦତ୍ତାତ୍ରେୟ ଆମର ପୂର୍ବଜ ମହାରାଜ ଯଦୁଙ୍କୁ ଜ୍ଞାନର ଉପଦେଶ ପ୍ରଦାନ କରିଥିଲେ।''

ଏପରି କଥା ଶୁଣି ଉଦ୍ଧବ ପଚାରିଲେ, ''ଭଗବନ୍! ଏହାପରେ ଆମର ପୂର୍ବଜ ମହାରାଜ ଯଦୁ ଦତ୍ତାତ୍ରେୟଙ୍କୁ କ'ଣ ପଚାରିଲେ ?''

ଭଗବାନ କହିଲେ, ''ଭାଇ ଉଦ୍ଧବ! ଏବେ ଆଉ ଅଧିକ ପଚାରିବାକୁ କ'ଣ ଅଛି ଯେ ପଚାରିବେ? ସବୁ କଥା ତ ହୋଇଗଲା। ମହାରାଜ ଯଦୁଙ୍କର ସକଳ ସନ୍ଦେହ ଦୂର ହୋଇଗଲା। ସେ ବିଧିପୂର୍ବକ ଅବଧୂତ ମୁନି ଦତ୍ତାତ୍ରେୟଙ୍କୁ ପୂଜା କଲେ। ମହାରାଜଙ୍କଠାରୁ ସବିଧି ପୂଜିତ ହୋଇ କଠିନ ବ୍ରତଧାରୀ ଅବଧୂତ ଦତ୍ତାତ୍ରେୟ ପ୍ରସନ୍ନ ହେଲେ। ଏବଂ ମେଲାଣି ଗ୍ରହଣକରି ସ୍ୱ-ଇଚ୍ଛାରେ ଚାଲିଗଲେ। ଆମର ପୂର୍ବପୁରୁଷଙ୍କର ପୂର୍ବର ଲୋକ ହେଉଛନ୍ତି ମହାରାଜ ଯଦୁ। ଦତ୍ତାତ୍ରେୟଙ୍କ ଉପଦେଶ ତାଙ୍କ ଉପରେ ଖୁବ୍ ପ୍ରଭାବ ପକାଇଲା। ସେ ରାଜ୍ୟ-ଶାସନ ଛାଡ଼ି ନିଃସଙ୍ଗ ଓ ସମଦର୍ଶୀ ଭାବକୁ ଆବୋରି, ଘୋରବନରେ ତପ କରିବାରେ ଲାଗିଲେ।''(୨)

ଭଗବାନ କହୁଛନ୍ତି, ''ହେ ଉଦ୍ଧବ! ଏହି ସଂସାର ହେଉଛି ମିଥ୍ୟା। ଏଥିରେ ସତ୍ୟର ଏତେ ଟିକିଏ ବି ସତ୍ତା ନାହିଁ। ସତ୍ୟସ୍ୱରୂପ ଯଦି କେହି ଥାଏ ତେବେ ସେ ହେଉଛି ମୁଁ। ମୋତେ ହିଁ ଭଜନ କର। ମୋତେ ଭାବ, ଚିନ୍ତାକର, ମନନ କର ଆଉ ପ୍ରପଞ୍ଚକୁ ସର୍ବଥା ଦୂର କରିପକାଅ।''

ଭଗବାନଙ୍କଠାରୁ ଏପରି ସର୍ବୋତ୍ତମ କଥା ଶୁଣି ଉଦ୍ଧବ ତତ୍କ୍ଷଣାତ୍ କହିଲେ, ''ପ୍ରଭୁ! ଆପଣ ଯାହା କହିଲେ ପୂରାପୂରି ସତ୍ୟ। ତେବେ ବି ଜାଗ୍ରତ ଅବସ୍ଥାରେ ଏବଂ ସ୍ୱପ୍ନରେ ମୁଁ ସବୁବେଳେ ଦେଖୁଥିବା ଏହି ସଂସାର ମିଥ୍ୟା ଭଳି ତ ସେତେ

---

(୨) ଭଗବାନ ଉବାଚ :—

ଏମନ୍ତ କହି ଅବଧୂତ । ଶାନ୍ତ ଗଭୀର ଗୁଣଯୁତ ।।
ଶୁଣି ସାନନ୍ଦ ଯଦୁରାଜା । ତାର ଚରଣେ କଲା ପୂଜା ।।
ରାଜାକୁ କହି ସାବଧାନେ । ବ୍ରାହ୍ମଣ ଗଲା ଅନ୍ତର୍ଦ୍ଧାନେ ।।
ବିଚାରି ତାହାର ବଚନେ । ରାଜା ପଶିଲା ଘୋରବନେ।।
ସକଳ ସଙ୍ଗ ଦୂରେ ତେଜି । ଧ୍ୟାନେ ଗୋବିନ୍ଦପାଦ ଭଜି ।।
ଯୋଗେ ବିନାଶି କଳେବର । ଲଭିଲା କୃଷ୍ଣର ପୟର ।।

[ଭାଗବତ: ଜଗନ୍ନାଥ ଦାସ, ସ୍କ.୧୧. ଅ.୧୦ମ]

ଦେଖାଯାଉନାହିଁ। ଏହା ମିଥ୍ୟ କିପରି ଦେଖାଯିବ ଓ ସର୍ବତ୍ର ଆପଣଙ୍କୁ କିପରି ଦେଖିପାରିବି—ଏପରି କିଛି ଉପାୟ କୃପାକରି ମୋତେ ବତାଇବା ହୁଅନ୍ତୁ।"

ଭଗବାନ କହିଲେ, "ଅତି ଉତ୍ତମ କଥା ଉଦ୍ଧବ! ତୁମକୁ ତା' ହେଲେ ସଂସାରର ମିଥ୍ୟାତତ୍ତ୍ୱ କଥା କହୁଛି, ଶ୍ରଦ୍ଧାର ସହିତ ଶ୍ରବଣ କର।"

ମହାପ୍ରାଜ୍ଞ ସୂତ କହୁଛନ୍ତି, "ହେ ମୁନିଗଣ! ଏପରି କହି ଭଗବାନ ସଂସାରର ମିଥ୍ୟାତ୍ୱ ବିସ୍ତାର ପୂର୍ବକ ଉଦ୍ଧବଙ୍କୁ ବୁଝାଇଲେ। ଆମର ଏହି 'ଭାଗବତ କଥା' ପ୍ରସଙ୍ଗରେ ଯଦି ଏହି ପ୍ରସଙ୍ଗକୁ ମୁଁ ଛାଡ଼ିଦିଏ, ତେବେ କଥାର ପ୍ରବାହ ରୁଦ୍ଧ ହୋଇଯିବ। ତେଣୁ କଥା ପ୍ରସଙ୍ଗରେ ଧାରାବାହିକତା ରକ୍ଷା କରିବାକୁ ଯାଇ ମୁଁ ଅତି ସଂକ୍ଷେପରେ ଏହାର ସୂଚନାମାତ୍ର ଦେଉଛି, ଆଉ କେବେବେଳେ, ଅନ୍ୟତ୍ର ଏହାର ବିସ୍ତାର ପୂର୍ବକ ଆଲୋଚନା କରିବା।"

**ଛପ୍ପୟ**

ଉଦ୍ଧବ! ନିଜ ନିଜ ଧରମ ପାଳି ପାବୈ ସୁଖ ପ୍ରାନୀ!
ଆଶ୍ରମ, କୁଲ ଅରୁ ବରନ ଧରମକୁଁ ତ୍ୟାଗହିଁ ଜ୍ଞାନୀ॥
ଭକ୍ତ, ଶୌଚ ସଂତୋଷ ଆଦି ନିୟମନିକୁଁ ପାଳହିଁ॥
ଗୁରୁକୁଁ ପୂଜହିଁ ସଦା ସାଧନା ସତ ସବ ସାଧହିଁ॥
ହୈ ମିଥ୍ୟା ସଂସାର ସବ, ସତ୍ୟ ସମୁଝି ନର ଦୁଃଖ ସହୈ।
ମୋକୁଁ କାଲ, ସ୍ୱଭାବ ସବ, ବେଦ, ଜୀବ, ଧରମହୁ କହୈ॥



# ସାର ସିଦ୍ଧାନ୍ତ

**ଯସ୍ୟାଂ ନ ମେ ପାବନମଙ୍ଗ କର୍ମ**
**ସ୍ଥିତ୍ୟୁଦ୍‌ଭବପ୍ରାଣନିରୋଧମସ୍ୟ।**
**ଲୀଳାବତାରେପ୍‌ସିତଜନ୍ମ ବା ସ୍ୟାଦ୍**
**ବନ୍ଧ୍ୟାଂ ଗିରଂ ତାଂ ବିଭୃୟାନ୍ନ ଧୀରଃ॥** ★

[ଶ୍ରୀ ଭା. ୧୧ ସ୍କ. ୧୧ ଅ. ୨୦ ଶ୍ଲୋକ]

 ଭଗବାନ ବାସୁଦେବ କୃଷ୍ଣ ଉଦ୍ଧବଙ୍କୁ କହୁଛନ୍ତି, "ହେ ଅଙ୍ଗ! ଯେଉଁ ବାଣୀରେ ଏହି ସଂସାରର ଉତ୍ପତ୍ତି, ସ୍ଥିତି, ଗତି ତଥା ପ୍ରଳୟରୂପ ମୋର ପରମ ପବିତ୍ର କର୍ମସମୂହର, ତଥା ଲୀଳା-ଅବତାରରେ ମୋର ନିଜ ଇଚ୍ଛାରେ ନିଆଯାଇଥିବା ମୋର ଜନ୍ମର ବର୍ଣ୍ଣନା ନ ଥାଏ, ସେହି ବନ୍ଧ୍ୟା ବାଣୀକୁ ବୀର, ଧୀର ପୁରୁଷ କେବେବେଳେ ହେଲେ ଧାରଣ ପୋଷଣ ନ କରୁଥିବା ଉଚିତ।"

## ଛପ୍‌ପୟ

ଉଦ୍ଧବ ବୋଲେ ବନ୍ଧ ମୁକ୍ତ ଅରୁ ଭକ୍ତନି ଲକ୍ଷନ।
କହେଁ ପ୍ରଭୋ! ସରବେଶ ସୁନତ ହରି ବୋଲେ ତଦ୍‌ଛିନ॥
ଗୁନତେ ହୀ ହୈ ବନ୍ଧ ମୋକ୍ଷ ମାୟା ମୂଲକ ଗୁନ।
ବିଦ୍ୟାତେଂ ହୈ ମୋକ୍ଷ ଅବିଦ୍ୟା ତେଂ ଭଗବନ୍ଧନ॥
ଜୀବ ଈଶ ପକ୍ଷୀ ସଖା, ତନୁ ତରୁ ପୈ ବୈଠେ ଉଭୟ।
ଫଲ ଖାବେଂ ସୋ ଭୟ ଲହୈ, ନିରାହାର ନିତ ହୀ ଅଭୟ॥

ସମସ୍ତ ବେଦ ଆଉ ଶାସ୍ତ୍ରର ପୁଙ୍ଖାନୁପୁଙ୍ଖ ଆଲୋଚନା କେବଳ ଗୋଟିଏ ମାତ୍ର ତଥ୍ୟ କହିଥାଏ। ସଂସାର ଚିନ୍ତନରେ ସଂସାର ପ୍ରୀତି ହୁଏ। ବ୍ରହ୍ମ, ପରମାତ୍ମା, ଭଗବାନ ତଥା ହରିଙ୍କ ଚିନ୍ତନରେ ତାଙ୍କ ପ୍ରତି ପ୍ରୀତି ହୋଇଥାଏ। ଯିଏ ଯାହାକୁ ଚିନ୍ତନ କରେ ସେ ତଦରୂପ ହିଁ ହୋଇଥାଏ। ଏହା ଜାଣି ଅସଦ୍, ନାଶବାନ ସଂସାରର ଚିନ୍ତନ ତ୍ୟାଗକରି ସଚ୍ଚିଦାନନ୍ଦ ସ୍ୱରୂପ ସର୍ବେଶ୍ୱରଙ୍କୁ ସର୍ବଦା ଚିନ୍ତନ କରିବା ଉଚିତ।

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ! ଭଗବାନ ଯେତେବେଳେ ଉଦ୍ଧବଙ୍କୁ ଅବଧୂତ ଗୀତା ଶୁଣାଇ ସାରିଲେ, ଉଦ୍ଧବ ସେତେବେଳେ ପଚାରିଲେ, 'ପ୍ରଭୁ! ସଂସାରରେ ମଣିଷର କର୍ତ୍ତବ୍ୟ କ'ଣ ?''

ଭଗବାନ କହିଲେ, ''ନିଜ ନିଜର ବର୍ଣ୍ଣ, ଆଶ୍ରମ ତଥା କୁଳାଚାରକୁ ନିଷ୍କାମ ଭାବରେ ପାଳନ, ଆଚରଣ କରିବା ହେଉଛି ମଣିଷର କର୍ତ୍ତବ୍ୟ।''

ଏହା ଶୁଣି ଉଦ୍ଧବ କହିଲେ, ''ସେପରି କଲେ କ'ଣ ହେବ ?''

ଭଗବାନ କହିଲେ, ''ନିଷ୍କାମ ଭାବରେ ସ୍ୱଧର୍ମ ପାଳନ କଲେ ଆତ୍ମ-ଶୁଦ୍ଧି ହୁଏ, ଅନ୍ତଃକରଣ ପବିତ୍ର ହୁଏ। ପବିତ୍ର ଅନ୍ତଃକରଣରେ ହିଁ ବ୍ରହ୍ମ-ସାକ୍ଷାତ୍‌କାର ହୋଇପାରେ। ଯେତେବେଳେ ପୂର୍ଣ୍ଣଜ୍ଞାନ ହୋଇଯିବ, ଏହାପରେ, ବିଧି ନିଷେଧକୁ ବିଶେଷ ଆଦର କରିବା ଦରକାର ନାହିଁ।''

ଉଦ୍ଧବ କହିଲେ, ''ପ୍ରଭୁ! ଭକ୍ତର ବି କର୍ତ୍ତବ୍ୟ ପ୍ରସଙ୍ଗରେ କୁହନ୍ତୁ।'

ଭଗବାନ କହିଲେ, ''ଭକ୍ତ ଅହିଂସା, ସତ୍ୟ ଆଦି ଯମକୁ, ଶୌଚ ସନ୍ତୋଷ ଆଦି ନିୟମକୁ ଯଥାଶକ୍ତି ସବୁବେଳେ ପାଳନ କରୁଥିବା ଆବଶ୍ୟକ। ଗୁରୁଙ୍କଠାରେ ଈଶ୍ୱର ବୁଦ୍ଧି ସୁଦୃଢ଼ ଆରୋପିତ କରି ରଖିଥିବା ଆବଶ୍ୟକ, ପରନିନ୍ଦାରୁ ସର୍ବଦା ଦୂରେଇ ରହୁଥିବା ଆବଶ୍ୟକ, ଘର ଦ୍ୱାର କୁଟୁମ୍ବ ପରିବାର ପ୍ରତି ମମତା ନ ରଖିଥିବା ଆବଶ୍ୟକ। ଶରୀର ଠାରୁ ପୃଥକ୍ ତା'ର ସାକ୍ଷୀ ଆତ୍ମାକୁ ଅନୁଭବ କରୁଥିବା ଆବଶ୍ୟକ।

ଉଦ୍ଧବ ପଚାରିଲେ, ''ଶରୀରଠାରୁ ଆତ୍ମା ପୃଥକ୍ କିପରି ?''

ଭଗବାନ କହିଲେ, ''ଇନ୍ଧନରେ ଅଗ୍ନି ପ୍ରବେଶ କରିବାକ୍ଷଣି ଜଳୁଥିବା କାଠକୁ ସମସ୍ତେ ଅଗ୍ନିବୋଲି କୁହନ୍ତି। ବାସ୍ତବରେ ଯାହା ଜଳୁଛି, ଦହକୁଛି ତାହା ଅଗ୍ନି, ଇନ୍ଧନ କିନ୍ତୁ ଅଗ୍ନି ନୁହେଁ। ଇନ୍ଧନକୁ ଜଳାଇ ଅଗ୍ନି ତା'ର ସମଷ୍ଟିରେ ମିଶିଯାଉଛି। ଅଗ୍ନି

ଲିଭି ଯାଇଛି ବୋଲି ଲୋକମାନେ କୁହନ୍ତି। ଏହାର ଅର୍ଥ ଇନ୍ଧନରୁ, କାଠରୁ ଅଗ୍ନି ପୃଥକ୍ ହୋଇଯାଇଛି। ଠିକ୍ ଏହିଭଳି ସ୍ୱୟଂପ୍ରକାଶ ଆତ୍ମା ସ୍ଥୂଳ ସୂକ୍ଷ୍ମ କାରଣରେ ତିନି ଶରୀରରୁ ଅତ୍ୟନ୍ତ ଭିନ୍ନ ଭାବରେ ଥାଏ। ଏହି ରହସ୍ୟକୁ ସଦ୍‌ଗୁରୁଙ୍କଠାରୁ ବୁଝିବା ଉଚିତ। ଆତ୍ମା ପ୍ରସଙ୍ଗରେ ଭିନ୍ନ ଭିନ୍ନ ମୁନି ଭିନ୍ନ ଭିନ୍ନ ମତ ପ୍ରକାଶ କରନ୍ତି। ପ୍ରତ୍ୟେକେ, ସେଇ ଏକ ଆତ୍ମାର ଭିନ୍ନ ଭିନ୍ନ ପ୍ରକ୍ରିୟାରୁ ନିରୂପଣ କରିଛନ୍ତି। **କେହି କାଳକୁ ସତ୍ୟ ବୋଲି କୁହନ୍ତି, କେହି ଜୀବକୁ; କେହି ସ୍ୱଭାବବାଦୀ ତ ଅନ୍ୟ କେହି ଧର୍ମ ଆଉ ବେଦକୁ ନିଃଶ୍ରେୟର କାରଣ ବୋଲି କହିଥାନ୍ତି। କିନ୍ତୁ, ଏ ସମସ୍ତ ହେଉଛି, ମୋର ହିଁ ନାମ।** ଯେ ପର୍ଯ୍ୟନ୍ତ ଗୁଣର ବିଷମତା ଥିବ ସେ ପର୍ଯ୍ୟନ୍ତ ନାନାତ୍ୱ ଥିବ। ଯେ ପର୍ଯ୍ୟନ୍ତ ନାନାତ୍ୱ ଥିବ ସେ ପର୍ଯ୍ୟନ୍ତ ଭୟ, ପରାଧୀନତା ଥିବ। ତେଣୁ ତିନିଗୁଣରୁ ଊର୍ଦ୍ଧ୍ୱକୁ ଉଠି ତ୍ରିଗୁଣାତୀତ ହୋଇଯିବା ଆବଶ୍ୟକ। ଯେତେବେଳେ ସକଳ ଶୋକ ମୋହ ଦୂର ହୋଇଯିବ, ସେତେବେଳେ ମୋ ବିଷୟରେ ଯଥାର୍ଥ ଜ୍ଞାନ ହୋଇଯିବ।'' (୧)

ଉଦ୍ଧବ ପଚାରିଲେ, ''ଭଗବନ୍! ପ୍ରାଣୀ ପୁଣ୍ୟ-ପାପ ରୂପକ ଯେଉଁ ସବୁ କର୍ମ କରେ, ତଥା ସୁଖ-ଦୁଃଖ ରୂପକ ଯେଉଁ ଫଳ ଭୋଗକରେ, ସେଥିରୁ କିଏ କିପରି ରକ୍ଷା ପାଇପାରିବ? କାରଣ, କର୍ମ ନ କରି କେହି ତ ରହିପାରିବେ ନାହିଁ। କର୍ମ, ଶୁଭ ହେଉ ବା ଅଶୁଭ ହେଉ, ଏହାର ଫଳ ଅବଶ୍ୟ ଭୋଗ କରିବାକୁ ହେବ। ଜୀବ ଗୁଣ ଦ୍ୱାରା ବନ୍ଧ, ତେଣୁ ବନ୍ଧନରେ ପଡ଼ିବାକୁ ସେ ବାଧ। ଯଦି ସେ ଗୁଣ ଠାରୁ ପୃଥକ୍, ତେବେ ସେ ବନ୍ଧା ହେବାକୁ ଯାଉଛି କାହିଁକି? ପୁଣି ଶାସ୍ତ୍ରରେ ମୋକ୍ଷର ଯେଉଁ ଉପାୟ ବର୍ଣ୍ଣିତ ହୋଇଛି, ସେ ସବୁ ବ୍ୟର୍ଥ। କାରଣ ଯେତେବେଳେ ବନ୍ଧନ ବୋଲି କିଛି ନାହିଁ, ସେପରି ସ୍ଥଳରେ ମୁକ୍ତି ନିମନ୍ତେ ପ୍ରଯତ୍ନ କରିବା ହିଁ ବ୍ୟର୍ଥ ବୋଲି ବୁଝିବାକୁ ହେବ।''

ଉଦ୍ଧବଙ୍କଠାରୁ ଏପରି କଥା ଶୁଣି ଭଗବାନ ହସିଲେ, ଆଉ କହିଲେ, ''ହେ ଉଦ୍ଧବ! ସମସ୍ତଙ୍କର ଆତ୍ମା ହେଉଛି ମୁଁ। ମୋର ବନ୍ଧନ ଇ ନାହିଁ। ବନ୍ଧନ ନ ଥିବାରୁ ମୋକ୍ଷର ପ୍ରଶ୍ନ ଇ ଉଠେ ନାହିଁ। **କେବଳ ଗୁଣ ସଂସର୍ଗରେ ହିଁ ଆତ୍ମାକୁ ବଦ୍ଧ ବା ମୁକ୍ତି କୁହାଯାଏ। ବାସ୍ତବରେ ନା ବନ୍ଧନ ଅଛି ନା ମୁକ୍ତ।** ଗୁଣ ହେଉଛି ମାୟାମୂଳକ। ସଂସାର ପ୍ରତୀତି, ସଂସାରବୋଧ ସ୍ୱପ୍ନଭଳି। ଯେପରି ସ୍ୱପ୍ନରେ ଯାହା ଦେଖାଯାଏ ତାହା ବାସ୍ତବରେ ଅସତ୍, କିନ୍ତୁ ଯେ ପର୍ଯ୍ୟନ୍ତ ସ୍ୱପ୍ନ ଥିବ ସେ ପର୍ଯ୍ୟନ୍ତ ତାହା ସତ୍ୟଭଳି ଜଣାଯାଇ ସ୍ୱପ୍ନରେ ହିଁ ସୁଖ-ଦୁଃଖ ହେଉଥିବ, ଜାଗ୍ରତ ହୋଇ ଉଠିବା ପରେ ନା ସେଇ ପଦାର୍ଥ ଦେଖାଯାଏ, ନା ସେଥିରୁ ଉତ୍ପନ୍ନ ହୋଇଥିବା ସୁଖ-ଦୁଃଖ।

---

(୧) ଆତ୍ମାକୁ ଦେଖୁଥିବ ଭିନ୍ନ । କାଷ୍ଠେ ଯେସନେ ହୁତାସନ ।।
ଏ ରୂପେ ଆତ୍ମା ନିର୍ବିକାର । ଏ ଦେହ ଗୁଣରୁ ବାହାର ।।
ଦେହର ମଧ୍ୟେ ଯେଣୁଥାଇ । ତା ନାମ ଗୁଣକୁ ଭଜଇ ।।
କାଷ୍ଠ ସଂଯୋଗେ ଅଗ୍ନି ଯେହ୍ନେ। କାଷ୍ଠର ଆକାରକୁ ଘେନେ ।।
[ଭାଗବତ :ଜଗନ୍ନାଥ ଦାସ, ୧୧ସ୍କ, ୧୧ଶ ଅ.]

ସ୍ୱପ୍ନାବସ୍ଥାରୁ ଉଠିଥିବା ଲୋକଭଳି ବିଦ୍ୱାନ୍ ପୁରୁଷ ଦେହଧରି ରହିଥିଲେ ବି ଦେହାଭିମାନ ଶୂନ୍ୟ ହୋଇଥିବା ହେତୁ, ଦେହଠାରୁ ନିଜକୁ ପୃଥକ୍ ଅନୁଭବ କରେ। ଅଜ୍ଞାନୀ ପୁରୁଷ ସ୍ୱପ୍ନରେ ଶଯ୍ୟା ଉପରେ ପଡ଼ିରହିଥିବା ବ୍ୟକ୍ତି ଭଳି, ସଂସାରୀ ପଦାର୍ଥରେ ନିଜର କୌଣସି ପ୍ରକାର ସମ୍ବନ୍ଧ ନ ଥିଲେ ସୁଦ୍ଧା, ସ୍ୱପ୍ନରେ ଦେଖିଥିବା ବିବିଧ ମିଥ୍ୟା ପଦାର୍ଥ ଦ୍ୱାରା ନାନା ଅସୁବିଧା ଅନୁଭବ କରେ। ଏଇଥିପାଇଁ ବିଦ୍ୱାନ୍ ଜ୍ଞାନୀ ଖାଏ, ପିଏ, ଉଠେ, ବସେ, ହସେ, ଖେଳେ, ଲେଖେ, ପଢ଼େ, ଲୋକଙ୍କୁ ନମସ୍କାର କରେ, ସକଳ ପ୍ରକାର ବ୍ୟବହାର କରେ, ତେବେ ବି ନିଜକୁ ଏ ସମସ୍ତରେ ଲିପ୍ତ ଥିବା ଭଳି ମନେକରେ ନାହିଁ। କର୍ତ୍ତାପଣର ତା'ଠାରେ ଅଭିମାନ ହୁଏ ନାହିଁ। ଏ ସମସ୍ତ କାମ ଅଜ୍ଞାନୀ ବି କରେ, କିନ୍ତୁ ଅହଙ୍କାର ହେତୁ ସେ ତହିଁରେ ଫସିଯାଏ। **ଏହି ଶରୀର ଦୈବାଧୀନ। ଦୈବାଧୀନ ଏହି ଶରୀର ଗୁଣସମୂହର ପ୍ରେରଣାରେ ଯେଉଁ ସବୁ କର୍ମ ସ୍ୱତଃ କରୁଛି ବା ହୋଇଯାଉଛି, ଅଜ୍ଞାନୀ ପୁରୁଷ ତହିଁରେ କର୍ତ୍ତାପଣ ଆରୋପିତ କରି ଅଭିମାନୀ ହେଉଛି, ଫଳରେ ବନ୍ଧନରେ ପଡ଼ିଯାଉଛି।** ପାହାଡ଼ ଉପରେ କେତେନା କେତେ ଆମ୍ବଗଛ ସ୍ୱତଃ ଉଠୁଛି। ତହିଁରେ ସ୍ୱତଃ ଫଳ ଧରୁଛି। ଯିଏମାନେ ସିଏ ତାହା ଖାଉଛି। ମାଙ୍କଡ଼, ପକ୍ଷୀ, ଚଢ଼େଇ, ବାଦୁଡ଼ି, ଯାହାର ଇଚ୍ଛା ହେଉଛି ସେ ଖାଉଛି। ଆମେ ଯାଉଛେ, ଆମେ ବି ପାଉଛେ, କିଛି କଥା ନାହିଁ। ଟାକୁଆ ଆମ ଘରେ, ବଗିଚାରେ ପଡ଼ି ଗଛ ହୋଇଗଲେ, ଆମେ ତାକୁ ଆମେ ଲଗାଇ ଥିବା ଗଛ ବୋଲି କହୁ ଓ ତହିଁରେ ଅଭିମାନ ରୋପିତ କରିଦେଉ। କେହି ଯଦି କଞ୍ଚା ଆମ୍ବ ତୋଳେ ତେବେ ଆମେ ଦୁଃଖ କରୁ। ରାତିରେ ଉଜାଗର ରହି ଆମେ ମାଙ୍କଡ଼ ଓ ବାଦୁଡ଼ିଙ୍କୁ ଘଉଡ଼ାଉ। ଅନ୍ୟ କେହି ଆମ୍ବ ତୋଳି ନେଲେ ଦୁଃଖ କରୁ। ପାଚିଲା ଆମ୍ବ ବିକି ପଇସା ପାଇଲେ ଖୁସୀ ହେଉ। ଅନ୍ୟର ପିଲା ଖାଇଲେ ଆମକୁ ଦୁଃଖ ହୁଏ, ହେଲେ ନିଜ ପିଲା ଖାଇଲେ ଭଲ ଲାଗେ, ଆମେ ଖୁସୀ ହେଉ। ବାସ୍ତବରେ ଦେଖିବାକୁଗଲେ ଟାକୁଆ ଗୁଣର ପ୍ରେରଣାରେ ସ୍ୱୟଂ ପାହାଡ଼ ଉପରେ ଉଠେ, ସେହିପରି ଘରେ ବି ଉଠେ। ପାହାଡ଼ ଉପରେ ଯେପରି ସ୍ୱତଃ ଫଳ ଫଳେ, ଘରେ ବି ସେହିଭଳି ସ୍ୱତଃ ଫଳ ଧରେ। ଏଠାରେ ଫଳ ଚୋରି ହେଲେ ଆମକୁ ଦୁଃଖ ହେଉଥିବାର କାରଣ ହେଉଛି ଆମର କର୍ତ୍ତାପଣିଆ। ଜ୍ଞାନୀଠାରେ ନାହିଁ ହେଉଛି ବିଶେଷତା ଯେ, ସେ ସମସ୍ତ କାମ କର୍ତ୍ତାପଣର ଅଭିମାନ-ରହିତ ଭାବରେ କରେ।''(୨)

ଉଦ୍ଧବ ପଚାରିଲେ, ''ଭଗବନ୍! ଆମେ ଜ୍ଞାନୀଙ୍କୁ ଚିହ୍ନିବୁ କିପରି ବତାଇ ଦିଅନ୍ତୁ। ଜ୍ଞାନୀ କିଏ ? ସେ କ'ଣ ଗ୍ରହଣକରେ, କ'ଣ କ'ଣ ତ୍ୟାଗକରେ, ସେ ଉଠେ, ବସେ, ଚାଲେ କିପରି ?''

---

(୨) ଆରମ୍ଭ ନାନା ଉପଭୋଗେ । ସେ ଯେହ୍ନେ ଆତ୍ମାର ସଂଯୋଗେ ॥
ମଣଇଁ ସତ୍ୟପ୍ରାୟ ତାହା । ଦୃଷ୍ଟି ଶ୍ରବଣେ ସର୍ବମାୟା ॥
ଯେତେ ଦେଖଇ ନାନା ରଙ୍ଗେ। ବିଫଳ ହୋଏ ନିଦ୍ରାଭଙ୍ଗେ ॥
ଏ ମାୟା ତ୍ରିଗୁଣେ ଯନ୍ତ୍ରିତ । ବ୍ରହ୍ମାଦି ପ୍ରପଞ୍ଚ ଜଗତ ॥
ଏଣୁ ପ୍ରବୃତ୍ତି ଧର୍ମ ଏଡ଼ି । ନିବୃତ୍ତି ଧର୍ମେ ଚିତ୍ତ ବଢ଼ି ॥
[ଭାଗବତ : ଜଗନ୍ନାଥ ଦାସ, ୧୧ସ୍କ, ୧୨ଅ]

ଭଗବାନ କହିଲେ, ''ଜ୍ଞାନୀ ସାଧାରଣ ପୁରୁଷ ଭଳି କାର୍ଯ୍ୟ ତ କରେ, କିନ୍ତୁ ତା'ର ବୃତ୍ତି ସୁଖରେ, ଦୁଃଖରେ, ମାନରେ ଅପମାନରେ, ଜୟରେ ପରାଜୟରେ, କ୍ଷତିରେ ଲାଭରେ, ଜୀବନରେ ମରଣରେ, ଯଶରେ ଅପଯଶରେ, ନିନ୍ଦାରେ, ସ୍ତୁତିରେ ତଥା ପ୍ରତ୍ୟେକ ଦଶାରେ ସମାନ ରହିଥାଏ। ହିଂସୁକ ଲୋକ ତା' ଶରୀରାଙ୍କୁ କାଟି ଦିଅନ୍ତୁ ପଛେ, ଅଥବା ପ୍ରାରବ୍ଧ ହେତୁ ପୂଜା ଆଦି କରନ୍ତୁ ପଛେ, ତା' ପାଇଁ ଉଭୟ ସମାନ ଅନୁଭବ ହୋଇଥାଏ। ତା'ର ପ୍ରାଣ, ମନ, ଇନ୍ଦ୍ରିୟ, ତଥା ବୁଦ୍ଧିର ସକଳ ଉଦ୍ୟମ ସଂକଳ୍ପଶୂନ୍ୟ ହୋଇଥାଏ। ଏଣୁ ତୁମେ ନିଜର ଚିତ୍ତର ବୃତ୍ତିକୁ ମୋ ଠାରେ ଲଗେଇ ଦିଅ। ମୋ ଭକ୍ତ ହୋଇଯିବା ପରେ ସକଳ ସ୍ଥିତି ତୁମେ ସ୍ୱତଃ ପ୍ରାପ୍ତ ହୋଇଯିବ।''

ଉଦ୍ଧବ ପଚାରିଲେ, ''ଭଗବନ୍! ଆପଣଙ୍କର ଭକ୍ତି କିପରି ପ୍ରାପ୍ତ ହୋଇପାରେ?''

ଭଗବାନ୍ କହିଲେ, ''ମୋର ଭକ୍ତି ପ୍ରାପ୍ତ ହେବାପାଇଁ ତିନୋଟି ଉପାୟ ଅଛି।''

ଉଦ୍ଧବ କହିଲେ, ''ପ୍ରଭୁ! ସେଇ ତିନୋଟି ଉପାୟ ମୋତେ ପ୍ରାଞ୍ଜଳ ଭାବେ ବୁଝାନ୍ତୁ।''

ଭଗବାନ କହିଲେ, ''ଦେଖ ଭାଇ! ପ୍ରାଞ୍ଜଳଭାବେ ବୁଝାଇବା ପାଇଁ ସମୟ ନାହିଁ। ସମସ୍ତଙ୍କୁ ସାଙ୍ଗରେ ଧରି ଆଜି ହିଁ ମୋତେ ପ୍ରଭାସକୁ ଯିବାକୁ ହେବ। ସଂକ୍ଷେପରେ ମୁଁ ତୁମକୁ ବୁଝାଇ ଦେଉଛି, ଶୁଣ।''

''ମୋର ଭକ୍ତି ପ୍ରାପ୍ତ ହେବାପାଇଁ ସର୍ବପ୍ରଥମ ଉପାୟ ଏହା ଯେ, ସାଧୁ ପୁରୁଷଙ୍କ ପାଖକୁ ଯାଇ ମୋ'ର ଭାଗବତୀ କଥାକୁ ଶ୍ରଦ୍ଧା ସହିତ ଶ୍ରବଣ କରିବ। ମୋ କଥା ଶୁଣି ଶୁଣି ମୋର ତଥା ମୋ ଭକ୍ତଙ୍କ ଚରିତ ପ୍ରତି ଅନୁରାଗ ହୋଇଯିବ। ଏଣୁ ଭକ୍ତି ପ୍ରାପ୍ତ ହେବାପାଇଁ ଆଗ୍ରହୀ ଲୋକର ସର୍ବପ୍ରଥମ କର୍ତ୍ତବ୍ୟ ହେଉଛି ପ୍ରତିଦିନ ନିୟମ କରି ସକଳ ଲୋକଙ୍କୁ ପବିତ୍ର କରୁଥିବା ମୋ-କଥାରେ ମନ ଲଗାଉ।(୩)

''ଦ୍ୱିତୀୟ ଉପାୟ ହେଉଛି, ମୋର ଦିବ୍ୟ ଜନ୍ମ ଓ କର୍ମକୁ ଗାନ କରିବା। ମୋର ସୁମଧୁର ପରମ ନିର୍ମଳ ନାମକୁ ତାଳ, ଲୟ ସ୍ୱରରେ କୀର୍ତ୍ତନ କରିବା, ମୋର ଯେତେ ଅବତାର ହୋଇଛି ସେ ସମସ୍ତଙ୍କର ଚରିତ୍ର ଗାନ କରିବା। ଲେଖି ପ୍ରଚାର କରିବା। ଅନ୍ୟ ଯେଉଁମାନେ ଗାନ କରୁଛନ୍ତି ସେମାନଙ୍କୁ ଅନୁମୋଦନ ତଥା ପ୍ରଂଶସା କରିବା। ମୋର ନାମ, ରୂପ, ଗୁଣକୁ ସ୍ମରଣ କରିବା। ମୋ ଚରିତ୍ରକୁ ନେଇ ନାଟକ କରିବା, ଅଭିନୟ କରିବା, ଲୀଳା କରିବା ଓ କରାଇବା। ବାରମ୍ବାର ମୋର ଚେଷ୍ଟାସମୂହକୁ ଅନୁକରଣ କରିବା।(୪)

---

(୩) ମୁଁ ବେଦରୂପେ ଅଛି ଭଣି । ଧର୍ମ ଅଧର୍ମ ପରିମାଣି ॥
ତହିଁରେ ଦୋଷ ଗୁଣ ଯେତେ । ନିର୍ଣ୍ଣୟ କରି ଶାସ୍ତ୍ରମତେ ॥
ସକଳ ଧର୍ମ ତେଜି ଚିତ୍ତେ । ଯେ ମୋତେ ଭଜେ ଦୃଢ଼ବ୍ରତେ ॥
ସେ ପ୍ରାଣୀ ଭକତ ଉତ୍ତମ । କହିଲେ ଶ୍ରୀ ପୁରୁଷୋତ୍ତମ ॥
[ଭାଗବତ : ଜଗନ୍ନାଥ ଦାସ : ସ୍କ.୧୧.ଅ.୧୨]

'ତୃତୀୟ ଉପାୟ ଏହା ଯେ, ଯାହା ବି ଧର୍ମ କରୁ, ଅର୍ଥ ଉପାର୍ଜନ କରୁ, କାମ-ଆଚରଣ କରୁ, ସେ ସମସ୍ତ ମୋର ଆଶ୍ରିତ ହୋଇ ମୋ ପ୍ରସନ୍ନତା ନିମିତ୍ତ କରୁଥିବ। ଏହି ସମସ୍ତ ଉପାୟରେ ମୋର ସଚ୍ଚିଦାନନ୍ଦ ସନାତନ ସର୍ବେଶ୍ୱର ସର୍ବାଧାର ସର୍ବନିୟନ୍ତା ପରମାତ୍ମାରେ ଅବିଚଳ ଭକ୍ତି ପ୍ରାପ୍ତ ହୋଇପାରେ। ମୋ ଭକ୍ତି ଲାଭ କରିବାର ସର୍ବୋତ୍ତମ ଉପାୟ ହେଉଛି ସତ୍‌ସଙ୍ଗ। ସତ୍‌ସଙ୍ଗରେ ଯାଉ ଯାଉ, ସାଧୁ-ସନ୍ଥଙ୍କ ସମାଗମ କରି କରି ଅନ୍ତଃକରଣ ଶୁଦ୍ଧ ହୋଇଯାଏ, ତହିଁରେ ଭକ୍ତିର ବୀଜ ବପନ ହୋଇଯାଏ। ଆଉ ସାଧକ ମୋର ଅନନ୍ୟ ଉପାସକ ହୋଇଯାଏ। ଏହାପରେ ପରମପଦ ପାଇବାପାଇଁ ତାକୁ ଆଉ କୌଣସି ପ୍ରକାର ଶ୍ରମ କରିବାକୁ ପଡ଼େ ନାହିଁ, ଆୟାସ କରିବାକୁ, କଷ୍ଟ କରିବାକୁ ପଡ଼େନାହିଁ। ସେ ସହଜରେ ମୋ-ପାଦ-ପ୍ରାପ୍ତ ହୋଇପାରେ। ସାଧୁସଙ୍ଗ ହିଁ ମୁକ୍ତିର ଦ୍ୱାର।'(୫)

''ଏପରି ଅପୂର୍ବ କଥା ଶୁଣି ଉଦ୍ଧବ ପଚାରିଲେ, ''ପ୍ରଭୁ! ସଂସାରରେ ଆପଣ ହିଁ କେବଳ ପରମ କୀର୍ତ୍ତିଶାଳୀ ସର୍ବଶ୍ରେଷ୍ଠ। ସାଧୁ କାହାକୁ କୁହନ୍ତି କୃପା କରି କହିବା ହୁଅନ୍ତୁ। କେଉଁ ଲକ୍ଷଣ ଦେଖି ଆମେ ସାଧୁଙ୍କୁ ଚିହ୍ନି ପାରିବା? କୃପା କରି ଆପଣଙ୍କର ପରମ ଭକ୍ତମାନଙ୍କର କିଛି ଲକ୍ଷଣ କୁହନ୍ତୁ।''

ଏହାଶୁଣି ଭଗବାନ କହିଲେ, ''ତା'ହେଲେ, ଠିକ୍ ଅଛି ଉଦ୍ଧବ! ଏବେ ମୁଁ ତୁମକୁ ମୋ ଭକ୍ତମାନଙ୍କ ଲକ୍ଷଣ କହୁଛି। ଏହି ଲକ୍ଷଣ ଦେଖିଲେ ମୋ ଭକ୍ତ ବୋଲି ଜାଣିପାରିବ।''

ସୂତ କହୁଛନ୍ତି, ''ହେ ମୁନିଗଣ! ଏବେ ଭଗବାନଙ୍କ ଶ୍ରୀମୁଖରେ ବର୍ଣ୍ଣନା କରାଯାଇଥିବା ତାଙ୍କର ଭକ୍ତଙ୍କ ଲକ୍ଷଣ ଆପଣମାନେ ଶ୍ରଦ୍ଧାର ସହିତ ଶ୍ରବଣ କରନ୍ତୁ।''

### ଛପ୍‌ପୟ

କର୍ତାପନ ତେଂ ବଁଧେ ଅକର୍ତା ବଁଧେ ନ କବହୁଁ
ଜ୍ଞାନୀକୁଁ ଦୁଖ ଦେଉ ବିକୃତ ହୋବୈ ନହିଁ ତବହୁଁ॥
ବ୍ରହ୍ମ ଭାବମହଁ ଲୀନ ପରମ ଅମୃତ ନିତ ଚାଖେଂ।
ଇସ୍ତୁତି ନିନ୍ଦା ରହିତ ବୁରୌ ଅରୁ ଭଲୌ ନ ଭାଖେଂ॥
କୀର୍ତନ ନାମନିକୋ କରେଂ, ଭାଖୈ ମେରେ ଗୁନ କରମ।
ଭକ୍ତ କରୈ ମୋମେଂ ସତତ, ପାଇ ଉପାସକ ପଦ ପରମ॥

---

(୪) ମୋ ଜନ୍ମ କର୍ମର କଥନ । ମୋର ଉତ୍ସବେ ହୃଷ୍ଟମନ ॥
ନାନା ସୁବାଦ୍ୟ ନୃତ୍ୟଗୀତେ । କୀର୍ତ୍ତନ କରି ମୋ ଅଗ୍ରତେ ॥
[ଭାଗବତ :ଜଗନ୍ନାଥ ଦାସ.୧୧ସ୍କ,ଅ.୧୨]

(୫) ଏ ଜୀବ ସାଧୁ ସଙ୍ଗ ବିନୁ । ଲଭି ନ ପାରେ ମୋର ତନୁ ॥
ସର୍ବ କୁସଙ୍ଗ ଦୋଷ ହରେ । ଯେ ନିତ୍ୟେ ସାଧୁସଙ୍ଗ କରେ ॥
ଯେ ଅବା ପତିତ ପାମର । ସତ୍‌ସଙ୍ଗେ ତରେ ଭବଘୋର ॥
[ଭାଗବତ : ଜଗନ୍ନାଥ ଦାସ : ସ୍କ.୧୧.ଅ.୧୩ ଶ.]

# ପରମ ଭଗବଦ୍‌ଭକ୍ତଙ୍କ ଲକ୍ଷଣ

**ଜ୍ଞାତ୍ୱାଜ୍ଞାତ୍ୱାଥ ଯେ ବୈ ମାଂ ଯାବାନ୍ ଯଶ୍ଚାସ୍ମି ଯଦୃଶଃ ।**
**ଭଜନ୍ତ୍ୟନନ୍ୟଭାବେନ ତେ ମେ ଭକ୍ତତମା ମତାଃ ।। ★**

[ଶ୍ରୀ ଭା.୧୧ ସ୍କ. ୧୧ ଅ ୩୩ ଶ୍ଲୋକ]

### ଛପ୍‌ପୟ

ପାବନ ମେରୀ କଥା ସୁନୈ ଗାବୈ ଧାବୈ ନିତ ।
ଲୀଲା ଅଭିନୟ କରୈ ଲଗାବୈ ମମ ଚରନନି ଚିତ ।।
ଧରମ କରମ ଅରୁ କାମ କରୈ ହ୍ୱୈ ମେରେ ଆଶ୍ରିତ ।
ପାବୈ ନିଷ୍କଳ ଭକ୍ତି କଟୈ ଜଗକୀ ଯହ ସଂସୃତ ।।
ସାଧୁନିକେ ସତସଙ୍ଗ ତେଁ, ଭକ୍ତି ମୁକ୍ତି ପାବୈ ସହଁ ।
ପୁଣ୍ୟ ପୁରାତନ ଉଦୟ ଜବ, ହୋବୈ ସାଧୁ ମିଲୈ ତବହିଁ ।।

ସଂସାରରେ ସବୁ କଥା ସୁଲଭ । ବଡ଼ରୁ ବଡ଼ ଧନୀ ଅଛନ୍ତି । ବଳୁଆ ଲୋକଙ୍କର ବି ଅଭାବ ନାହିଁ । ଏପରି ବଳବାନ ଲୋକ ଅଛନ୍ତି ଯେଉଁମାନେ ସିଂହକୁ ଧରି ତାକୁ ମଝିରୁ ଫାଡ଼ି ଦେଇପାରନ୍ତି, ମଦୋନ୍ମତ୍ତ ହାତୀଙ୍କ ସହିତ ଦ୍ୱନ୍ଦ୍ୱଯୁଦ୍ଧ କରିପାରନ୍ତି, ପାହାଡ଼ର ମୂଳ ଉତ୍ପାଟନ ବି କରିପାରନ୍ତି । ଏପରି ବିଦ୍ୱାନ୍ ଅଛନ୍ତି ଯେଉଁମାନେ ଅସମ୍ଭବକୁ ସମ୍ଭବ ମଧ କରିପାରନ୍ତି, ଆଉ ସଂମ୍ଭବକୁ ଅସମ୍ଭବ । ଏପରି ଦାନୀ ଅଛନ୍ତି ଯେଉଁମାନେ ନିଜ ସନ୍ତାନଙ୍କୁ, ସ୍ତ୍ରୀ'ଙ୍କୁ, ଧନ ଏବଂ ନିଜ ଶରୀରକୁ ବି ଦାନ କରିପାରନ୍ତି । ତେଜସ୍ୱୀ, ଯଶସ୍ୱୀ, ତପସ୍ୱୀ, ସମସ୍ତେ ସମ୍ଭବ; ହେଲେ ସାଧୁ ମିଳିବା ଦୁର୍ଲଭ । ପ୍ରକୃତ ସାଧୁ ସବୁଠାରେ ମିଳନ୍ତି ନାହିଁ ।

ମହର୍ଷି ସୂତ କହୁଛନ୍ତି, ହେ ମୁନିଗଣ ! ଉଦ୍ଧବ ଯେତେବେଳେ ଭଗବାନଙ୍କୁ ସାଧୁଙ୍କ ଲକ୍ଷଣ କଥା ପଚାରିଲେ, ସେତେବେଳେ ଭଗବାନ କହିଲେ, "ହେ ଉଦ୍ଧବ ! ସାଧୁଙ୍କର ଅନନ୍ତ ଗୁଣ ଥାଏ । ସାଧୁଙ୍କ ଗୁଣ ଗଣନା କିଏ କରିବ ? ସୁମେରୁର ଧୂଳିକଣା ଗଣାଯାଇ ପାରେ, କିନ୍ତୁ ସାଧୁଙ୍କ ଗୁଣ ଗଣନା କରିବା ସମ୍ଭବ ନୁହେଁ । ତେବେ ବି ମୁଁ କେତେକ ଗୁଣ ବର୍ଣ୍ଣନା କରୁଛି ଶୁଣ । ମୁଁ କହିବାକୁ ଯାଉଥିବା ଏହି ୨୮ଟି ଗୁଣ ଯାହା ପାଖରେ ଦେଖିବ ତାଙ୍କୁ ନିଶ୍ଚିତ ସାଧୁ ବୋଲି ଜାଣିବ ।"

ଉଦ୍ଧବ କହିଲେ, "ଭଗବନ୍ ! ମୋତେ ସେହି ଗୁଣଗୁଡ଼ିକ ଭିତରୁ କେତେକ ବିଷୟରେ କୁହନ୍ତୁ । ଅନ୍ତତଃ ଏହି ୨୮ ଗୁଣ ସମ୍ବନ୍ଧରେ କୁହନ୍ତୁ ।

---



ସେ ନିଜ ସର୍ବ ଧର୍ମ ତେଜି । ଉତ୍ତମ ସାଧୁ ମୋତେ ଭଜି ।।
ମୁଁ ଅଛି ସର୍ବଠାରେ ବ୍ୟାପି । ସର୍ବାତ୍ମା ଆନନ୍ଦସ୍ୱରୂପୀ ।।
ଏ ରୂପେ ଜାଣି ବା ନ ଜାଣି । ଏକାନ୍ତ ଭାବେ ମୋତେ ପୁଣି ।।
ଭଜନ୍ତି ଯେଉଁ ସାଧୁ ଜନେ । ମୋ'ଭକ୍ତ ଉତ୍ତମ ସେମାନେ ।।

[ଭାଗବତ : ଜଗନ୍ନାଥ ଦାସ, ଏକାଦଶ ସ୍କନ୍ଧ]

ଭଗବାନ କହିଲେ, "ମୁଁ ଏହି ଅଠେଇଶ ଗୁଣ ବର୍ଣ୍ଣନା କଲେ ଅତି ବିସ୍ତୃତ ହୋଇଯିବ। ତେବେ ସଂକ୍ଷେପରେ କହୁଛି ଶୁଣ,

(୧) କୃପାଳୁ— ସାଧୁ ଅତି ଦୟାଳୁ ହୋଇଥା'ନ୍ତି। ମାତା-ପିତା ଯେପରି ସେମାନଙ୍କ ସନ୍ତାନଙ୍କ ପ୍ରତି, ସମ୍ବନ୍ଧୀୟମାନେ ସେମାନଙ୍କ ସମ୍ବନ୍ଧୀୟଙ୍କ ପ୍ରତି ଯେପରି ଦୟା କରନ୍ତି, ସେହିପରି ସଜ୍ଜନ ପୁରୁଷ ପ୍ରତ୍ୟେକ ପ୍ରାଣୀଙ୍କୁ କୃପା କରନ୍ତି। ଏପରି ନୁହେଁ ଯେ କେତେକଙ୍କୁ ଦୟା କରିବେ, ଆଉ କେତେକଙ୍କୁ କରିବେ ନାହିଁ। ସେମାନଙ୍କ କୃପା-ପାତ୍ର ସମସ୍ତଙ୍କ ପାଇଁ ସମାନ ଭାବରେ ଉନ୍ମୁକ୍ତ ଥାଏ। ତେଣୁ ସେମାନେ ଅକୃତଦ୍ରୋହ ହୋଇଥା'ନ୍ତି।

(୨) ଅକୃତଦ୍ରୋହ— ସାଧୁ କାହା ସହିତ ବୈରଭାବ ରଖେନାହିଁ। ବୈର ଭାବ ସ୍ୱାର୍ଥ ଯୋଗୁଁ ହୋଇଥାଏ। ଆମେ ଗୋଟିଏ ବସ୍ତୁ ପାଇବା ପାଇଁ ଚାହୁଁଛେ, ଅନ୍ୟଜଣେ ବି ତାହା ଚାହୁଁଛି, ଆମେ କିନ୍ତୁ ତାହା ଛାଡ଼ିବା ପାଇଁ ଚାହୁଁନେ, ଫଳରେ ପରସ୍ପର ମଧ୍ୟରେ ଦ୍ରୋହ ହୁଏ। ସାଧୁ କୌଣସି ବସ୍ତୁକୁ ଇଚ୍ଛା କରେନାହିଁ। ସେ କୌଣସି ବସ୍ତୁକୁ ନିଜର ବୋଲି ଭାବନ୍ତି ନାହିଁ। ତେଣୁ ଦ୍ରୋହର ପ୍ରଶ୍ନ ହିଁ ଉଠୁନାହିଁ।

(୩) କ୍ଷମାଶୀଳ— ସାଧୁଙ୍କ ଠାରେ ପ୍ରଚୁର କ୍ଷମା ଥାଏ। ମଣିଷର ସହଜ ଓ ସାଧାରଣ ସ୍ୱଭାବ ହେଉଛି, ଯିଏ ଆମର ଅପକାର କରିଛି ତା'ର ଅପକାର କରିବା ପାଇଁ ମନର ସ୍ୱତଃ ଭାବନା ସୃଷ୍ଟି ହୁଏ। ଆମ ପ୍ରତି ଯିଏ ହିଂସା କରୁଛି, ତା' ପ୍ରତି ଆମର ବି ହିଂସା ଉଦୟ ହୋଇଯାଉଛି। ସାଧୁଙ୍କଠାରେ କିନ୍ତୁ ଏପରି ଭାବ ନ ଥାଏ। ସେମାନେ ଚନ୍ଦନଭଳି ହୋଇଥା'ନ୍ତି। ତାକୁ ଯେତେ ଘଷିବା ସେ ସେତେ ସୁଗନ୍ଧ ପ୍ରଦାନ କରିଥାଏ। ଆଖୁକୁ ଯେତେ ଚିପୁଡ଼ିବା, ଯେତେ ଚୋବାଇବା ତାହା ସେତେ ରସ ଦେଇଥାଏ। ଏହିପରି ସାଧୁ ଅପକାରୀର ବି ମୁହଁକୁ ସ୍ୱାଦ ଦିଅନ୍ତି, ରସ ଦିଅନ୍ତି। ସାଧୁ ବୃକ୍ଷ ସଦୃଶ। କାଟିବା ଲୋକକୁ ବି ଛାୟା ଦିଅନ୍ତି, ଆଉ ପାକସିଦ୍ଧ ନିମନ୍ତେ ଜାଳେଣି ବି ଦିଅନ୍ତି। ସାଧୁ ରଙ୍ଗଣୀ ପତ୍ରଭଳି, ପେଶିବା ଲୋକର ହାତକୁ ରଙ୍ଗେଇ ଦିଅନ୍ତି। ସେମାନେ କାହାର ଅପକାର କରିବା ଜାଣନ୍ତି ନାହିଁ।

(୪) ସତ୍ୟବାନ୍— ସାଧୁଙ୍କ ସ୍ୱଭାବ ହିଁ ସତ୍ୟ କହିବା। ସେମାନେ କଦାପି ଅସତ୍ୟ ଭାଷଣ କରନ୍ତି ନାହିଁ। ଯେପରି ଦେଖନ୍ତି, ଯେପରି ଶୁଣନ୍ତି, ଅନୁଭବ କରନ୍ତି ତାହା କହନ୍ତି। ସେମାନଙ୍କ ମନରେ ଛନ୍ଦ, କପଟ ନ ଥାଏ। ସେମାନେ କୌଣସି କଥାକୁ ଲୁଚାଇବା ଜାଣନ୍ତି ନାହିଁ। ଯାହା ସତ୍ୟ, ନିରୀହ ବାଳକଙ୍କ ଭଳି ସମସ୍ତଙ୍କୁ କହିଦିଅନ୍ତି।

(୫) ଶୁଦ୍ଧଚିତ୍ତ— ସାଧୁଙ୍କ ଚିତ୍ତ ବିଶୁଦ୍ଧ ହୋଇଥାଏ। ସେମାନେ ମନଗଢ଼ା କଥାକୁ ହୃଦୟରେ ରଖିପାରନ୍ତି ନାହିଁ। ହୃଦୟରେ ଏତେ ଟିକିଏ ଖରାପ ପ୍ରବେଶ କରିବାକ୍ଷଣି ସେମାନେ ଘାବରା ହୋଇଯାଆନ୍ତି, ବିଚଳିତ ହୋଇଯାଆନ୍ତି। ଉପାସନା କରି କରି ସେମାନଙ୍କ ଚିତ୍ତ ଶୁଦ୍ଧ ହୋଇଯାଏ। ସେଥିରେ ମଳିନତାର ଗନ୍ଧ ବର୍ଣ୍ଣ ଟିକିଏ ବୋଲି ନ ଥାଏ।

(୬) ସମଦର୍ଶୀ— ମଣିଷର ସ୍ୱଭାବ ଏପରି ଯେ ଯେଉଁଥିରେ ନିଜପଣିଆ ପ୍ରତିଷ୍ଠିତ ହୋଇପାରେ ସେଥିପ୍ରତି ଅଧିକ ଧ୍ୟାନ ରଖି଼ ।। ସେଥିପ୍ରତି ଆଗ୍ରହ କରିଥାଏ। ଯେପରି ଆମକୁ କେହି କିଛି ଜିନିଷ ବାଣ୍ଟିବାକୁ ଦେଲେ ଆମେ ଏପରି ଲୋକଙ୍କୁ ତାହା ଦେବା ଯିଏ ଆମର ହୋଇଥିବେ, ନିଜ ଲୋକ ହୋଇଥିବେ। ଅନ୍ୟଙ୍କୁ ଦେବାକୁ ବିବଶ ହୋଇଥାଉ। ଯାହା ସବୁଠାରୁ ଅଧିକ ପଚାଶଢ଼ା, ଖରାପ, ତାହା ସେମାନଙ୍କୁ ଦେଉ। ସାଧୁଙ୍କଠାରେ ଏପରି ଭାବ ନ ଥାଏ। ତାଙ୍କ ପାଖରେ ସମସ୍ତେ ସମାନ। ସେମାନେ ବଡ଼-ସାନ, ଧନୀ-ଗରିବ, ଏପରି ଭେଦଭାବ ରଖନ୍ତି ନାହିଁ। ସେମାନେ ସମସ୍ତଙ୍କର ମଙ୍ଗଳ କରିଥା'ନ୍ତି।

(୭) ସର୍ବୋପକାରକ— ସାଧୁଙ୍କର ସମସ୍ତ କାମ ସକଳ ଲୋକଙ୍କ ଉପକାର ନିମିତ୍ତ ହୋଇଥାଏ। ଯେପରି ଗୃହସ୍ଥୀ ଘରଟିଏ କଲେ ସର୍ବପ୍ରଥମେ ସ୍ଥିର କରି କହେ—ଏଠି ମୋ ପୁଅ ରହିବ, ଏଠି ଝିଅ, ଆଉ ଏଠାରେ ବୋହୂ। କିନ୍ତୁ ସାଧୁ ଯେଉଁ ଭଜନ କରନ୍ତି, ସମସ୍ତଙ୍କ ପାଇଁ କରନ୍ତି। ଗୃହସ୍ଥୀ ବାଡ଼ି-ବଗିଚା କରେ କେବଳ ନିଜ ପାଇଁ। ସାଧୁମାନଙ୍କ ବାଡ଼ି-ବଗିଚା ଭଗବାନଙ୍କର ସେବା-ପୂଜା ପାଇଁ, ସମସ୍ତଙ୍କ ଉପକାର ପାଇଁ ହୋଇଥାଏ। ତହିଁରୁ ସୁଖ, ସୁବିଧା ଗ୍ରହଣ କରିବାର ଅଧିକାର ସମସ୍ତଙ୍କୁ ଦେଇଥା'ନ୍ତି। ସେମାନେ କେବଳ ଏହାର ଦେଖା-ଶୁଣାକାରୀ ବୋଲି ମନେକରନ୍ତି। ସେମାନଙ୍କର ସମସ୍ତ କାମ ପରୋପକାର ଭାବନାରେ ହୋଇଥାଏ।

(୮) କାମନାରହିତ— ଏପରି ଦେଖାଯାଏ, ମନରେ ଯେତେବେଳେ କାମ ଭାବନା ପ୍ରବେଶକରି ଘର କରିନିଏ, କାମ ବାସନା ହେତୁ ବୁଦ୍ଧିଭ୍ରଷ୍ଟ ହୋଇଯାଏ। ଏହାପରେ ସଦ୍-ଅସଦ୍‌ର ବିବେକ ରହେନାହିଁ; ଲଜ୍ଜ୍ୟା, ଶୀଳ, ସଙ୍କୋଚ ସବୁ ନଷ୍ଟ ହୋଇଯାଏ। କିନ୍ତୁ ସାଧୁମାନେ ଏହାର ବିପରୀତ ହୋଇଥା'ନ୍ତି। ପ୍ରଥମତଃ, ଏହାଙ୍କ ମନକୁ କାମବାସନା ଆସେନାହିଁ, ଯଦିବା କେତେବେଳେ ଆସେ ଏମାନଙ୍କ ବୁଦ୍ଧିକୁ କାମ ମାରିପାରେ ନାହିଁ, ଏମାନଙ୍କ ବିବେକ କସ୍ମିନ୍ କାଳେ ନଷ୍ଟ ହୁଏନାହିଁ।

(୯) ସଂଯମୀ— ସାଧୁପୁରୁଷଙ୍କ ଜୀବନ ସଂଯତ ହୋଇଥାଏ। ସେମାନଙ୍କ ସକଳ କର୍ମ ସଂଯ଼ପୂର୍ବକ ହୋଇଥାଏ। ସେମାନେ ସଂଯମର ସହିତ ରହନ୍ତି, ସଂଯମର ସହିତ ଭୋଜନ କରନ୍ତି, ସଂଯମର ସହିତ କୁହନ୍ତି, ସଂଯମର ସହିତ କାର୍ଯ୍ୟ କରନ୍ତି, ସଂଯମର ସହିତ ଶୁଅନ୍ତି। ସାରକଥା ହେଉଛି, ସେମାନଙ୍କର କୌଣସି କାର୍ଯ୍ୟ ଅସଂଯତ ହୋଇ ନ ଥାଏ।

(୧୦) କୋମଳ ସ୍ୱଭାବ— ସାଧୁମାନଙ୍କର ସ୍ୱଭାବ କଠୋର ହୋଇ ନଥାଏ। ପର ଦୁଃଖ ଦେଖିବା କ୍ଷଣି ସେମାନଙ୍କର ହୃଦୟ ଦ୍ରବିତ ହୋଇଯାଏ। ସେମାନଙ୍କର ସ୍ୱଭାବ ଅତ୍ୟନ୍ତ କୋମଳ ହୋଇଥାଏ। ଭଗବଦ୍ କଥାକୁ, କରୁଣ ପ୍ରସଙ୍ଗକୁ ଶୁଣି ସେମାନଙ୍କର ହୃଦୟ ତରଳିଯାଇ ପାଣି ରୂପେ ଆଖି ବାଟଦେଇ ନିଗିଡ଼ି ପଡ଼େ। ସେମାନେ କାହା ସହିତ କଥା ହେଲାବେଳେ ଜଣାପଡ଼େ ସତେ ଯେପରି ସେମାନଙ୍କ ମୁଖରୁ ଅମୃତର ଧାରା ପ୍ରବାହିତ ହେଉଛି। ଅନ୍ୟଙ୍କର ଦୁଃଖ ଦେଖି ସେମାନେ ଦୟାର୍ଦ୍ର ହୋଇଯାଆନ୍ତି ଓ ଯାହା ସେମାନଙ୍କ ହାତରେ ସମ୍ଭବ ତାହା କରିବାକୁ ସାମାନ୍ୟ ମାତ୍ର କୁଣ୍ଠିତ ହୁଅନ୍ତି ନାହିଁ।

(୧୧) ସଦାଚାରୀ—ସାଧୁଙ୍କର ଆଚାର ସତ୍‌ପୁରୁଷଙ୍କ ଭଳି ହିଁ ହୋଇଥାଏ। ପରର ଦୁଃଖ ଦେଖି ସେମାନେ ସହସା ତରଳି ଯାଆନ୍ତି। ଦୁରାଚାର ଆଡ଼କୁ ଆଡ଼ଆଖିରେ ବି ଚାହାଁନ୍ତି ନାହିଁ। ପରନାରୀକୁ ମାତା ଭଳି ଦେଖନ୍ତି, ଅନ୍ୟର ଧନକୁ ମାଟି ତୁଲ୍ୟ ମନେକରନ୍ତି; ଆଉ ସକଳ ପ୍ରାଣୀଙ୍କ ଆତ୍ମାକୁ ନିଜର ଆତ୍ମା ଭଳି ମନେକରନ୍ତି। ଏପରି ହୋଇଥା'ନ୍ତି ସଦାଚାରୀ ସାଧୁ।

(୧୨) ଅକିଞ୍ଚନ— ଯାହା ପାଖରେ ବଡ଼ାଇ କହିବାର କିଛି ଥାଏ ତା' ପାଖରେ ଅଭିମାନ ରହିଥାଏ। ମୋ ପାଖରେ ଏତେ ଧନ ଅଛି, ମୁଁ ଏଡ଼େ ବିଦ୍ୱାନ୍। ଏଣୁ ସାଧୁମାନେ ସମସ୍ତଙ୍କୁ ଭଗବଦ୍ ଅର୍ପଣ କରିଦେଇଥା'ନ୍ତି। ନିଜର ସର୍ବସ୍ୱ ସର୍ବେଶ୍ୱରଙ୍କୁ ସମର୍ପିଦେଇ ନିଜେ ଅକିଞ୍ଚନ ହୋଇ ଯା'ନ୍ତି। କୋଷାଧକ୍ଷ ପାଖରେ କୋଟି କୋଟି ଟଙ୍କା ଥାଏ, କିନ୍ତୁ ସ୍ୱପ୍ନରେ ସୁଦ୍ଧା ସେ ତାକୁ ନିଜର ବୋଲି ଭାବିପାରେ ନାହିଁ। ଜୀବନ ଚଳାଇବା ପାଇଁ ମାଲିକ ଯେତିକି ଦରମା ତାକୁ ଦିଅନ୍ତି, ସେ ସେହିଥିରେ ଚଳେ। ତା' ଚିତ୍ତ ଯେତେବେଳେ ଚଞ୍ଚଳ ହୋଇଯାଏ, ମାଲିକର ଧନକୁ ନିଜର ବୋଲି ମନେକରେ, ସହସା ସେ ନିଜର ପଦ ହରାଇ ପକାଏ, ଧରା ପଡ଼େ ଓ କାରାଗାରର ଦଣ୍ଡ ଭୋଗକରେ। ଅଥବା ଯମରାଜା ପାଖରେ ନିର୍ଯ୍ୟାତିତ ହୁଏ। ଏଣୁ, ସାଧୁ ନିଜର ବୋଲି କିଛି ରଖନ୍ତି ନାହିଁ। ସମସ୍ତ ଭଗବାନଙ୍କୁ ଅର୍ପଣ କରି ନିଜେ ଅକିଞ୍ଚନ ହୋଇଯା'ନ୍ତି।

(୧୩) ନିଃସ୍ପୃହ— ଦୀନତା ଇଚ୍ଛାରୁ ହୋଇଥାଏ। ଆମେ ଅନ୍ୟ ପାଖରେ କାହିଁକି ଦୀନ ହେଉ, କାହିଁକି ଲଇଁପଡୁ? କାରଣ, ଆମେ ତା'ଠାରୁ କିଛି ଆଶାକରୁ, ଚାହୁଁ। ଧନୀ ଲୋକଟିଏ ଦେଖିଲେ ତା'ଠାରୁ କିଛି ପାଇବାପାଇଁ ଇଚ୍ଛାକରୁ, ତେଣୁ ତା' ପାଖରେ ଦୀନ ହୋଇଯାଉ। ମିଛ ସତ କହି ତାକୁ ପ୍ରସନ୍ନ କରିବାକୁ ଚେଷ୍ଟାକରୁ। ତା' ପାଖରେ ବିଶ୍ୱମ୍ଭରର ମହତ୍ତ୍ୱ ଭୁଲି ଯାଉ। ତା' ପାଖରେ ଯେତିକି ଲକ୍ଷ୍ମୀ ଅଛନ୍ତି ତାହା ଅଗାଧ ସମୁଦ୍ରର ଏକ ବିନ୍ଦୁମାତ୍ର ବୋଲି ଆମେ ସେତେବେଳେ ଭାବୁନା। ଯିଏ ସ୍ୱୟଂ ଲକ୍ଷ୍ମୀପତି ତାଙ୍କ ଶରଣ କାହିଁକି ଗ୍ରହଣ ନ କରିବା? ତାଙ୍କ ପାଖରେ ଦୀନତା କାହିଁକି ପ୍ରକଟ ନ କରିବା? ଭଗବାନଙ୍କୁ ଯିଏ ବିଶ୍ୱାସ କରେ ସେ ସଂସାରର ବଡ଼ଠାରୁ ବି ବଡ଼ ଚକ୍ରବର୍ତ୍ତୀଙ୍କଠାରେ, ତଥା କ୍ଷୁଦ୍ରାତିକ୍ଷୁଦ୍ର ତୃଣଠାରେ କୌଣସି ପାର୍ଥକ୍ୟ ଦେଖେନାହିଁ। ସବୁବେଳେ ନିସ୍ପୃହ ରହି ଅନବରତ ନାରାୟଣଙ୍କୁ ସ୍ମରଣ କରୁଥାଏ। ତାଙ୍କର ଶରଣ ନିଏ।

(୧୪) ମିତାହାରୀ— ଯାହାର ଜିହ୍ୱା ଅକ୍ତିଆରରେ ନ ଥାଏ, ସେ ସବୁବେଳେ ଖାଉଥା'ନ୍ତି। ସୁନ୍ଦର, ସ୍ୱାଦିଷ୍ଟ, ଖଟାମିଠା, ଲୁଣିଆ, ମିଠା ଜିନିଷ ଅଧିକ ଖାଇଥା'ନ୍ତି। ଫଳରେ ନା ବସି ହୁଏ, ନା ଆସନ କରିହୁଏ। କେବଳ ଶୋଇ ରହିଥା'ନ୍ତି। ପେଟ-ରୋଗ ହୋଇଯାଏ। ବାରମ୍ବାର ଶୌଚ ନିମନ୍ତେ ଯିବାକୁ ପଡ଼େ। ଅନବରତ ପେଟ ଚିନ୍ତା ଲାଗିରହିଥାଏ। ଚିତ୍ତ ରୋଗମୟ ହୋଇଯାଏ। ଜୀବନର ଆହାର ଉପରେ ଖୁବ୍ ପ୍ରଭାବ ପଡ଼େ। ଏଣୁ, ସାଧୁମାନେ ସବୁବେଳେ ମିତାହାରୀ ହୋଇଥା'ନ୍ତି। ସେମାନେ ନିର୍ଦ୍ଦିଷ୍ଟ ସମୟରେ ଭୋଜନ କରନ୍ତି। ପରିମାଣ ନିର୍ଦ୍ଦିଷ୍ଟ ଥାଏ, ରୋଷାଇ କରିବାର ପ୍ରଣାଳୀ ନିର୍ଦ୍ଦିଷ୍ଟ ଥାଏ। ସେମାନେ ସଂଯମର ସହିତ ପରିମାଣ ଅନୁସାରେ ଖାଆନ୍ତି। ସେମାନେ

ଭୋଜନ ପାଇଁ ବଞ୍ଚନ୍ତି ନାହିଁ, କିନ୍ତୁ ବଞ୍ଚିରହିବା ପାଇଁ ଯେତିକି ଆବଶ୍ୟକ ସେତିକି ମାତ୍ର ଭୋଜନ କରିଥା'ନ୍ତି।

(୧୫) ଶାନ୍ତଚିତ୍ତ— ଯାହାର ମନରେ ନାନା କାମନା ଭର୍ତ୍ତି ହୋଇ ରହିଥାଏ, ତା'ର ଚିତ୍ତ ଶାନ୍ତ କଦାପି ରହିପାରେ ନାହିଁ। ଜାଗ୍ରତ ଅବସ୍ଥାରେ ନାନା ବିଷୟର ଚିନ୍ତାରେ ଚିତ୍ତ ଉଦ୍‌ବିଗ୍ନ ରହିଥାଏ, ଆଉ ଶୋଇବା ସମୟରେ, ସ୍ୱପ୍ନରେ ବି ସେହି ବିଷୟଗୁଡ଼ିକୁ ଦେଖି ଦେଖି ଦୁଃଖିତ ଓ ଚିନ୍ତିତ ହେଉଥାଏ। ସାଧୁଙ୍କ ଚିତ୍ତ ଏହି ସବୁ ନାଶବାନ ଘଟଣାରେ କେତେବେଳେ ବି ଉଦ୍‌ବିଗ୍ନ ହୁଏନାହିଁ। ଅଗାଧ ସମୁଦ୍ର ଭଳି ସବୁବେଳେ ଶାନ୍ତ ରୂପେ ରହିଥାଏ।

(୧୬) ସ୍ଥିର ବୁଦ୍ଧି— ଯାହାର ଲକ୍ଷ ସ୍ଥିର ନ ଥାଏ, ତା'ର ବୁଦ୍ଧି ବି ସ୍ଥିର ରହେ ନାହିଁ। ଗୋଟିଏ କାମ କରୁଥାଏ, ସେଥିରେ ଅଧିକ ଲାଭ ହେବନାହିଁ ବୋଲି ମନେକରି ପରବର୍ତ୍ତୀ କାଳରେ ଆଉ ଗୋଟିଏ କାମରେ ଲାଗିଯାଏ। ଆଜି ଯାହାକୁ ଶ୍ରଦ୍ଧା କରୁଥାଏ କାଲି ତାକୁ ଘୃଣା କରିବାରେ ଲାଗେ। କିନ୍ତୁ ସାଧୁଙ୍କର ବୁଦ୍ଧି ସ୍ଥିର ଥାଏ। ସେମାନେ ଗୋଟିଏ ସାଧନକୁ ଦୃଢ଼ତାର ସହିତ କରୁଥା'ନ୍ତି। ସେହିଥିରେ ନିଜର ବୁଦ୍ଧିକୁ ସ୍ଥିର ରଖନ୍ତି।

(୧୭) ଶରଣାପନ୍ନ— ସାଧୁ ମୋର ଶରଣାଗତ ହୋଇଥାଏ। ସେ କୌଣସି ବଡ଼ ଲୋକର ବି ଶରଣକୁ ଯାଏ ନାହିଁ। ଗାଈ, ମଇଁଷି ଆଦି ପଶୁମାନେ ପ୍ରଥମେ ଯେଉଁ ତୃଣ ଆଦି ଚାରାକୁ ଯେପରି ଖାଇ ଦିଅନ୍ତି, ପରେ ପାକୁଳି କରନ୍ତି; ଠିକ୍ ସେହିଭଳି ସଂସାରୀ ଲୋକମାନେ ଦିନତମାମ କୃଷି, ବ୍ୟବସାୟ ଆଦି କର୍ମ କରନ୍ତି, ଆଉ ଏକାନ୍ତରେ ଯେତେବେଳେ ବସନ୍ତି ସେମାନଙ୍କ ମୁଣ୍ଡରେ କେବଳ ସେଇ କଥାଗୁଡ଼ିକ ପଶିଯାଏ। କେତେବେଳେ ଯଦି ଭଜନ କରି ବସନ୍ତି, ହାତରେ ମାଳା ଧରିଥା'ନ୍ତି, ହେଲେ ମନ ହିସାବ ମିଶାଇବାରେ ଲାଗିଥାଏ। ଦିନରେ, ବ୍ୟବସାୟ ସମୟରେ ଯେଉଁ ହିସାବ ସେମାନେ ମିଶାଇ ପାରି ନ ଥାନ୍ତି, ଏକାନ୍ତରେ, ଭଜନ କରିବା ସମୟରେ ତାହା ସହସା ମିଶାଣ ହୋଇଯାଏ। ଯିଏ ଯେଉଁ କାର୍ଯ୍ୟ କରେ, ସେ ବୁଲାବୁଲି କରିବା ବେଳେ, ଉଠିବା ବସିବା ବେଳେ, ଚିନ୍ତନ ମନନ କରିବାରେ ଲାଗିଥାଏ। ଏହିଭଳି, ସାଧୁ ସବୁବେଳେ ଆତ୍ମତତ୍ତ୍ୱର ଚିନ୍ତନ କରୁଥାଏ। ସେ ବାହାରେ ଯେ କୌଣସି କାର୍ଯ୍ୟ କରୁଥାଉ ପଛେ, ଅନ୍ତରରେ ସେ ମଦନମୋହନଙ୍କ ମାଧୁରୀରେ ନିମଗ୍ନ ରହିଥାଏ। **ମନନଶୀଳ ହୋଇଥିବାରୁ ହିଁ ସାଧୁଙ୍କୁ ମୁନି ବୋଲି କୁହାଯାଏ।**

(୧୯) ପ୍ରମାଦ-ରହିତ— ମୃତ୍ୟୁ ସବୁବେଳେ ପ୍ରମାଦରୁ ହିଁ ହୋଇଥାଏ। କାଳ ସବୁବେଳେ ଅପ୍ରମତ୍ତ ରହିଥାଏ। ଏହି ଜୀବ ବିଷୟରେ ଫସିରହିଥିବାରୁ ପ୍ରମାଦୀ ହୋଇଯାଏ। ସେ ନିଜର ଲକ୍ଷ୍ୟକୁ ଭୁଲି, ସଂସାରରେ ଭ୍ରମୁଥାଏ। ସାଧୁ ପ୍ରମାଦ-ଶୂନ୍ୟ ହୋଇ ପ୍ରଭୁ ଚିନ୍ତନରେ ସମୟ ଅତିବାହିତ କରୁଥାଏ। ଏଣୁ, ମୃତ୍ୟୁ ବି ତାଙ୍କୁ ଡରେ। ମୃତ୍ୟୁର ମସ୍ତକରେ ପାଦରଖି ସେ ହରିପଦ ପ୍ରାପ୍ତ ହୋଇଯାଏ। ଏଣୁ, ସାଧୁଙ୍କ ପାଖରେ ପ୍ରମାଦର ଛାୟା ବି ପଡ଼ିପାରେ ନାହିଁ। ସେ ଅନବରତ ପ୍ରମାଦରହିତ ରହିଥାଏ।

(୨୦) ଗମ୍ଭୀରାତ୍ମା— ସାଧୁମାନେ ଖୁବ୍ ଗମ୍ଭୀର ସ୍ୱଭାବର ହୋଇଥା'ନ୍ତି। ତାଙ୍କଠାରେ କେତେ ତେଜ ତପ ଥାଏ, କେତେ ଗୁଣ ଥାଏ, ତାହା କେହି କଳନା କରିପାରନ୍ତି ନାହିଁ। ସେମାନେ ନିଜର ପ୍ରଶଂସା ନିଜେ କଦାପି କରନ୍ତି ନାହିଁ। ଯେଉଁମାନେ ନିଜ ତ୍ୟାଗର, ତପର, ସଦାଚାରର ପ୍ରଶଂସା ନିଜ ମୁଖରେ କରନ୍ତି ସେମାନେ କ୍ଷୁଦ୍ର, ନଗଣ୍ୟ– ଏମାନଙ୍କୁ ସାଧାରଣ ଲୋକମାନେ କଳନା କରିପାରନ୍ତି। ଗଙ୍ଗା ଆଦିରେ, ଯେଉଁଥିରେ ସୀମିତ ଜଳ ଥାଏ ତାହା ଖୁବ୍ ଗର୍ଜନ କରେ, ଯେଉଁଠାରେ ଅଗାଧ ଜଳ ଥାଏ ସେଠାରେ ଗମ୍ଭୀରତା ଆସିଯାଏ। ସେଠାରେ ଶବ୍ଦ ହୁଏ ନାହିଁ। ପ୍ରଶାନ୍ତ ହୋଇଯାଏ, ଅଚଞ୍ଚଳ ହୋଇଯାଏ।

(୨୧) ଧୈର୍ଯ୍ୟବାନ— ମଣିଷର ସ୍ୱଭାବ ଏପରି ଯେ ବିକାର ହେତୁ କିଛି ଗୋଟାଏ ସମ୍ମୁଖରେ ଉପସ୍ଥିତ ହୋଇଗଲେ ତା'ର ଚିତ୍ତ ଚଞ୍ଚଳ ହୋଇଯାଏ। କିନ୍ତୁ ସାଧୁଙ୍କ ସ୍ୱଭାବ ଏପରି ନୁହେଁ। ସୁନ୍ଦର ଠାରୁ ଅତ୍ୟଧିକ ସୁନ୍ଦର ଉପସ୍ଥିତ ହୋଇଗଲେ ବି ସେମାନଙ୍କ ନେତ୍ର ଚଞ୍ଚଳ ହୁଏ ନାହିଁ। ଅତ୍ୟଧିକ ସ୍ୱାଦିଷ୍ଟ ଖାଦ୍ୟଦ୍ରବ୍ୟ ତାଙ୍କ ପାଖରେ ଥୋଇଲେ ବି ସେମାନଙ୍କ ପାଟିରୁ ଲାଳ ବାହାରେ ନାହିଁ। ଅତି ଉନ୍ମାଦ ପ୍ରଦାୟିନୀ ସଙ୍ଗୀତର ଲଳିତ ମୂର୍ଚ୍ଛନା ଶୁଣି ମଧ୍ୟ ସେମାନଙ୍କର ଶ୍ରବଣେନ୍ଦ୍ରିୟରେ କୌଣସି ବିକାର ଜାତ ହୁଏ ନାହିଁ। ଅତି କୋମଳ ସ୍ପର୍ଶ ସେମାନଙ୍କର ଚର୍ମ ପାଇଲେ ବି ସେମାନଙ୍କ ମନ ଆଦୌ ବିଚଳିତ, ଚଞ୍ଚଳ ହୁଏ ନାହିଁ। ସାଧୁମାନେ ଧୀରତାର ସହିତ ନିଜ ସ୍ୱରୂପରେ ଅବସ୍ଥିତ ରହନ୍ତି।

(୨୨) ଷଡ୍‌ଗୁଣଜିତ୍— ସମସ୍ତଙ୍କ ଅନ୍ତଃକରଣରେ ଅନବରତ ତରଙ୍ଗ ଉଠୁଥାଏ। ଏହି ଢେଉମାନଙ୍କ ମଧ୍ୟରୁ ଛ'ଟି ହେଉଛି ମୁଖ୍ୟ। ଏହାକୁ ଷଡ୍-ଉର୍ମି କୁହାଯାଏ। ଭୋକ, ଶୋଷ, ଶୋକ, ମୋହ ଆଉ ଜନ୍ମ-ମରଣର ଚିନ୍ତା, ସାଧୁମାନେ ଏହି ଛ'ଟି ଉପରେ ବିଜୟ ପ୍ରାପ୍ତି ହୋଇଥା'ନ୍ତି। ସେମାନଙ୍କୁ ଏହି ଉର୍ମିଗୁଡ଼ିକ କ୍ଳେଶ ଦେଇପାରନ୍ତି ନାହିଁ।

(୨୩) ଅମାନୀ— ମଣିଷ ଯେଉଁଆଡ଼େ ଯାଏ ନିଜର ମାନ ଚାହେଁ। ବଡ଼ ବଡ଼ ଲୋକମାନେ ଏହି ଭୟରେ କେଉଁଆଡ଼େ ଯାଆନ୍ତି ନାହିଁ। ବାହାରକୁ ବାହାରନ୍ତି ନାହିଁ, କାହାକୁ ଦେଖା-ସାକ୍ଷାତ କରନ୍ତି ନାହିଁ— କାଳେ କେଉଁଠି ଆମର ଅପମାନ ହୋଇଯିବ। ସଭାକୁ ଯଦି ଯିବେ ତେବେ ତା' ପୂର୍ବରୁ ୧୦/୧୨ ଜଣଙ୍କୁ ଆଗରୁ ପଠାଇ ବ୍ୟବସ୍ଥା କରିଥିବେ, ଆସନ ସୁରକ୍ଷିତ ହୋଇଥିବ। ଯେଉଁଠାରେ ସମ୍ମାନର ସମ୍ଭାବନା ନ ଥାଏ, ସେଠାକୁ ଯାଇ ପଳାଇ ଆସନ୍ତି। ସମ୍ମାନ ଏପରି ଏକ ରୋଗ ଯାହା ମଣିଷଙ୍କୁ ସେମାନଙ୍କର ଜ୍ଞାତସାରରେ ବନ୍ଦୀ କରିଦିଏ। ମଣିଷ ଖୋଲାଖୋଲି କାହାସଙ୍ଗେ ମିଶିପାରେ ନାହିଁ। ସ୍ୱଚ୍ଛନ୍ଦରେ ବିଚରଣ କରିପାରେ ନାହିଁ। ଇଚ୍ଛା ଅନୁସାରେ ହସ ଖୁସୀ କରିପାରନ୍ତି ନାହିଁ। ସବୁବେଳେ ଆଶଙ୍କିତ ଥାଆନ୍ତି। ସାଧୁମାନେ ମାନକୁ ଆଦୌ ପ୍ରଶ୍ରୟ ଦିଅନ୍ତି ନାହିଁ। ସେମାନେ ବାଳକଙ୍କ ଭଳି ଅମାନୀ ଭାବେ ସ୍ୱଇଚ୍ଛାରେ ବିଚରଣ କରୁଥା'ନ୍ତି। ଦଶ ପଚିଶଟା ଗାଳି ବି କେହି ତାଙ୍କୁ ଦେଲେ ସେମାନେ ହସି ଦିଅନ୍ତି। ଗାଳି ସେଇମାନଙ୍କୁ ଲାଗେ ଯେଉଁମାନେ ତାହା ସ୍ୱୀକାର କରନ୍ତି। ସାଧୁମାନେ କାହାର ବି ଗାଳିକୁ ସ୍ୱୀକାର କରନ୍ତି ନାହିଁ। କେହି ଆମକୁ ବିଷର

ଲଡ୍ଡୁ ଦିଅନ୍ତୁ ତାହା ଆମେ ସ୍ୱୀକାର କରି ଖାଇଲେ ନିଶ୍ଚୟ ମରିବା। ଆମେ ଯଦି ସ୍ୱୀକାର ନ କରୁ ତେବେ ଶହ ଶହ ଲଡ୍ଡୁ ଥାଇ ସୁଦ୍ଧା ଆମର କିଛି ଅନିଷ୍ଟ କରିପାରିବ ନାହିଁ। ସେମାନଙ୍କୁ କେହି ମାନ ଦେଲେ ତାହା ସେମାନେ ସ୍ୱୀକାର କରନ୍ତି ନାହିଁ, କେହି ଉଚ୍ଚ ଆସନ ଦେଲେ ତହିଁରେ ବସିଯାଆନ୍ତି, କେହି ଭୂମିରେ ବସାଇ ଦେଲେ ଆନନ୍ଦରେ ବି ବସିଯାଆନ୍ତି। ଏହିଭଳି ସାଧୁଙ୍କ ସ୍ୱଭାବ ଅମାନୀ ହୋଇଥାଏ।

(୨୪) ମାନଦ— ସାଧୁ ସ୍ୱଂୟ ତ ଅମାନୀ ହୋଇଥା'ନ୍ତି, ଅନ୍ୟଙ୍କୁ କିନ୍ତୁ ସବୁବେଳେ ମାନ ଦେଉଥା'ନ୍ତି। ସେମାନେ କାହାରି ଅପମାନ କରନ୍ତି ନାହିଁ। ଅପମାନ କାହାକୁ କରିବା? ଚରାଚର ଜଗତକୁ ସେମାନେ ଇଷ୍ଟରୂପରେ ଦେଖନ୍ତି। ସେମାନେ ଯାହାକୁ ବି ଅପମାନ କରିବେ ତାହା ନିଜ ଇଷ୍ଟକୁ ହିଁ ଅପମାନ ଦେବା ଭଳିଆ ହେବ। ତେଣୁ, ସେ ସମସ୍ତଙ୍କୁ ସମ୍ମାନ କରନ୍ତି। ସମସ୍ତଙ୍କୁ ସମ୍ମାନ ଦେଉଥିବାରୁ ସାଧାରଣ ଲୋକମାନେ ତାଙ୍କୁ ଛୋଟ ବୋଲି ମନେକରନ୍ତି। କିନ୍ତୁ ବାସ୍ତବରେ ସମସ୍ତଙ୍କୁ ମାନ ଦେବା ଲୋକ ସମସ୍ତଙ୍କଠାରୁ ବଡ଼ ହିଁ ହୋଇଥା'ନ୍ତି। କୃପଣ ଯେପରି କାହାରିକୁ ଧନ ଦିଏ ନାହିଁ, ସେହିଭଳି ଅଭିମାନୀ କାହାକୁ ହେଲେ ହୃଦୟର ସହିତ ଆଦର କରିପାରେ ନାହିଁ। ଉଦାରପୁରୁଷ ଦରିଦ୍ର କାଙ୍ଗାଳଙ୍କୁ ଧନ ଦିଏ। ଧନ ପାଇ ଦରିଦ୍ର ବଡ଼ ହେଲା ନା ଧନ ଦେଇ ଉଦାରପୁରୁଷ ବଡ଼ ହେଲା? ନେବା ଲୋକଠାରୁ ଦେବାଲୋକ ସବୁବେଳେ ବଡ଼ ହୋଇଥାଏ। ଏହି ଭଳି ଯିଏ ଅନ୍ୟଙ୍କୁ ମାନ ଦିଏ ସେ ନିଜର ମାନକୁ ବଢ଼ାଇଥାଏ, ନିଜେ ସମ୍ମାନନୀୟ ହୋଇଯାଏ। ଏଣୁ, ସାଧୁମାନେ ସମସ୍ତଙ୍କୁ ମାନ ଦେଇଥା'ନ୍ତି।

(୨୫) ସମର୍ଥ— ସାଧୁ ନିଜକୁ ଅସହାୟ ମନେକରେ ନାହିଁ। ଜଣେ ରାଜାର ପୁଅ, ଯଦିଓ ବୟସରେ ଅତି ସାନ, ତେବେ ବି ଯେ ଅତି ବଳବାନ ସିପାହୀ, ସେନାପତି ଆଉ ମନ୍ତ୍ରୀଙ୍କୁ ଯେଉଁ ଆଦେଶ ଦିଏ ତାହା ସେମାନେ ପାଳନ କରନ୍ତି। ତା'ର ନିଜପ୍ରତି ଏପରି ବିଶ୍ୱାସ ଥାଏ ଯେ ସେ ସମର୍ଥ ପିତାର ପୁତ୍ର, ମୋ ପାଖରେ ବି ସେହିଭଳି ସାମର୍ଥ୍ୟ ଅଛି। ଏଣୁ, ସେ କାହାକୁ ଡରେ ନାହିଁ। ସାଧୁଙ୍କର ସେହିଭଳି କାହାପ୍ରତି ଡର ନ ଥାଏ। ସେମାନେ ନିଜକୁ ସର୍ବ-ସମର୍ଥ ବୋଲି ମନେ କରୁଥାଆନ୍ତି।

(୨୬) ମୈତ୍ର— ସାଧୁମାନେ ଈର୍ଷା କରନ୍ତି ନାହିଁ। ସେମାନେ ସମସ୍ତଙ୍କୁ ଆଦର କରନ୍ତି। ସେମାନଙ୍କୁ ଯିଏ ଦେଖାକରେ, ସେମାନେ ତାଙ୍କୁ ନିଜର ମିତ୍ରବୋଲି ଭାବନ୍ତି। ସାଧୁଙ୍କୁ ଦେଖିଲେ କାହାର ଉଦ୍‌ବେଗ ଜାତ ହୁଏ ନାହିଁ। ସମସ୍ତେ ତାଙ୍କୁ ଶ୍ରଦ୍ଧା ଦୃଷ୍ଟିରେ ଦେଖନ୍ତି। ସାଧୁମାନେ ଖୋଲା ହୃଦୟରେ ସମସ୍ତଙ୍କ ସହିତ ମିଶନ୍ତି।

(୨୭) କରୁଣାମୟ— ସାଧୁଙ୍କ ହୃଦୟରେ କରୁଣା ପରିପୂର୍ଣ୍ଣ ହୋଇ ରହିଥାଏ। ଯେପରି ଗ୍ଲାସ୍‌ର ମଙ୍ଗ ପର୍ଯ୍ୟନ୍ତ କ୍ଷୀର ଭର୍ତ୍ତି ହେବାପରେ ତାହା ଉତୁରି ପଡ଼େ, ସେହିଭଳି ସାଧୁଙ୍କ ହୃଦୟରେ କରୁଣା ଓତପ୍ରୋତଃ ହେଉଥିବାରୁ ତାହା ଉଚ୍ଛୁଳି ପଡୁଥାଏ। ସେମାନଙ୍କର କରୁଣା ସୀମିତ ରହି ନ ଥାଏ। ସାଧୁଙ୍କ ଭଳି କାରୁଣିକ ସଂସାରରେ ଅନ୍ୟ କେହି ହୋଇପାରନ୍ତି ନାହିଁ। ସାଧୁ କରୁଣାର ମୂର୍ତ୍ତି ସଦୃଶ।

(୨୮) କବି— ସାଧୁ କବି ହୋଇଥା'ନ୍ତି। ଯେଉଁମାନେ କବିତା ଲେଖନ୍ତି କେବଳ ସେଇମାନଙ୍କୁ କବି କୁହାଯାଏ ନାହିଁ। ସମ୍ୟକ୍ ଜ୍ଞାନ-ମୁକ୍ତଙ୍କୁ କବି କୁହାଯାଏ।

ସାଧୁଙ୍କ ଜ୍ଞାନ ବିଶୁଦ୍ଧ। ସ୍ୱାର୍ଥ ପରମାର୍ଥରେ ତାଙ୍କର ସାମାନ୍ୟ ସନ୍ଦେହ ନ ଥାଏ। ସେମାନେ ବିଦ୍ୟା-ଅବିଦ୍ୟା, ଜ୍ଞାନ-ଅଜ୍ଞାନ, ବନ୍ଧନ-ମୁକ୍ତ, ସମସ୍ତର ରହସ୍ୟ ଜାଣିଥା'ନ୍ତି।''

ଭଗବାନ ଶ୍ରୀକୃଷ୍ଣଚନ୍ଦ୍ର ଉଦ୍ଧବଙ୍କୁ କହୁଛନ୍ତି—''ଏଇଭଳି ଏହି ଅଠେଇଶ ଗୁଣଯୁକ୍ତ ପୁରୁଷ ପ୍ରକୃତ ସାଧୁ ପଦବାଚ୍ୟ।''

ଉଦ୍ଧବ ପଚାରିଲେ, ''ଭଗବନ୍! ଆପଣ ଏ ସବୁ ସାଧାରଣ ସାଧୁଙ୍କ ଲକ୍ଷଣ କହିଲେ, କିନ୍ତୁ ମୁଁ ଆପଣଙ୍କଠାରୁ ସର୍ବଶ୍ରେଷ୍ଠ ସାଧୁଙ୍କ ଲକ୍ଷଣ ଜାଣିବାକୁ ଇଚ୍ଛା କରୁଛି।''

ଭଗବାନ ହସି ହସି କହିଲେ—''ସେ ହିଁ ସର୍ବଶ୍ରେଷ୍ଠ ସାଧୁ ଯିଏ ଅନନ୍ୟ ଭାବରେ ମୋତେ ଭଜନ କରୁଥାଏ। ଚାରିବର୍ଣ୍ଣକୁ ଓ ଚାରିଆଶ୍ରମକୁ ମୁଁ ହିଁ ସୃଷ୍ଟି କରିଛି। ବେଦ ହେଉଛି ମୋ' ବାଣୀ। ବେଦରେ ମୁଁ ଚାରି ବର୍ଣ୍ଣର ଚାରି ଆଶ୍ରମ ବିଷୟ ପୃଥକ୍ ପୃଥକ୍ ବର୍ଣ୍ଣନା କରିଛି। ବେଦରେ ମୁଁ ସ୍ପଷ୍ଟ ଭାବରେ କହିଛି ଯେ, ଏହି ଧର୍ମ ପାଳନ ଦ୍ୱାରା ଅମୁକ ଅମୁକ ଗୁଣ ହୋଇଥାଏ, ତ୍ୟାଗ କଲେ ଅମୁକ ଅମୁକ ଦୋଷ ହୋଇଥାଏ। କିନ୍ତୁ ଅନନ୍ୟ ଭଗବଦ୍‌ଭକ୍ତ, ଯିଏ ନିସ୍ତ୍ରୈଗୁଣ୍ୟ ହୋଇଯାଇଥିବେ, ତିନି ଗୁଣରୁ ଊର୍ଦ୍ଧ୍ୱକୁ ଉଠିଯାଇଥିବେ, ଯିଏ ଅନବରତ ମୋର ଭଜନ କୀର୍ତ୍ତନରେ ସ୍ମରଣରେ ଲାଗି ରହିଥିବେ ସେ ମୋ'ର ଭଜନ ମାଧମରେ ବର୍ଣ୍ଣାଶ୍ରମ ଧର୍ମକୁ ବି ଉପେକ୍ଷା କରିପକାଏ।''

ଏପରି କଥା ଶୁଣି ଉଦ୍ଧବ ପଚାରିଲେ, ''ପ୍ରଭୁ! ବର୍ଣ୍ଣାଶ୍ରମ ଧର୍ମକୁ ମୂର୍ଖ ପତିତ ବି ତ୍ୟାଗ କରିଦିଏ। ଯିଏ ଟିକିଏ ସୁଯୋଗ ପାଏ ସେ ବି କହିଦିଏ— 'ଲୋକା ନ ବେଦା ନ ସୁରା ନ ଯଜ୍ଞାଃ, ବର୍ଣ୍ଣାଶ୍ରମୋ ନୈକ କୁଳଂ ନ ଜାତି।' ସେମାନେ ସବୁ ଛାଡ଼ି ସର୍ବଭକ୍ଷୀ ହୋଇଯାଆନ୍ତି। ଯାହା ଇଚ୍ଛା ତାହା କରନ୍ତି। ସେମାନେ କ'ଣ ତା' ହେଲେ ଅନନ୍ୟ ଭକ୍ତ? ସେମାନେ ବି କ'ଣ ଆପଣଙ୍କୁ ପ୍ରାପ୍ତ ହୁଅନ୍ତି?''

ଭଗବାନ କହିଲେ, ''ନା, ନା। ସେମାନେ ସିଧା ସିଧା ନରକକୁ ଯାଆନ୍ତି। ସେଇ ପତିତମାନେ ବର୍ଣ୍ଣାଶ୍ରମ ଧର୍ମର ରହସ୍ୟ ଇ ବୁଝି ନଥା'ନ୍ତି। ମୁଁ କେବଳ ଏପରି ଅନନ୍ୟ ଭକ୍ତଙ୍କ କଥା କହୁଛି, ଯେଉଁମାନେ ଆଜିପର୍ଯ୍ୟନ୍ତ ବର୍ଣ୍ଣାଶ୍ରମଧର୍ମକୁ ସର୍ବୋତ୍ତମ ଭାବେ ବୁଝିଛନ୍ତି; କିନ୍ତୁ ଉପାସନା କରି କରି ମୋତେ ଧ୍ୟାନ କରି ଏପରି ତଲ୍ଲୀନ ହୋଇଯାଇଛନ୍ତି ଯେ, ସେମାନଙ୍କର ସନ୍ଧ୍ୟାପୂଜା, ଅଗ୍ନିହୋତ୍ର ପାଇଁ ମନେ ଇ ପଡ଼େ ନାହିଁ। ଯିଏ ଅହର୍ନିଶି ମୋର ଧ୍ୟାନରେ ତନ୍ମୟ ରହିଥାଏ, ଯେତେ ସାଧୁ ଅଛନ୍ତି ସମସ୍ତଙ୍କ ଭିତରେ ସେ ହୋଇଥାଏ ସର୍ବଶ୍ରେଷ୍ଠ। ସେ ମୋ ମହିମାକୁ ଜାଣିଥାଏ। ମୁଁ କେତେ କୃପାଳୁ, ଦୟାଳୁ ଆଉ ଭକ୍ତବତ୍ସଳ ତାହା ସେ ଉତ୍ତମ ରୂପେ ଜାଣିଥାଏ। ତେଣୁ ସେ ଲୋକଧର୍ମକୁ ଟିକିଏ ବୋଲି ଚିନ୍ତା କରେନାହିଁ। ମୋର ଧ୍ୟାନରେ ସେ ତନ୍ମୟ ରହିଥାଏ। ତା' ପାଇଁ ଆଉ କିଛି କର୍ତ୍ତବ୍ୟ ହୋଇ ରହେ ନାହିଁ।''

ଉଦ୍ଧବ କହିଲେ, ''ପ୍ରଭୁ! ଆପଣ କେତେ ମହାନ୍, କେତେ ବଡ଼, ଏ ସବୁ କଥା ଜାଣି ଯିଏ ଆପଣଙ୍କର ଅନନ୍ୟ ଉପାସନା କରେ ସେପରି ଅନନ୍ୟ ଭକ୍ତ ତ ନିଶ୍ଚିତ ପରମପଦର ଅଧିକାରୀ ହେବ; କିନ୍ତୁ ଯିଏ ଆପଣଙ୍କର ମହିମାକୁ ଜାଣନ୍ତି

ନାହିଁ, ସାଧାରଣ ଭାବେ ଶୁଣି ଆପଣଙ୍କୁ ଅନନ୍ୟ ଭାବରେ ଭଜନ କରୁଥା'ନ୍ତି ତା'ଙ୍କେ କେଉଁ ଗତି ହୁଏ ?''

ଭଗବାନ ହସି ହସି କହିଲେ, ''ସବୁ ଜାଣି ମୋତେ ଭଜନ କଲେ ଯେଉଁ ଗତି ପ୍ରାପ୍ତ ହୁଏ, ସେମାନଙ୍କୁ ବି ସେଇ ଗତି ମିଳେ। ମିଶ୍ରିକୁ ଜାଣି କି ଖାଅ ଅଥବା ଅଜଣାରେ, ତାହା ମିଠା ତ ନିଶ୍ଚୟ ଲାଗିବ ଇ ଲାଗିବ। ଅମୃତକୁ ଜାଣିକି ଖାଅ ଅଥବା ଅଜାଣତରେ, ତାହା ଅମର ନିଶ୍ଚୟ କରିବ। ବିଷକୁ ଜ୍ଞାତସାରରେ ଖାଅ ଅଥବା ଅଜ୍ଞାତସାରରେ 'ସେ ତ ତା'ର ପ୍ରଭାବ ଦେଖାଇବ। ଅଗ୍ନିକୁ ଜାଣିକି ଛୁଅଁ ଅଥବା ଅଜାଣତରେ, ତାହା ଫୋଟକା ନିଶ୍ଚୟ କରିବ। ଠିକ୍ ଏହିଭଳି ଅନନ୍ୟ ଭାବରେ ମୋ ଭଜନ, ମୋର ମହିମା ଜାଣିକି କର ବା ନ ଜାଣିକି କର, ପରମପଦର ନିଶ୍ଚୟ ଅଧିକାରୀ ହେବ। ଏତିକି ମନେରଖିବାକୁ ହେବ ଯେପରି ଅନ୍ୟ କାହାକୁ ଧ୍ୟାନ ନ କରାଯାଏ। ଭଜନ ଅନନ୍ୟ ଭାବରେ ହେଉଥିବା ଦରକାର। ଯେ ଏ ଭଳି ଭଜନ କରେ, ସେ ସବୁ ସାଧୁଙ୍କ ମଧ୍ୟରେ ଶ୍ରେଷ୍ଠ। ଏପରି ସ୍ଥିତି, ଭଗବଦ୍ ଧର୍ମ ପାଳନ କରି ମୋ ପୂଜା କଲେ ପ୍ରାପ୍ତ ହୁଏ।''

ଉଦ୍ଧବ ପଚାରିଲେ, ''ଭଗବନ୍! ଭଗବଦ୍ ଧର୍ମ କାହାକୁ କହନ୍ତି ? ଆପଣଙ୍କର କେଉଁ ପ୍ରକାର ପୂଜା କରିବା ଦ୍ୱାରା ଏପରି ସ୍ଥିତିରେ ପହଞ୍ଚି ହୁଏ ? କୃପାକରି ଭଗବତ୍ ଧର୍ମ ସମ୍ବନ୍ଧରେ କିଛି ନିରୂପଣ କରିବା ହୁଅନ୍ତୁ। ଆପଣଙ୍କ ଅନନ୍ୟ ଭକ୍ତ ଯେଉଁ ପ୍ରକାର କର୍ମ କଲେ ହୋଇପାରିବ କହିବା ହୁଅନ୍ତୁ।''

ଏପରି କଥା ଶୁଣି ଭଗବାନ କହିଲେ, ''ଠିକ୍ ଅଛି ଉଦ୍ଧବ! ଏବେ ମୁଁ ସେହି ଉପାୟ ସମ୍ବନ୍ଧରେ କହୁଛି ଯାହା କଲେ ଅନନ୍ୟ ଭକ୍ତି ପ୍ରାପ୍ତ ହେବ।''

ନୈମିଷାରଣ୍ୟନିବାସୀ ଶୌନକାଦି ମୁନିଗଣଙ୍କୁ ମହର୍ଷି ସୂତ କହୁଛନ୍ତି—''ହେ ମୁନିଗଣ! ଏବେ ଭଗବାନ ଯେଉଁଭଳି ଉଦ୍ଧବଙ୍କୁ ତାଙ୍କର ଅନନ୍ୟ ଭକ୍ତି ପ୍ରାପ୍ତ ହେବାର ଉପାୟ କହିବେ, ତାହା ମୁଁ ବର୍ଣ୍ଣନା କରୁଛି।''

### ଛପ୍‌ପୟ

ହୋବେ ସାଧୁ କୃପାଳୁ ତିତିକ୍ଷୁ ଦ୍ରୋହ ରହିତ ନିତ।
ସତ୍ୟଶୀଳ ସମଭାବ ହିତୈଷୀ ମୃଦୁଲ ଶୁଦ୍ଧଚିତ॥
କାମ ରହିତ ସଂଯମୀ ସଦାଚାରୀ ନିଷ୍କଞ୍ଚନ।
ନିସ୍ପୃହ ଯୁକ୍ତାହାର ଶାଂତଚିତ୍ତ ଶରଣାଗତଜନ॥
ଧୀର ଗମ୍ଭୀର ପ୍ରମାଦ ବିନୁ, ଷଡ୍‌ରିପୁଜିତ ଥିରଧୀ ମୁନୀ।
ମାନରହିତ ମାନଦ ସବହିଁ, ମିଲନସାର ସମରଥ ଗୁନୀ॥



# ସତ୍ସଙ୍ଗ ଓ ଭକ୍ତିଯୋଗ

ପ୍ରାୟେଣ ଭକ୍ତିଯୋଗେନ ସଦ୍‌ସଙ୍ଗେନ ବିନୋଦ୍ଧବ ।
ନୋପାୟୋ ବିଦ୍ୟତେ ସଧ୍ର୍ୟଙ୍ ପ୍ରାୟଣଂ ସତାମହମ୍ ।। ★

[ଶ୍ରୀଭା.୧୧ ସ୍କ.୧୧ଅ.୪୮.ଶ୍ଳୋକ]

**ଛପ୍‌ପୟ**

କରୁଣାମୟ କବି ହୋହିଁ ସାଧୁ ହରି ଭକ୍ତି ଦୃଢ଼ାବେଂ ।
ଜୋ ଶୁଭ ସାଧନ କରେଂ ଭକ୍ତି ତେ ପ୍ରଭୁ କୀ ପାବେଂ ।।
ପ୍ରଭୁ ପ୍ରତିମା ଅରୁ ସାଧୁ ଦରସ ପୂଜନ ପଦ ପରସନ ।
ସେବା ଇସ୍ତୁତି ବିନୟ ସହିତ ଗୁନ ନାମନି କୀର୍ତନ ।।
ଧ୍ୟାନ, ଦାସ୍ୟ ମମ ପର୍ବ ତିଥି, ଉତ୍ସବ ଗାୟନ ନୃତ୍ୟ ନିତ ।
କଥା ଶ୍ରବନ ଅରପନ ସକଲ, ମେରେ ହିତ ସବ କର ହିଁ ବ୍ରତ ।।

ଯେଉଁ ସବୁ କର୍ମରେ ଭଗବାନଙ୍କର ସ୍ମରଣ ହୋଇପାରେ, ଚିନ୍ତନ ହୋଇପାରେ, ନାମ-ଗୁଣ-କଥନ ହୋଇପାରେ, ସେ ସମସ୍ତ କର୍ମ ଭକ୍ତି ଅନ୍ତର୍ଗତ । 'ଭଜ' ହେଉଛି ଏକ ଧାତୁ, ଆଉ ଏହାର ଅର୍ଥ ହେଉଛି 'ସେବା କରିବା' । ଭଜନ, ଭକ୍ତି, ଅର୍ଚ୍ଚନା, ପୂଜା, ପରିଚର୍ଯ୍ୟା ତଥା ଉପାସନା ଏ ସବୁ ପର୍ଯ୍ୟାୟବାଚୀ ଶବ୍ଦ । ଯାହାଙ୍କର ସକଳ କର୍ମ ଶ୍ୟାମସୁନ୍ଦରଙ୍କ ନିମିତ୍ତ ହୋଇଥାଏ ସେଇ ବଡ଼ ଭାଗ୍ୟବାନ ଭଗବଦ୍‌ଭକ୍ତ ହୋଇଥା'ନ୍ତି ଏବଂ ତ୍ରିଭୁବନକୁ ପବିତ୍ର କରିଥା'ନ୍ତି ।

ମହର୍ଷି ସୂତ କହୁଛନ୍ତି, ହେ ମୁନିଗଣ ! ଭକ୍ତି ପ୍ରାପ୍ତ ହେବାର ଉପାୟ ଯେତେବେଳେ ଉଦ୍ଧବ ପଚାରିଲେ, ସେତେବେଳେ ଭଗବାନ୍ ତାଙ୍କୁ କହିଲେ, "ହେ ଉଦ୍ଧବ ! ମୋ ଭକ୍ତର ପ୍ରକାର ଭେଦ ଅଂସଖ୍ୟ, ତାହା ମୁଁ କେତେ ବର୍ଣ୍ଣନା କରିବି । ସଂକ୍ଷେପରେ ଏତିକିମାତ୍ର କହି ଦେଉଛି ଯେ, ଯେଉଁ ଯେଉଁ କାମ କରୁଥିବ, ମୋ ଆରାଧନା ନିମିତ୍ତ କରୁଥିବା ଦରକାର । ଯେଉଁ କର୍ମ କଲେ ସଂସାର ଭୁଲି ହୋଇଯାଏ, ମୋର ତଥା ମୋ ଭକ୍ତଙ୍କର ସ୍ମୃତି ହୋଇପାରେ, ସେ ସମସ୍ତ ହେଉଛି ମୋ ଭକ୍ତିର ସାଧନ ।"

ଉଦ୍ଧବ କହିଲେ, "ପ୍ରଭୁ ! ମୁଁ ଅତି ଅଜ୍ଞ । ମୋତେ ଆପଣ କେତେକ ସାଧନ ବତାଇ ଦିଅନ୍ତୁ, ଯାହା ମୁଁ ସବୁବେଳେ କରୁଥିବି ।"

---

★ ଆହେ ଉଦ୍ଧବ ଭକ୍ତିଯୋଗ । ଯେ ଅବା ସାଧୁ ଜନସଙ୍ଗ ।।
ଏ ବେନି ଉପାୟ ବିହୁନେ । ମୋତେ ନ ପା'ନ୍ତି ଏ ଭୁବନେ ।।
ପ୍ରାୟଶଃ ଯେଣୁ ଅତିଶୟ । ମୁଁ ସାଧୁମାନଙ୍କ ଆଶ୍ରୟ ।।

[ଭାଗବତ :ଜଗନ୍ନାଥ ଦାସ :୧୧ଶ ସ୍କନ୍ଧ]

ଭଗବାନ ହସିଲେ, ଏବଂ କହିଲେ, "ଉଦ୍ଧବ! ତୁମର ତ ସମସ୍ତ କାର୍ଯ୍ୟ ମୋ ନିମିତ୍ତ ହୋଇଥାଏ, ତୁମେ ତ ହେଉଛ ମୋର ବାହ୍ୟପ୍ରାଣ, ତୁମେ ଏହି ପ୍ରଶ୍ନ ଲୋକହିତ ନିମନ୍ତେ ପଚାରୁଛ। ଠିକ୍ ଅଛି, ତୁମକୁ କେତେକ ଉପାୟ କହୁଛି, ଶୁଣ।"

[୧(କ)] ଦର୍ଶନ— ଭକ୍ତିର ପ୍ରଥମ ସୋପାନ ହେଉଛି ମୋର କୌଣସି ମନ୍ଦିରକୁ ଯାଇ ମୋ-ଅର୍ଚ୍ଚନା ବିଗ୍ରହକୁ ଦର୍ଶନ କରିବା ତଥା ମୋ ଭକ୍ତଙ୍କୁ ଦର୍ଶନ କରିବା। ମନ୍ଦିରମାନଙ୍କରେ ମୋର ଯେଉଁ ମନୋହର ମୂର୍ତ୍ତି ସବୁ ଅଛି, ସେ ସମସ୍ତ ହେଉଛି ଭଗବାନଙ୍କର ରୂପ। କଥା ହେଉଛି, ରାଜା ତ୍ରିଶଙ୍କୁ ଯେତେବେଳେ ସଶରୀର ସ୍ୱର୍ଗକୁ ଯିବାପାଇଁ ଇଚ୍ଛା କଲେ, ସେତେବେଳେ ବିଶ୍ୱାମିତ୍ର ବଶିଷ୍ଠଙ୍କଠାରୁ ଭର୍ତ୍ସନା ପାଇ ତାଙ୍କ ହାତରେ ଯଜ୍ଞ କରାଇଲେ। ସେହି ଯଜ୍ଞକୁ କୌଣସି ଋଷି, ମୁନି ତଥା ଦେବତା ଆସି ନ ଥିଲେ। କିନ୍ତୁ ଅଭିଶାପ ଭୟରେ ମୁନି ଋଷିମାନେ ପଛରେ ଆସିଲେ ସତ ମାତ୍ର ଦେବତାମାନେ ତେବେ ବି ଆସିଲେ ନାହିଁ। ବିଶ୍ୱାମିତ୍ର ତାଙ୍କ ତପର ପ୍ରଭାବରୁ ତ୍ରିଶଙ୍କୁଙ୍କୁ ସ୍ୱର୍ଗକୁ ପଠାଇଦେଲେ। ଦେବତାମାନେ ତାଙ୍କୁ ସ୍ୱର୍ଗରୁ ଧକ୍କା ଦେଇ ବାହାର କରିଦେଲେ। ଏବେ ସେ ଚିତ୍କାର କରିବାରେ ଲାଗିଲେ। ବିଶ୍ୱାମିତ୍ର ମନ୍ତ୍ର ପ୍ରଭାବରେ ତାଙ୍କୁ ମଝିରେ, ଅଧା ସ୍ୱର୍ଗରେ ଅଟକାଇ ଦେଲେ ସତ, ହେଲେ ଏଥିରେ ବିଶ୍ୱାମିତ୍ରଙ୍କ କ୍ରୋଧର ସୀମା ରହିଲା ନାହିଁ। ସେ ଭାବିବାରେ ଲାଗିଲେ, 'ଏଇ ଦେବତାମାନେ ମୋ ତପର ପ୍ରଭାବ ଜାଣିନାହାନ୍ତି। ମୁଁ ନୂତନ ସୃଷ୍ଟି ସଂରଚନା କରିଦେବି। ନୂଆ ଇନ୍ଦ୍ର, ନୂଆ କରି ଦେବତାଙ୍କୁ ସୃଷ୍ଟି କରିବି। ମୁଁ ନୂତନ ସୃଷ୍ଟି କରିବି। ସ୍ତ୍ରୀମାନେ ସନ୍ତାନ ପ୍ରସବ ନ କରି ସୁଦ୍ଧା ବୃକ୍ଷରେ ଫଳ ଧରିବା ଭଳି ସନ୍ତାନ ସଂଲଗ୍ନ କରିଦେବି" ଏପରି ଚିନ୍ତାକରି ସେ ଶ୍ରୀଫଳ ନଡ଼ିଆ ସୃଷ୍ଟି କଲେ, ପଶୁଙ୍କ ମଧ୍ୟରେ ଓଟ ସୃଷ୍ଟି କଲେ, ଅନ୍ନ ମଧ୍ୟରୁ ମକ୍କା ସୃଷ୍ଟି କଲେ, ନୂତନ ଦେବତା, ନୂତନ ସପ୍ତର୍ଷି, ନୂତନ ନୂତନ ଲୋକପାଳ ସୃଷ୍ଟି କରିଦେଲେ। ତାଙ୍କର ଏପରି କୃତ୍ୟ ଦେଖି ଦେବତାମାନେ ଡରିଗଲେ। ସେମାନେ ଭଗବାନଙ୍କ ପାଖକୁ ଦୌଡ଼ିଲେ। ଭଗବାନଙ୍କୁ ସବୁକଥା କହିଲେ। ଭଗବାନ ସକଳ ଦେବତାଙ୍କୁ ସାଙ୍ଗରେ ଧରି ବିଶ୍ୱାମିତ୍ରଙ୍କ ପାଖକୁ ଆସିଲେ। ଏବଂ କହିଲେ, 'ହେ ମୁନିପୁଙ୍ଗବ! ଆପଣ ଏପରି କ'ଣ କରୁଛନ୍ତି? ଗୋଟିଏ ସୃଷ୍ଟି ଭିତରେ ଆପଣ ଆଉ ଏକ ସୃଷ୍ଟି ସଂରଚନା କାହିଁକି କରୁଛନ୍ତି?'

ମହର୍ଷି ବିଶ୍ୱାମିତ୍ର କହିଲେ, "ପ୍ରଭୁ! ସୃଷ୍ଟି ସଂରଚନା ନ କରି ଆଉ କ'ଣ କରିଥା'ନ୍ତି? ମୋ କଥା କେହି ଶୁଣୁ ନାହାନ୍ତି। ମୁଁ ତ୍ରିଶଙ୍କୁର ଯଜ୍ଞ କଲି। ଅଭିମାନରେ ଦେବତାମାନେ ଆସିଲେ ନାହିଁ। ମୁଁ ତାଙ୍କୁ ସ୍ୱର୍ଗକୁ ପଠାଇଲି। ଦେବତାମାନେ ତାଙ୍କୁ ଧକ୍କାମାରି ତଡ଼ି ଦେଲେ। ତେଣୁ, ନୂଆ ସୃଷ୍ଟି କରିନଥା'ନ୍ତି ତ ଆଉ କ'ଣ କରିଥା'ନ୍ତି?

ମହର୍ଷି ବିଶ୍ୱାମିତ୍ରଙ୍କଠାରୁ ଏପରି କଥା ଶୁଣି ଭଗବାନ ହସିବାରେ ଲାଗିଲେ। ଆଉ କହିଲେ, "ମୁନିଶ୍ରେଷ୍ଠ! ତୁମେ ଭାରି ସାଦାସିଧା ଲୋକ। ଯେଉଁ ରାଜା ଗୁରୁଙ୍କ ଅଭିଶାପ ପାଇ ଚଣ୍ଡାଳ ହୋଇଯାଇଛି ସିଏ ସ୍ୱର୍ଗକୁ କିପରି ଯାଇପାରିବ? ପୁଣି ସଶରୀର ସ୍ୱର୍ଗକୁ ତ କେହି ଯାଇପାରନ୍ତି ନାହିଁ!"

ବିଶ୍ୱାମିତ୍ର ଗମ୍ଭୀର ହୋଇଗଲେ। ସେ କହିଲେ, "ପ୍ରଭୁ! ଯାହା ହେଉ ପଛେ, ମୋର ଏଇ ହଠ ସ୍ୱୀକାର କରିବାକୁ ହେବ।"

ଭଗବାନ ସ୍ମିତ ହାସ୍ୟ ପ୍ରକାଶ କରି କହିଲେ, ''ହଉ! ଯାହା ହେବାର ତ ହୋଇଗଲାଣି। ତ୍ରିଶଙ୍କୁ ଅଧା ସ୍ୱର୍ଗରେ ଝୁଲୁଛି। ତା' ପାଇଁ ସେଠାରେ ଆମେ ସ୍ୱର୍ଗଟିଏ କରିଦେଉଛୁ। ତୁମେ ଆଉ ହଠ କର ନାହିଁ, କି ସୃଷ୍ଟି ନିର୍ମାଣ କରନାହିଁ।''

ବିଶ୍ୱାମିତ୍ର ଦୁଇ ହାତଯୋଡ଼ି ବିନୟର ସହିତ କହିଲେ, ''ଭଗବନ୍! ମୁଁ ଏତେ ଯେଉଁ ଦେବତାଙ୍କୁ ସୃଷ୍ଟି କରିଦେଇଛି ସେମାନେ ଏବେ କ'ଣ କରିବେ?''

ଭଗବାନ କହିଲେ, ''ସେମାନଙ୍କର ବି ମୁଁ ବ୍ୟବସ୍ଥା କରିଦେଉଛି। ଯେଉଁ ଲୋକମାନେ ସ୍ୱର୍ଗକୁ ଯାଇ ଦେବତାଙ୍କୁ ଦର୍ଶନ କରି ନ ପାରିବେ, ସେହି ଲୋକମାନେ ଯେଉଁ ଦେବତାଙ୍କର ପ୍ରତିମା ତିଆରିକରି ସେମାନଙ୍କୁ ବିଧିବତ୍ ପ୍ରତିଷ୍ଠା କରିବେ, ସେହି ଦେବଗଣ ସେହି ସେହି ପ୍ରତିଷ୍ଠିତ ପ୍ରତିମାରେ ନିତ୍ୟନିବାସ କରୁଥିବେ। ସେଇ ପ୍ରତିଷ୍ଠିତ ପ୍ରତିମାଙ୍କୁ ଦର୍ଶନ କଲେ ସାକ୍ଷାତ ଦେବତାଙ୍କୁ ଦର୍ଶନ କରିବାର ଫଳ ପାଇବେ। ମୁଁ ବି ଅର୍ଚ୍ଚାବତାର ବିଗ୍ରହରେ ନିତ୍ୟ ପୃଥିବୀରେ ରହିବି। ମନ୍ଦିରରେ ମୋର ଯେଉଁ ପ୍ରତିମା ସ୍ଥାପିତ ହେଉଥିବ ତହିଁରେ ମୁଁ ସଦା ନିବାସ କରୁଥିବି।''

ସେହି ଦିନଠାରୁ ଭଗବାନଙ୍କର ଏକ ଅବତାର ଅର୍ଚ୍ଚନ-ବିଗ୍ରହ ବୋଲି ପରିଗଣିତ ହେଉଛି। ବଡ଼ ବଡ଼ ଧାମରେ ଭଗବାନ ନିତ୍ୟ ନିବାସ କରୁଥା'ନ୍ତି। ମନ୍ଦିର ନିର୍ମାଣ କରି ଯିଏ ଭଗବାନଙ୍କର ଅଥବା ଅନ୍ୟ ଦେବତାଙ୍କର ବିଗ୍ରହ ସ୍ଥାପିତ କରନ୍ତି ଭଗବାନ ଆସି ସେଥିରେ ରୁହନ୍ତି। ଏଣୁ, ମନ୍ଦିରକୁ ଯାଇ ଭଗବାନଙ୍କର ଅର୍ଚ୍ଚନ ବିଗ୍ରହଙ୍କୁ ପ୍ରତିଦିନ ଦର୍ଶନ କରିବା ଉଚିତ। ଏପରି କଲେ ଭକ୍ତି ବଢ଼େ।

[୧(ଖ)] ସାଧୁ ଦର୍ଶନ— ଭଗବାନଙ୍କର ଦୁଇଟି ପ୍ରତିମା: ପ୍ରଥମଟି ଅଚଳ ପ୍ରତିମା, ଯାହା ମନ୍ଦିରରେ ସ୍ଥିର ରହିଥାଏ; ଆଉ ଦ୍ୱିତୀୟ ହେଉଛି ଚଳନ୍ତି ପ୍ରତିମା ଯାହା ଭଗବଦ୍‌ଭକ୍ତ ସାଧୁ ରୂପରେ ସଂସାରରେ ବିଚରଣ କରୁଥା'ନ୍ତି। ଯିଏ ଭଗବାନଙ୍କର ମନ୍ଦିରରେ ପ୍ରତିଷ୍ଠିତ ପ୍ରତିମାକୁ ପ୍ରେମପୂର୍ବକ ପୂଜା କରୁଥାଏ, କିନ୍ତୁ ଚଳ ପ୍ରତିମା, ସାଧୁ ସନ୍ଥଙ୍କୁ ପୂଜା କରେ ନାହିଁ, ତାକୁ ପ୍ରାକୃତ ଭକ୍ତ କୁହାଯାଏ। ଅର୍ଥାତ୍ ନୀଚ, ଇତର, ନିମ୍ନଧରଣ ଭକ୍ତ କୁହାଯାଏ। ଏଣୁ, ଭଗବାନଙ୍କର ଅର୍ଚ୍ଚନ ବିଗ୍ରହ ଆଉ ସାଧୁ ସନ୍ଥଙ୍କ ମଧ୍ୟରେ ଟିକିଏ ବୋଲି ଭେଦଭାବ ନ ରଖିବା ଉଚିତ। ଦୁହିଁଙ୍କଠାରେ ସମାନଭାବ ରଖି ଦୁହିଁଙ୍କ ଦର୍ଶନ କରୁଥିବା ଉଚିତ। ଭଗବାନଙ୍କଠାରୁ ଭଗବଦ୍‌ଭକ୍ତ ବଡ଼ ହୋଇଥାଏ। ସଂସାରରେ ବିଚରଣ କରୁ କରୁ ଯେତେବେଳେ ପୁରାତନ ପୁଣ୍ୟ ଉଦୟ ହୁଏ, ସେତେବେଳେ ସାଧୁ-ସନ୍ଥଙ୍କ ଦର୍ଶନ ମିଳେ। ଯାହାର ସାଧୁ ଦର୍ଶନ ହୋଇଗଲା, ତାଙ୍କ ପ୍ରତି ଶ୍ରଦ୍ଧା ହୋଇଗଲା, ସେ ତ ତରିଗଲା, ଉଦ୍ଧାର ପାଇଗଲା!

ଥରେ ଜଣେ ସାଧୁ ଗୋଟିଏ ବୃକ୍ଷମୂଳରେ ବସିଥିଲେ। ବର ବେଶରେ ଜଣେ ପାଲିଙ୍କିରେ ବସି ବିବାହ ନିମନ୍ତେ ଯାଉଥିଲା। ସାଧୁଙ୍କୁ ଶାନ୍ତ ଭାବରେ ଏକାନ୍ତରେ ବସିଥିବା ଦେଖି ତା'ର ତାଙ୍କୁ ଦର୍ଶନ କରିବାକୁ ଇଚ୍ଛା ହେଲା। ପାଲିଙ୍କି ରଖି ସେ ସାଧୁଙ୍କୁ ଦର୍ଶନ କରିବାକୁ ଗଲା। ତା'ର ଭାଗ୍ୟ ଉଦୟ ହୋଇଗଲା। ସଂସାରରୁ ପାରିହେବା ନିମନ୍ତେ ତା'ର ସମୟ ଆସିଗଲା। ଦର୍ଶନ କରିବା କ୍ଷଣି ସଂସାର ପ୍ରତି ତା'ର ବୈରାଗ୍ୟ ଆସିଗଲା। ବରବେଶ, ଲୁଗାପଟା ଆଦି ବାହାର କରିପକାଇ ସେ

ସାଧୁଙ୍କ ସାଙ୍ଗରେ ରହିବାରେ ଲାଗିଲା। ପରିଣାମତଃ ସେ ବି ଜଣେ ମହାନ୍ ସାଧୁ ହୋଇଗଲା। କହିବାର ତାତ୍ପର୍ଯ୍ୟ ହେଉଛି, ସାଧୁ ଦର୍ଶନ କେଭେଁ ବି ବ୍ୟର୍ଥ ହୁଏ ନାହିଁ। କାହାକୁ କାହାକୁ ତତ୍‌କ୍ଷଣ ଫଳପ୍ରାପ୍ତ ହୋଇଥାଏ, କାହାକୁ କାହାକୁ ଟିକିଏ ବିଳମ୍ବରେ।

(୨) ସ୍ପର୍ଶ-ପୂଜନ:— ମୋର ଉଭୟ ପ୍ରତିମାଙ୍କୁ ସ୍ପର୍ଶ କରିବାରେ, ଆଉ ପୂଜା କରିବାରେ ଭକ୍ତି ବଢ଼େ। ଶାଳଗ୍ରାମ ତଥା ମୋର ଅନ୍ୟ ପ୍ରତିମା, ତ... ପୂଜା-ଦେବତାଙ୍କୁ ଛୁଇଁଲେ, ତଥା ସାଧୁ-ସନ୍ଥଙ୍କ ଚରଣ ସ୍ପର୍ଶ କଲେ ଭକ୍ତି ବଢ଼େ। ମନୁଷ୍ୟଙ୍କର ସର୍ବାଙ୍ଗରେ ଯେତେବେଳେ ସମସ୍ତ ଦେବତା ବସିଗଲେ, ପ୍ରତ୍ୟେକ ଅଙ୍ଗର ଅଧିଷ୍ଠାତୃ ଦେବତା ହୋଇ ଯିବାପରେ ଭଗବାନ ବିଷ୍ଣୁ ଆସିଲେ। ସେତେବେଳେ ସମସ୍ତ ଦେବତା କହିଲେ, "ପ୍ରଭୁ! ଆପଣ ମୁଣ୍ଡ ଉପରେ ବିରାଜମାନ କରନ୍ତୁ।"

ଭଗବାନ ଏପରି କଥା ଶୁଣି କହିଲେ, "ନାଇଁ ନାଇଁ। ମୁଁ ତ ଚରଣ ପ୍ରଦେଶରେ ରହିବି। ସେଇଠି ବସି ସମସ୍ତଙ୍କର ପୂଜା ଗ୍ରହଣ କରିବି।" ସେହିଦିନଠାରୁ ଚରଣର ଅଧିଷ୍ଠାତୃ ଦେବ ଭଗବାନ ବିଷ୍ଣୁ ହୋଇଗଲେ। ସାଧୁ, ସନ୍ଥ, ବ୍ରାହ୍ମଣ ଓ ଗୁରୁଜନଙ୍କର ପାଦରେ ସେ ପ୍ରସନ୍ନତାର ସହିତ ରହିଥା'ନ୍ତି। ତେଣୁ ଯିଏ ଏଇମାନଙ୍କ ଚରଣ ସ୍ପର୍ଶ କରେ ତାକୁ ଭଗବାନଙ୍କର ସ୍ପର୍ଶର ଫଳ ମିଳେ। ଦେବତା, ଦ୍ୱିଜ, ଗୁରୁ, ବିଦ୍ୱାନ, ତଥା ମାତା, ପିତା, ଜ୍ୟେଷ୍ଠ ଭ୍ରାତା ଆଦି ନିଜର ପୂଜ୍ୟ ଲୋକଙ୍କର ଚରଣ ସ୍ପର୍ଶରେ ବି ଭକ୍ତି ବୃଦ୍ଧିହୁଏ।

(୩) ସେବା ଶୁଶ୍ରୁଷା:— ସ୍ନାନ, ପାଦ୍ୟ, ଅର୍ଘ୍ୟାଦି ଦ୍ୱାରା ଭଗବାନଙ୍କର ତଥା ଭଗବଦ୍‌ଭକ୍ତଙ୍କର ସେବା ଶୁଶ୍ରୁଷା କଲେ ବି ଭକ୍ତି ବଢ଼େ। ସଂସାରରେ ଏପରି କୌଣସି କାର୍ଯ୍ୟ ନାହିଁ ଯାହା ସେବା ଦ୍ୱାରା ସମ୍ଭବ ନ ହୁଏ। ସେବାରେ ସବୁ ମିଳିପାରେ। ଶବରୀ ସେବା ଦ୍ୱାରା ଇ ଭଗବଦ୍‌ପୂଜ୍ୟା ହୋଇଗଲା। ସେବା ଦ୍ୱାରା ପଥର ବି ତରଳି ଯାଏ, ପୁଣି ସହୃଦୟ ପୁରୁଷ ତଥା ଭଗବାନଙ୍କ ସମ୍ବନ୍ଧରେ ଅଧିକ କ'ଣ କହିବା ଆବଶ୍ୟକ!

(୪) ସ୍ତୁତି ତଥା ଗୁଣକର୍ମ କୀର୍ତ୍ତନ:— ସ୍ତୋତ୍ର ଦ୍ୱାରା ଭଗବାନ ତଥା ଭଗବଦ୍‌ଭକ୍ତଙ୍କୁ ବିନୀତ ଭାବରେ ସ୍ତୁତି କରିବା ଉଚିତ। ଭଗବାନଙ୍କର ଗୁଣାବଳୀ, ତାଙ୍କର କମନୀୟ କର୍ମରାଶି ତଥା ଶ୍ରୁତିମଧୁର ସୁନ୍ଦର ନାମରାଶିକୁ ନିତ୍ୟ ନିୟମପୂର୍ବକ କୀର୍ତ୍ତନ କରିବା ଦ୍ୱାରା ଭକ୍ତି ବଢ଼େ। ଏହା ବସ୍ତୁତଃ ସର୍ବଶ୍ରେଷ୍ଠ ଉପାୟ ଓ ସର୍ବଶ୍ରେଷ୍ଠ ସାଧନ। ଯାହାର ଗୁଣାବଳୀ ଆମେ କୀର୍ତ୍ତନ କରିବା, ତାଙ୍କର ସଂସ୍କାର ଆମ ହୃଦୟରେ ପ୍ରବେଶ କରିବ। ଯାହାଙ୍କ କର୍ମର ଚିନ୍ତନ ତଥା ଅନୁକରଣ ଆମେ କରିବା,ସେହି କର୍ମପ୍ରତି ଆମ ହୃଦୟରେ ସହଜ ଅନୁରାଗ ହୋଇଯାଏ। ଗଜ ବୁଡ଼ିଯାଉଥିବା ସମୟରେ ଶୁଣ୍ଢରେ କମଳପୁଷ୍ପ ଧରି ଭଗବାନଙ୍କୁ ସ୍ତୁତି କଲା, ଆଉ ସେଇଥିରେ ସେ ସଂସାର ସାଗରରୁ ତରିଗଲା। ଗୋପିକାମାନେ ଭଗବାନଙ୍କର ଗୁଣାବଳୀ ଆଉ କର୍ମମାନ କୀର୍ତ୍ତନ କଲେ। ଏଥିରେ ସେମାନେ ପରମପଦର ଅଧିକାରିଣୀ ହୋଇଗଲେ। ସ୍ତୁତି-କୀର୍ତ୍ତନ ଭକ୍ତି ବଢ଼ାଇବାର ଅପୂର୍ବ ସୁନ୍ଦର ଉପାୟ।

(୫) ଭଗବଦ୍ କଥାପ୍ରତି ଶ୍ରଦ୍ଧା :– ଭଗବାନଙ୍କର କଥା ପ୍ରତି ଶ୍ରଦ୍ଧା ରଖିବା ହେଉଛି ଭକ୍ତିର ସର୍ବପ୍ରଥମ ଆଉ ସବୁଠାରୁ ଅନ୍ତିମ ଉପାୟ। ସନ୍ଥଙ୍କୁ ଦର୍ଶନ କରିବାର ପରକ୍ଷଣରେ, ସର୍ବପ୍ରଥମ ଭଗବଦ୍ କଥା ଶୁଣିବାକୁ ମିଳେ, ଆଉ କଥା ଶୁଣି ଶୁଣି ଭକ୍ତିରେ ଶରୀର ଅନ୍ତ ହୋଇଯାଏ। ସେମାନେ କଥା ଶ୍ରବଣ କରି କରି ସମୟ ଅତିବାହିତ କରିଥା'ନ୍ତି। ମହାରାଜ ପରୀକ୍ଷିତ ଯେତେବେଳେ ଶୁଣିଲେ ଯେ ତାଙ୍କର ଆୟୁ ମାତ୍ର ସାତ ଦିନ ବାକି ଅଛି, ସେ ତାଙ୍କର ସର୍ବସ୍ୱ ତ୍ୟାଗକରି ଗଙ୍ଗାକୂଳକୁ ଚାଲିଗଲେ। ସେଠାରେ ଭଗବାନ ଶୁକଙ୍କ ଶ୍ରୀମୁଖରୁ ଭାଗବତୀ କଥା ଶୁଣି ଶୁଣି ସଂସାରରୁ ସବୁକାଳ ପାଇଁ ମୁକ୍ତ ହୋଇଗଲେ। ଏଣୁ, ଭକ୍ତି ପ୍ରାପ୍ତ ହେବାପାଇଁ ଯାହାର ଇଚ୍ଛାଥାଏ ସେ ନିୟମ ପୂର୍ବକ ପ୍ରତିଦିନ କଥା ଶ୍ରବଣ କରିବା ଉଚିତ।

(୬) ଭଗବଦ୍ ଧ୍ୟାନ :— ମୋ ଭଗବତ୍ ସ୍ୱରୂପରେ ନଖଠାରୁ ଶିଖା ପର୍ଯ୍ୟନ୍ତ ଏବଂ ଶିଖାଠାରୁ ନଖ ପର୍ଯ୍ୟନ୍ତ ସଂପୂର୍ଣ୍ଣ ଅଙ୍ଗକୁ ଧ୍ୟାନ କରିବା ଉଚିତ। ଧ୍ୟାନ ସେଇମାନେ କରିପାରନ୍ତି ଯେଉଁମାନଙ୍କର କିଛି ସମ୍ବନ୍ଧ ଥାଏ। ଭଗବାନଙ୍କ ସହିତ ଯେପରି ବି ସମ୍ବନ୍ଧ ହୋଇଯାଉ, ଯେଉଁ ଭାବରେ ହେଉଛି ହେଉ ପଛେ, ତାଙ୍କର ଧ୍ୟାନ ହୋଇ ପାରିଲେ, ତାରିବା ପାଇଁ ସେ ବାଧ୍ୟ ହୋଇଯାଆନ୍ତି। ଆମେ ଯାହାଙ୍କୁ ଅନବରତ ଧ୍ୟାନ କରିବା ସେ ଆମ ଆଡ଼କୁ ଆକର୍ଷିତ ହେବେ ନାହିଁ, ଏପରି ଆଦୌ ସମ୍ଭବ ନୁହେଁ। ଧ୍ୟାନ ଏପରି ଏକ ପ୍ରବଳ ଡୋରି ଯାହା ଧେୟକୁ ଧ୍ୟାତାଙ୍କ ପାଖକୁ ହଠାତ୍ ଟାଣି ଆଣେ। ବଂଶୀ-ଧ୍ୱନି ଶୁଣି ଗୋପିକାମାନେ ଯେତେବେଳେ ମୋ ପାଖକୁ ରାସସ୍ଥଳୀରେ ଆସି ପହଞ୍ଚିଗଲେ, ଆଉ ଫେରିଯିବା ପାଇଁ ମୁଁ ସେମାନଙ୍କୁ କହିଲି, ସେତେବେଳେ ଅତି କରୁଣ ସ୍ୱରରେ ଗୋପିକାମାନେ କହିଥିଲେ—"ହେ ପ୍ରାଣପ୍ରିୟ! ତୁମେ ଆମକୁ ନିଜର କରିଦିଅ। ଆମକୁ ପ୍ରତ୍ୟାଖ୍ୟାନ କର ନାହିଁ। ଆମକୁ ଆପଣାର କରିବାକୁ ତୁମେ ବାଧ୍ୟ। ଏହି ଶରୀରରେ ଯଦି ଆମକୁ ନିଜର ନ କର ତେବେ ଆମେ ଧ୍ୟାନ-ଧାରଣା କରି ତୁମ ପାଦତଳେ ସନ୍ନିଧି ପ୍ରାପ୍ତ ହୋଇଯିବୁ।" ଏହି ଭଳି ମୋ ଭକ୍ତି ନିମନ୍ତେ ଧ୍ୟାନ ବି ଉତ୍ତମ ସାଧନ।

(୭) ସର୍ବଲାଭୋପହରଣ :— ମଣିଷ ଯାହା ବି ପାଉ, ସମସ୍ତକୁ ମୋତେ ଅର୍ପଣ କରିଦେଉ। ନିଜର ବୋଲି କିଛି ନାହିଁ। ଅନ୍ନ ମିଳିଲେ ତାକୁ ସୁନ୍ଦର ରୀତିରେ ତିଆରି କରି ମୋ'ର ଭୋଗ କରିବା ଉଚିତ। ବଗିଚାରେ ଫଳ ହେଉଥିଲେ ତାହା ମୋତେ ଅର୍ପଣ କରିଦେବା ଉଚିତ। ସାରକଥା ହେଉଛି, ମୋତେ ସମର୍ପଣ ନ କରି ଜଳ ପାନ କରିବା ସୁଦ୍ଧା ଉଚିତ ନୁହେଁ। ଯିଏ ତା'ର ସର୍ବସ୍ୱ ଭଗବାନଙ୍କୁ ସମର୍ପଣ କରିଦିଏ ତା'ର କର୍ମ-ବନ୍ଧନ ରହେ ନାହିଁ।

ଜଣେ ବାଳକ-ଭକ୍ତ ଥିଲେ। ସେ ଯାହା ପାଉଥିଲେ ପ୍ରଥମେ ଭଗବାନଙ୍କୁ ଅର୍ପଣ କରିବା ପରେ ଖାଉଥିଲେ। ଦିନେ ସେ ରାସ୍ତାରେ ଯାଉଥିଲେ। ବରକୋଳି ପାଚି ଝୁଲୁଥିବାର ଦେଖିଲେ। ଆଉ ସେଇଟି ତୋଳି ଖାଇଦେଲେ। ହଠାତ୍ ତାଙ୍କର ମନେପଡ଼ିଲା ଯେ ସେ ଭଗବାନଙ୍କୁ ତାହା ଅର୍ପଣ କରି ନାହାନ୍ତି। ସେତେବେଳକୁ କୋଳି ଯାଇ କଣ୍ଠରେ ପହଞ୍ଚିଲାଣି। ଅନେକ ପ୍ରକାର ଚେଷ୍ଟା କଲେ। ହେଲେ କୋଳିଟି ବାହାରକୁ ବାହାରିଲା ନାହିଁ। ତେଣୁ ସେ ଗୋଟିଏ ଧାରୁଆ ଛୁରୀରେ ତଣ୍ଟିକୁ କାଟି

ଫଳକୁ ବାହାର କରିବାକୁ ଚେଷ୍ଟା କଲେ। ସେ ତଣ୍ଟିରେ ଛୁରୀ ଲଗାଇଛନ୍ତି ସହସା ସେଠାରେ ଭଗବାନ ପ୍ରକଟ ହୋଇଗଲେ। ତାଙ୍କର ସେପରି ସର୍ବଲାଭୋପହରଣରୂପୀ କର୍ମରେ ପରମ ସନ୍ତୁଷ୍ଟ ହୋଇ ଭଗବାନ ତାକୁ ନିଜ ଚରଣର ଦାସ କରିଦେଲେ। ସାରକଥା ହେଉଛି, ଭକ୍ତର ଏପରି ବୃତ୍ତି ହୋଇଯିବା ଉଚିତ ଯେ ସେ ପ୍ରତ୍ୟେକ କର୍ମ କରିବାପରେ ''ଶ୍ରୀକୃଷ୍ଣାର୍ପଣମସ୍ତୁ'' ବୋଲି କହିବ।

(୮) ଦାସ୍ୟ ଭାବରେ ଆତ୍ମସମର୍ପଣ :— ''ହେ ଉଦ୍ଧବ! ଶାନ୍ତ, ଦାସ୍ୟ, ସଖ୍ୟ, .ବାତ୍ସଲ୍ୟ ଓ ମଧୁର, ଏପରି ପାଞ୍ଚ ପ୍ରକାର ଭାବ ଅଛି ବୋଲି କୁହାଯାଏ। ଏ ସବୁଥିରେ ଦାସ୍ୟଭାବ ଓତପ୍ରୋତ। ଶାନ୍ତ ଭାବରେ ତ ସଂସାର ସଚ୍ଚିଦାନନ୍ଦସ୍ୱରୂପ ଦେଖାଯାଏ। କିନ୍ତୁ ଏଥିରେ ଦେଖିବା ଲୋକ ପୃଥକ୍ ଥାଏ। ଦାସ୍ୟ ଭାବରେ ନିଜକୁ ସେବକ ଓ ଇଷ୍ଟଙ୍କୁ ସ୍ୱାମୀ ବୋଲି ଭାବିବାକୁ ହୋଇଥାଏ। ବାତ୍ସଲ୍ୟରେ ଭଗବାନଙ୍କୁ ବାଳକ ଓ ନିଜକୁ ତାଙ୍କର ରକ୍ଷକ ବୋଲି ମାନିବାକୁ ହୋଇଥାଏ, ଯେପରି ମାତା-ପିତା ବାଳକର ରକ୍ଷଣା-ବେକ୍ଷଣ କରନ୍ତି। ମାତାପିତାମାନେ ବାଳକକୁ ଛୋଟପିଲା ବୋଲି ମାନନ୍ତି, କିନ୍ତୁ ଏଥିରେ ତାହାପ୍ରତି ଦାସ୍ୟଭାବ ରହିଥାଏ। ତାକୁ ଖୁସୀ ରଖିବା ପାଇଁ ଅତି ଛୋଟ ଛୋଟ କାମ ବି କରନ୍ତି। ତା'ର ସେବା ସେମାନେ ଗୌରବର ସହିତ କରିଥା'ନ୍ତି। ତା'ର ଲୁଗାପଟା ଧୋଇ ଦିଅନ୍ତି। ସକଳ ପ୍ରକାର ଛୋଟ ବଡ଼ କାମ କରନ୍ତି। ବାତ୍ସଲ୍ୟରେ ଦାସ୍ୟ ନିହିତ।

ଏହିଭଳି ସଖ୍ୟ ଭାବରେ ଇଷ୍ଟଙ୍କୁ ଯଦିଓ ନିଜର ସମାସ୍କନ୍ଧ ବୋଲି ମାନନ୍ତି, ତାଙ୍କୁ ପିଟାପିଟି ବି କରନ୍ତି, ତାଙ୍କ ସହିତ କଳିକଜିଆ ବି କରନ୍ତି; କିନ୍ତୁ ଦାସ୍ୟଭାବ ସେଥିରେ ବି ପ୍ରଚ୍ଛନ୍ନ ଥାଏ। ସଖା ନିମନ୍ତେ ପ୍ରାଣ ଦେଇଦେବା ପାଇଁ କୁଣ୍ଠିତ ହୁଅନ୍ତି ନାହିଁ।

ମଧୁର ଭାବ ତ ଦାସ୍ୟ ଭାବ ବିନା ହୋଇପାରେ ନାହିଁ। ସେଥିରେ ଦାସ୍ୟ ଭାବ ଶିଷ୍ଟାଚାର-ହୀନ ହୋଇଥାଏ। ଦୁହିଁଙ୍କ ହୃଦୟରେ ଦାସ୍ୟ ରହେ। ଏଇ ଦାସ୍ୟଭାବ ହିଁ ମଧୁର ରସର ଅଭିବୃଦ୍ଧି କରେ। ଏଣୁ, ଦାସ୍ୟ ଭାବରେ ଆତ୍ମସମର୍ପଣ କରିବା ହେଉଛି ସର୍ବଶ୍ରେଷ୍ଠ ସାଧନ।

(୯) ମୋ ଜନ୍ମ-କର୍ମର କଥନ :— ନିଜ ନିଜ ଭିତରେ କେତେବେଳେ ଯଦି କଥୋପକଥନ ହେବାକୁ ସୁଯୋଗ ମିଳେ ତେବେ ମୋ ଜନ୍ମ-କର୍ମ ବିଷୟରେ ହିଁ କଥାବାର୍ତ୍ତା ହେବା ଉଚିତ। ଯେଉଁ ନାମରେ ମୋ ଜନ୍ମ-କର୍ମର ସ୍ମୃତି ଥାଏ, ତାହାହିଁ କେବଳ ଉଚ୍ଚାରଣ କରିବା ଉଚିତ। ଯେପରି ନନ୍ଦ-ନନ୍ଦନ, ଯଶୋମତି-ତନୟ, ଦେବକୀନନ୍ଦନ, ବାସୁଦେବ, ମୁରାରୀ, ମୁରଳୀଧର, ଗିରିଧାରୀ, କେଶିହା, କଂସାରି, ମଧୁସୂଦନ, ଗୋବିନ୍ଦ, ତଥା ଅନ୍ୟାନ୍ୟ ନାମରେ ଉଚ୍ଚାରଣ କରିବା ଉଚିତ। ନିଜ ସନ୍ତାନଙ୍କର ବି ଏପରି ନାମ ରଖିବା ଉଚିତ।

(୧୦) ମମପର୍ବାନୁମୋଦନ :— ରାମ-ନବମୀ, ନୃସିଂହ-ଚତୁର୍ଦ୍ଦଶୀ, ଜନ୍ମାଷ୍ଟମୀ, ବଳଦେବ-ଜନ୍ମ, ପର୍ଶୁରାମ-ଜୟନ୍ତୀ, ବାମନ-ଦ୍ୱାଦଶୀ ତଥା ଅନ୍ୟାନ୍ୟ ପର୍ବରେ ବ୍ରତ ପାଳନ କରିବା ଉଚିତ। ଅନ୍ୟଙ୍କୁ ଏ ସମସ୍ତ ବ୍ରତ ପାଳନ କରିବା ପାଇଁ ପ୍ରେରଣା ଦେବା ଉଚିତ।

(୧୧) ଧାର୍ମିକ ଉତ୍ସବ :— ଭକ୍ତମାନଙ୍କୁ ଏକତ୍ରିତ କରି ମୋ ସମ୍ବନ୍ଧରେ ଉତ୍ସବ ପାଳନ କରୁଥିବା ଉଚିତ। ଦୂରଦେଶରୁ ଭକ୍ତିରସର ରସିକ ଭକ୍ତଙ୍କୁ ଆମନ୍ତ୍ରଣ କରିବା ଉଚିତ। ଭଗବାନଙ୍କ ସମ୍ମୁଖରେ ତାଙ୍କର ଯଶଗାନ କରାଇବା, ବାଜା ବଜାଇବା, ନୃତ୍ୟ କରାଇବା ଉଚିତ। ଆଉ ମଧ୍ୟ ଉତ୍ସବ ସମ୍ବନ୍ଧୀୟ ଲୀଳାଭିନୟ ଆଦି କରାଇବା ଉଚିତ। ଏ ଭଳି ଉତ୍ସବ କରିବାଦ୍ୱାରା ଲୋକଙ୍କଭିତରେ ଧାର୍ମିକଭାବର ସଞ୍ଚାର ହୋଇଥାଏ। ଏହି ପ୍ରଭାବ ଧୀରେ ଧୀରେ ଚିତ୍ତରେ ପଡ଼େ, ଆଉ ଏହି ସାଂସାରିକ କାର୍ଯ୍ୟରେ ବିମୁଖଭାବ ଆସି ଚିତ୍ତ ଭଗବଦ୍‌ସେବା ସମ୍ବନ୍ଧୀ କାର୍ଯ୍ୟରେ ଲାଗିଯାଏ।

(୧୨) ବାର୍ଷିକ ପର୍ବଯାତ୍ରା :— ମୋ ଧର୍ମ ଉପରେ ଯେଉଁ ସବୁ ବାର୍ଷିକ ଧର୍ମୋତ୍ସବ ହୁଏ, ଯେପରି ରାମ-ନବମୀରେ ଅଯୋଧ୍ୟାରେ, ଜନ୍ମାଷ୍ଟମୀରେ ବ୍ରଜରେ, ଏହିଭଳି ଅନ୍ୟ ପର୍ବ ତିଥିରେ ମୋ ସ୍ଥାନକୁ ଯାତ୍ରା କରାଯାଏ। ସେଠାକୁ ନିଜର ବନ୍ଧୁବାନ୍ଧବଙ୍କ ସହିତ ଯିବା ଉଚିତ, ପୂଜା ଅର୍ଚ୍ଚନା କରିବା ଉଚିତ, ସେ ସ୍ଥାନର ପରିକ୍ରମା କରିବା ଉଚିତ ଓ ସେଠାରେ ପ୍ରଚଳିତ ହେଉଥିବା ଲୌକିକ ବୈଦିକ କୃତ୍ୟ କରାଇବା ଉଚିତ।

(୧୩) ଦୀକ୍ଷା :— ମୋ ସମ୍ବନ୍ଧରେ ଦୀକ୍ଷା ଗ୍ରହଣ କରିବା ଉଚିତ। ଦୀକ୍ଷା ଦୁଇ ପ୍ରକାରର। ପ୍ରଥମତଃ, ବୈଦିକ ମନ୍ତ୍ରର ଓ ଦ୍ୱିତୀୟତଃ, ତାନ୍ତ୍ରିକ ମନ୍ତ୍ରର। ନିଜେ ଯେଉଁଥିପାଇଁ ଅଧିକାରୀ ହୋଇଥିବ, ଯେପରି ଯୋଗ୍ୟତା ହୋଇଥିବ, ଗୁରୁଦେବଙ୍କର ଆଜ୍ଞା ଯାହା ହୋଇଥିବ, ଶାସ୍ତ୍ର ମନ୍ତ୍ର ପାଇବା ଦୃଷ୍ଟିରେ ଯେପରି ଅଧିକାରୀ ହୋଇଥିବ, ସଦ୍‌ଗୁରୁଙ୍କଠାରୁ ମନ୍ତ୍ର ଦୀକ୍ଷା ଗ୍ରହଣ କରିବା ଉଚିତ। ଦୀକ୍ଷା ନେବାପରେ ମନ୍ତ୍ର ଜପକଲେ, ମନ୍ତ୍ର ଶୁଦ୍ଧି ହୁଏ। ଦୀକ୍ଷିତ ହୋଇଯିବା ପରେ ଦୃଢ଼ ବିଶ୍ୱାସ ହୋଇଯାଏ। ଯେପରି ଘରକୁ ସଜାତୀୟ ଜଣେ କୁମାରୀଙ୍କୁ ଆଣି ରଖିଲେ, ତାଙ୍କଠାରୁ ସନ୍ତାନ ଉତ୍ପନ୍ନ ହେଲେ ବି କେହି ତାଙ୍କୁ ପତ୍ନୀ କୁହନ୍ତି ନାହିଁ, ରକ୍ଷିତା ବୋଲି ହିଁ କହିଥା'ନ୍ତି; ଆଉ ପୁରୋହିତଙ୍କୁ ଡାକି ତାଙ୍କ ସହିତ ବିଧିବତ୍ ବିବାହ କରାଗଲେ, ସେ ଯେପରି ସଙ୍ଗେ ସଙ୍ଗେ ପତ୍ନୀ ହୋଇଯାଆନ୍ତି, ଦୁହିଁଙ୍କ ମଧ୍ୟରେ ଦୃଢ଼ ସଂସ୍କାର ହୋଇଯାଏ, ଆଉ ଦୁହେଁ ପତି-ପତ୍ନୀ ହୋଇ ଯାଆନ୍ତି। ଏଣୁ, ବୈଦିକ ମନ୍ତ୍ରର ଦୀକ୍ଷାର ବିଧାନ ଅଛି। ଦୀକ୍ଷା ନେବା ଅର୍ଥ ପୁନର୍ଜନ୍ମ ପାଇବା। ଯାହାଠାରୁ ମନ୍ତ୍ର ଦୀକ୍ଷା ନିଆଯାଏ, ଦୀକ୍ଷିତ ତା'ର ହୋଇଯାଏ।

(୧୪) ବ୍ରତଧାରଣ :— ଯେ କୌଣସି ବ୍ରତ-ନିୟମ ଧାରଣ କରାଯାଇ ପାରେ, କିନ୍ତୁ ତାହା ମୋ ନିମିତ୍ତ ହୋଇଥିବା ଆବଶ୍ୟକ। ମୋ ପର୍ବମାନଙ୍କରେ ବ୍ରତ ରଖିବା ଉଚିତ। ମୋତେ ପ୍ରାପ୍ତ ହେବାପାଇଁ ବିଶେଷ ବ୍ରତ ଗ୍ରହଣ କରିବା ଉଚିତ। ଅମୁକ ସମୟ ପର୍ଯ୍ୟନ୍ତ, ଅଥବା ଜୀବନର ଶେଷ ପର୍ଯ୍ୟନ୍ତ ଏହା ଖାଇବି ନାହିଁ, ଏହି କର୍ମ କରିବି ନାହିଁ, ଏହି ବସ୍ତୁର ବ୍ୟବହାର କରିବି ନାହିଁ— ଏପରି ବ୍ରତ ଧାରଣ କଲେ ମୋର ସ୍ମୃତି ସବୁବେଳେ ଦୃଢ଼ ହୋଇ ରହେ।

(୧୫) ଶ୍ରୀବିଗ୍ରହ ଶ୍ରଦ୍ଧା :— ମୋ ମନ୍ଦିରମାନଙ୍କର ଯେତେ ଅଧିକ ପ୍ରଚାର ପ୍ରସାର ହେବ, ସଂସାରରେ ମୋ ଯଶ ସେତେ ଅଧିକ ପ୍ରସାରିତ ହେବ, ମୋ ଭକ୍ତିର ବିସ୍ତାର ହେବ। ଏଣୁ, ମୋ ମନ୍ଦିର ନିର୍ମାଣ କରିବାକୁ ଯିଏ ଇଚ୍ଛା କରେ,

ମୋ ପ୍ରତିମା ସ୍ଥାପନ କରିବାକୁ ମନ କରେ ତାକୁ ସେପରି କର୍ମରେ ସହାୟତା କରିବା ଉଚିତ।

(୧୬) ମନ୍ଦିର ନିର୍ମାଣୋଦ୍ୟୋଗ :— ମୋର ମନ୍ଦିର ଯେଉଁଠାରେ ଜୀର୍ଣ୍ଣ ହୋଇଯାଇଥାଏ, ତା'ର ଜୀର୍ଣ୍ଣୋଦ୍ଧାର କରିବା ଉଚିତ। ନୂଆ ନୂଆ ମନ୍ଦିର ନିର୍ମାଣ କରିବା ପାଇଁ ଉଦ୍ୟୋଗ କରିବା ଉଚିତ। ମନ୍ଦିରର ଭଗବାନଙ୍କ ନିମିତ୍ତ ପୁଷ୍ପ ଲାଗି ଦେବା ଉଦ୍ଦେଶ୍ୟରେ ପୁଷ୍ପବାଟିକା କରିବା ଉଚିତ। ସେଥିରେ ସୁଗନ୍ଧିତ ପୁଷ୍ପ ବୃକ୍ଷର ସୁରକ୍ଷା କରିବା ଉଚିତ। ସେଥିରେ ସୁଗନ୍ଧିତ ପୁଷ୍ପ ଲଗାଇବା ଉଚିତ। ବଗିଚାରେ ଜଳ ଦେବା ଉଚିତ। ଫଳ ପୁଷ୍ପ ବୃକ୍ଷର ସୁରକ୍ଷା କରିବା ଉଚିତ। ପ୍ରତିଦିନ ଫଳଗଛ ମୋ ପାଇଁ ମାଗି ଲଗାଇବା ଉଚିତ। ଯେଉଁଠାରେ ଭଗବାନଙ୍କର ଉତ୍ସବ ହେଉଥାଏ, ଯେଉଁପୀଠରେ ନାନା ପ୍ରକାର କ୍ରୀଡ଼ା ଉତ୍ସବ ହେଉଥାଏ, ସେପରି ସ୍ଥାନରେ କ୍ରୀଡ଼ାଗୃହ ନିର୍ମାଣ କରିବା ଉଚିତ। ନିଜ ପାଖରେ ଯଥେଷ୍ଟ ଦ୍ରବ୍ୟ ଥିଲେ ଏ ସବୁ ନିଜେ କରିବା ଉଚିତ। ବିଶେଷ ଟଙ୍କା ନ ଥିଲେ ଭୀକ୍ଷା ସଂଗ୍ରହକରି, ଧନ ଏକତ୍ରିତ କରିବା ଉଚିତ। ସେଇ ସାର୍ବଜନୀକ ଅର୍ଥରେ ମନ୍ଦିର, ବନ-ଉପବନ କରିବା ଉଚିତ ଓ ଲୋକଙ୍କୁ ଏପରି କର୍ମରେ ନିୟୋଜିତ କରୁଥିବା ଉଚିତ।

(୧୭) ମନ୍ଦିର ସେବା :— ମୋର ମନ୍ଦିରକୁ ଯାଇ ଅଭିମାନ ତ୍ୟାଗପୂର୍ବକ ଛୋଟ ଛୋଟ କାମ କରିପକାଉଥିବା ଉଚିତ। ଭଗବାନଙ୍କ ଉଦ୍ଦେଶ୍ୟରେ କରାଯାଉଥିବା ସକଳ କର୍ମକୁ ସମାନ ଭାବୁଥିବା ଉଚିତ। ମୋ ନିମିତ୍ତ ଯେ କୌଣସି କାର୍ଯ୍ୟ କରାଗଲେ ତାହାହିଁ ମହାନ୍ ହୋଇଥାଏ। ଏଣୁ, ସମସ୍ତ ସେବାକୁ ଯଥାଶକ୍ତି ଯଥାସାମର୍ଥ୍ୟ ନିଜେ ହିଁ କରୁଥିବା ଉଚିତ। ମନରେ ସଙ୍କୋଚ କି ଲଜ୍ଜ୍ୟା ରଖିବା ଉଚିତ ନୁହେଁ।

(୧୮) ନିର୍ମାନତା ଓ ନିଷ୍କପଟତା :— ମାନ ହୁଏ ଅଭିମାନରୁ, ଆଉ କପଟ ହୁଏ ଦମ୍ଭରୁ। ଯେ କ୍ଷୁଦ୍ର ସେ ହିଁ ଦମ୍ଭକରେ। ଯିଏ ବାସ୍ତବରେ ସାଧୁ ନୁହେଁ, ହେଲେ ସାଧୁର ବେଶ ଧାରଣ କରିଥାଏ, ମିଛ କଥା କହି ଲୋକଙ୍କ ମନକୁ ନିଜପ୍ରତି ଆକର୍ଷିତ କରେ, ତା'ର ସବୁ ବ୍ୟବହାର କପଟପୂର୍ଣ୍ଣ ହୋଇଥାଏ। ସେ ପରମାର୍ଥ କଥା ତ କହେ, କିନ୍ତୁ ତା' ମନରେ ସ୍ୱାର୍ଥ ପରିପୂର୍ଣ୍ଣ ହୋଇ ରହିଥାଏ। ଯାତ୍ରୁ ସ୍ୟାତ୍ରୁ କଥା କହି ଲୋକଙ୍କଠାରୁ ଧନ ଲୁଣ୍ଠନ କରୁଥାଏ। ଏପରି ଦାମ୍ଭିକ କଦାପି ମୋ ଭକ୍ତ ହୋଇପାରନ୍ତି ନାହିଁ। ମୋ ଭକ୍ତମାନଙ୍କଠାରେ ମାନବୀୟ ଇଚ୍ଛା ତ ଆଦୌ ନଥାଏ। ସେ ଯେତେବେଳେ ସାରା ଜଗତକୁ ମୋ ସ୍ୱରୂପ ବୋଲି ଅବବୋଧ କରୁଛି, ସେପରି ସ୍ଥଳରେ ସେ 'ମାନ'ର ଇଚ୍ଛା ରଖିବ କାହିଁକି? ସେ ତ ସ୍ୱୟଂ ଚରାଚର ଜଗତକୁ ମାନ କରିବ। ସଂସାରରେ ଏପରି କୌଣସି କଥା ନାହିଁ ଯାହାକୁ ସେ ଲୁଚାଇବ। କପଟ କରିବାରେ ତାକୁ କ'ଣ ମିଳିବ? ପୁଣି କପଟ କରିବ ଯଦି କାହା ସହିତ କପଟ କରିବ? ସେ ଜାଣିଥାଏ ଯେ ତା'ର ସ୍ୱାମୀ ତା'ର ସବୁକଥା ଦେଖୁଛନ୍ତି। ସେ ତ ସର୍ବଘଟରେ ବିଦ୍ୟମାନ। ତେଣୁ ମୋ ଭକ୍ତ ନିର୍ମାନ ଓ ନିଷ୍କପଟ ହୋଇଥାଏ।

(୧୯) ଆତ୍ମ-ପ୍ରଶଂସା ଅଭାବ :— ସାଧାରଣ ଲୋକଙ୍କ ସ୍ୱଭାବ ଏପରି ଯେ ଯଦି କିଛି ଭଲକାମ କରିପକାନ୍ତି ତେବେ ପ୍ରଶଂସା ପାଇବା ଉଦ୍ଦେଶ୍ୟରେ ଚାରିଆଡ଼େ

କହି ବୁଲନ୍ତି। ନିଜର ପ୍ରଶଂସା ନିଜେ ଗାନ କରି ଖୁବ୍ ଖୁସି ହେଉଥା'ନ୍ତି। କିନ୍ତୁ ଆତ୍ମ ପ୍ରଶଂସା କରିବା ଦ୍ୱାରା ପୁଣ୍ୟ କ୍ଷୀଣ ହୋଇଯାଏ।

ମହାରାଜ ଯଯାତି ନିଜର ପୁଣ୍ୟର ପ୍ରଭାବରେ ଅନେକ ଦିନ ପର୍ଯ୍ୟନ୍ତ ସ୍ୱର୍ଗରେ ରହିଲେ। ସେ ବେଳେ ବେଳେ ବ୍ରହ୍ମଲୋକକୁ ବି ଚାଲିଯାଉଥିଲେ, ବୁଲିଯାଉଥିଲେ। ଦିନେ ଇନ୍ଦ୍ର ପଚାରିଲେ, "ରାଜନ୍! ଆପଣ ଯେତେବେଳେ ରାଜ୍ୟ, ପ୍ରଜା, ମହଲ, ଭଣ୍ଡାର, ହାତୀଘୋଡ଼ା, ରାଣୀ ଦାସଦାସୀଙ୍କୁ ଛାଡ଼ି ତପସ୍ୟା କରିବାକୁ ଅରଣ୍ୟକୁ ଯାଇଥିଲେ, ଆପଣ କାହା ଭଳି ତପ କରିଥିଲେ ?"

ଇନ୍ଦ୍ର ଚାହୁଁଥିଲେ ନିଜର ସିଂହାସନ, ଯାହା ଯଯାତି ଅଧିକାର କରିଥିଲେ, ପୁଣ୍ୟକ୍ଷୟ କରିବା ଉଦ୍ଦେଶ୍ୟରେ ଇନ୍ଦ୍ର ଏପରି ପ୍ରଶ୍ନ କରିଥିଲେ ଯଯାତିଙ୍କୁ। ଯଯାତି ଦେବତାମାନଙ୍କର ରାଜା ଇନ୍ଦ୍ରଙ୍କଠାରୁ ଏପରି ପ୍ରଶ୍ନ ଶୁଣିବା ପରକ୍ଷଣରେ ତାଙ୍କ ମନରେ ଅହଙ୍କାର ପ୍ରବେଶ କଲା। ସେ ନିଜର ତପସ୍ୟାଦି ପୁଣ୍ୟକର୍ମକୁ ସ୍ମରଣ କରି କହିଲେ—"ହେ ଦେବେନ୍ଦ୍ର! ମଣିଷଙ୍କ କଥା କ'ଣ କହିବି, ମୁଁ ଯେପରି ତପସ୍ୟା କରିଥିଲି ତାହା ଆଜି ପର୍ଯ୍ୟନ୍ତ କୌଣସି ଦେବତା, କି ଗନ୍ଧର୍ବ, କି ରାକ୍ଷସ, କି ମହର୍ଷି ନା କରିଛନ୍ତି, ନା ଭବିଷ୍ୟତରେ କେବେ କରିପାରିବେ। ମୋ ଭଳି ଘୋର ତପ କରିଥିବା କାହାକୁ ମୁଁ ଦେଖିପାରୁନାହିଁ।"

ଯଯାତିଙ୍କଠାରୁ ଏପରି କଥା ଶୁଣି ଇନ୍ଦ୍ର ହସିଲେ, ଆଉ କହିଲେ, "ରାଜନ୍! ସଂସାରରେ ତହୁଁ ବଡ଼ ତହୁଁ ବଡ଼ ତପସ୍ୱୀ ଅଛନ୍ତି। ଏପରି ମହାନ୍ ତପସ୍ୱୀ ଅଛନ୍ତି ଯାହାଙ୍କ ନାମ ବି ଆପଣ ଶୁଣି ନଥିବେ। ଆପଣ ନିଜର ବଡ଼ିମା ଦେଖାଇ ଅନ୍ୟ ଅନେକ ଯଶସ୍ୱୀ ତପସ୍ୱୀଙ୍କର ଘୋର ଅପମାନ କରିଛନ୍ତି। ଆପଣ ଆପଣଙ୍କ ନିଜ ମୁହଁରେ ନିଜର ପ୍ରଶଂସା କରିଛନ୍ତି। ଏଣୁ, ଆପଣଙ୍କର ସକଳ ପୁଣ୍ୟ କ୍ଷୀଣ ହୋଇଗଲା। ଏଥର ଆପଣଙ୍କୁ ସ୍ୱର୍ଗରୁ ଧକ୍କା ଦେଇ ବାହାର କରିଦିଆଯିବ।

ଭଗବାନ କହୁଛନ୍ତି, "ହେ ଉଦ୍ଧବ! ଯେତେବେଳେ ଏଡ଼େ ମହାନ୍ ତପସ୍ୱୀ ଯଯାତିଙ୍କର ସାମାନ୍ୟ ମାତ୍ର ଆତ୍ମପ୍ରଶଂସାରେ ସମସ୍ତ ପୁଣ୍ୟ କ୍ଷୀଣ ହୋଇ ଯାଇପାରିଲା, ସେତେବେଳେ ତିଳ ପ୍ରମାଣ କାର୍ଯ୍ୟ କରି ନଥିବା ଲୋକ ସୁମେରୁ ଭଳି ବିସ୍ତୃତ୍ୟ ଆତ୍ମପ୍ରଶଂସା କରୁଥିଲେ କେଉଁ ଦଶା ଭୋଗ କରିବେ ? ସେଇମାନେ ନିଶ୍ଚୟ ନର୍କର ଅଧିକାରୀ ହେବେ। ତେଣୁ, ନିଜେ କରିଥିବା ଭଜନ, କୀର୍ତ୍ତନ, ପୂଜନ, ତପ ତଥା ଅନ୍ୟାନ୍ୟ ଶୁଭକର୍ମର କେତେବେଳେ ବି ଭୁଲକ୍ରମେ ଅନ୍ୟ ଆଗରେ ପ୍ରକାଶ ନ କରିବା ଉଚିତ।"

ଉଦ୍ଧବ ପଚାରିଲେ, "ବ୍ରହ୍ମନ୍! ଏହା ଛଡ଼ା ଆଉ କିଛି ବିଶେଷ ନିୟମ ଥିଲେ କୃପାକରି କୁହନ୍ତୁ।"

ଭଗବାନ କହିଲେ, "ହେ ଉଦ୍ଧବ! **ମୋତେ ଯେଉଁମାନେ ଦୀପ ଆଦି ବସ୍ତୁ ଅର୍ପଣ କରନ୍ତି ସେମାନେ ଏହି ବସ୍ତୁକୁ ଅନ୍ୟ କାମରେ ଉପଯୋଗ କଦାପି ନ କରିବା ଉଚିତ।** ମୋ ନିମିତ୍ତ ଯେଉଁ ଦୀପ ଜଳାଯାଇଥାଏ, ତାକୁ ନିଜର ଅନ୍ୟକାମରେ ନ ଲଗାଇବା ଉଚିତ। ଅନ୍ଧକାର ଦୂର କରିବା ପାଇଁ ତଥା ପୁସ୍ତକ ଆଦି ପଠନ

କରିବା ପାଇଁ ଅନ୍ୟ ଦୀପ ଜଳାଇବା ଉଚିତ। ଅଥବା ସେହି ଦୀପରେ ଦୁଇଟି ବତୀ ଜଳାଇପାରନ୍ତି। ସେହି ଭଳି ଅନ୍ୟ ବସ୍ତୁକୁ ମଧ୍ୟ ବିଚାରକୁ ନେବା।''

ଉଦ୍ଧବ ପଚାରିଲେ, ''ଭଗବନ୍! ଆପଣଙ୍କୁ ଅର୍ପିତ ହୋଇଥିବା ନୈବେଦ୍ୟ କ'ଣ ଅନ୍ୟ କେହି ପାଇବା ଠିକ୍ ନୁହେଁ?''

ଭଗବାନ କହିଲେ, ''ନାଁ! ତାହା ତ ମହାପ୍ରସାଦ ହୋଇଗଲା। ତାହା ପାଇଲେ ତ ଜନ୍ମଜନ୍ମାନ୍ତରର ଅନ୍ଧତ୍ୱ ଲୋପ ପାଇଯାଏ। କିନ୍ତୁ, ତାହା ଲୋଭ-ବୁଦ୍ଧିରେ ସଂଗ୍ରହ କରି ଭୋଜନ କରିବା ଅନୁଚିତ। ବୁଦ୍ଧି-ବିବେକର ସହିତ ମହାପ୍ରସାଦ ପାଇବା ଉଚିତ। ଯେପରି ଯେଉଁ ଗ୍ରାମକୁ ମୋ ସେବା ନିମନ୍ତେ ନିଯୋଗ କରାଗଲା, ସେଥିରୁ ଯେଉଁ ଆୟ ହୁଏ ତହିଁରେ ନିଜ ଗୃହପରିବାରର ଖର୍ଚ୍ଚ ତୁଲାଇବା ଅନୁଚିତ। କେବଳ ମୋ ସେବାରେ ସମସ୍ତ ଆୟ ଖର୍ଚ୍ଚ ହେବା ଉଚିତ। ଏହା ଛଡ଼ା ଅନ୍ୟ ଯାହା ମୋତେ ଅର୍ପଣ କରାଯାଇଥାଏ, ତହିଁରେ ସମସ୍ତଙ୍କର ଅଧିକାର ଥାଏ। ଯେପରି ବଗିଚାରେ ପାଚିଥିବା ଆମ୍ବ ମୋ ଭୋଗ ନିମନ୍ତେ ରଖିଦେଲେ ତାହା ମୋର ପ୍ରସାଦ ହୋଇଯାଏ। ପ୍ରସାଦ ହୋଇଯିବାପରେ ତାହାର ଅଧିକାରୀ ସମସ୍ତେ ହୋଇଯାଆନ୍ତି।''

ଉଦ୍ଧବ ପଚାରିଲେ, ''ଭଗବନ୍! ଆପଣଙ୍କୁ କିପରି ବସ୍ତୁ ଅର୍ପଣ କରାଯାଇ ହୁଏ?''

ଭଗବାନ ହସି ହସି କହିଲେ, ''ହେ ଉଦ୍ଧବ! କହିବାକୁ ଗଲେ ସେମିତି ଅନେକ ବସ୍ତୁ ଅଛି। ତୁମକୁ ମୁଁ କେତେ ବସ୍ତୁର ନାମ କହିବି? ତେବେ ତୁମେ ଜାଣିରଖ ଯେ ସଂସାରରେ ଯାହା ତୁମକୁ ଅତି ଭଲ ଲାଗେ ତାହାହିଁ ମୋତେ ଅର୍ପଣ କରାଯିବା ଉଚିତ। ମୋତେ ଅର୍ପଣ କରିବା ଦ୍ୱାରା ତାହା ଅନନ୍ତ ଓ ଅକ୍ଷୟ ହୋଇଯାଏ।''

ଉଦ୍ଧବ ପଚାରିଲେ, ''ଭଗବନ୍! ଆପଣଙ୍କ ପୂଜା କେବଳ ଅର୍ଚ୍ଚନା-ବିଗ୍ରହ ମୂର୍ତ୍ତିରେ କରାହୁଏ ନା ପୂଜା ଆଉ କେଉଁ ସ୍ଥାନରେ କରାଯାଇ ହୁଏ?''

ଭଗବାନ କହିଲେ, ''ହେ ଉଦ୍ଧବ! ମୋ ପୂଜା ତ ସବୁ ସ୍ଥାନରେ କରାଯାଇ ପାରେ। ତେବେ ଏକାଦଶ ସ୍ଥାନ ମୁଖ୍ୟରୂପେ ବିଦିତ।''

ଉଦ୍ଧବ କହିଲେ, ''ଭଗବନ୍! ସେଇ ଏଗାରଟି ସ୍ଥାନ କ'ଣ କ'ଣ ତାହା କୃପାକରି ମୋତେ କୁହନ୍ତୁ। ଏବଂ କେଉଁ କେଉଁ ସ୍ଥାନରେ କେଉଁ କେଉଁ ବସ୍ତୁଦ୍ୱାରା ପୂଜା କରିବା ଉଚିତ ତାହା ମଧ୍ୟ କହିବା ହୁଅନ୍ତୁ।''

ଭଗବାନ ପ୍ରସନ୍ନତାର ସହିତ କହିଲେ, ''ଠିକ୍ ଅଛି। ଏବେ ମୁଁ ସେଇ ପୂଜା ସ୍ଥାନଗୁଡ଼ିକର ପରିଚୟ ପ୍ରଦାନ କରୁଛି ଶୁଣ।''

ମହର୍ଷି ସୂତ ଶୌନକାଦି ଋଷିମାନଙ୍କୁ କହୁଛନ୍ତି, ''ହେ ମୁନିଗଣ! ଏବେ ଆପଣମାନେ ଭଗବାନ ନିବାସ କରୁଥିବା ଏଗାର ମୁଖ୍ୟ ସ୍ଥାନ ସମ୍ବନ୍ଧରେ ଶ୍ରବଣ କରନ୍ତୁ।''

### ଛପ୍‌ପୟ

ମମ ହିତ ଯାତ୍ରା କରେଁ ଦେବ ମନ୍ଦିର ବନବାବେଁ।
ସ୍ୱୟଂ ଶକ୍ତି ନହିଁ ହୋହି ଯତ୍ନ କରିକେଁ କରବାବେଁ।।
ଉପବନ ଅରୁ ଉଦ୍ୟାନ ସଭାଥଲ ଶାଲା ସୁନ୍ଦର।
ହ୍ୱୈକେ ନିଷ୍ଛଲ ନିତ୍ୟ କରେଁ ଲେପନ ମମ ମନ୍ଦିର।।
କରା ନିବଦିତ ବସ୍ତୁ ଜୋ, ଲେଇ ନ ଅପନେ କାମ ମହଁ।
କରେଁ ସମରପିତ ବସ୍ତୁ ପ୍ରିୟ, ହୋହେ ପ୍ରେମ ମମ ନାମ ମହଁ।।



# ସେଇ ପ୍ରସିଦ୍ଧ ଏକାଦଶ ସ୍ଥାନ

ସୂର୍ଯୋଽଗ୍ନିର୍ବ୍ରାହ୍ମଣୋ ଗାବୋ ବୈଷ୍ଣବଃ ଖଂ ମରୁଜ୍ଜଲମ୍ ।
ଭୂରାତ୍ମା ସର୍ବଭୂତାନି ଭଦ୍ର ପୂଜାପଦାନି ମେ ।। ★
[ଶ୍ରୀଭା ୧୧ ସ୍କ.୧୧ଅ. ୪୨ ଶ୍ଳୋକ]

### ଛପ୍‌ପୟ

ବିପ୍ର ଧେନୁ ରବି ଅନିଲ ଅନଲ ଭୂ ବୈଷ୍ଣବ ପାନୀ।
ଆତ୍ମା ଅରୁ ଆକାଶ ଚରାଚର ଜଗକେ ପ୍ରାନୀ।।
ଯେ ସବ ଆଶ୍ରୟ କହେ ଦେବ ପୂଜା କେ ପ୍ୟାରେ।
ଉପସ୍ଥାନ ତେଁ ସୂର୍ଯ୍ୟ ଅଗ୍ନି ଘୃତ ଆହୁତି ଡାରେ।।
ପୂଜେ ଦ୍ୱିଜ ଆତିଥ୍ୟ କରି, ଧେନୁ ଘାସ ତୃନ ଡାରିକେଁ।
ବୈଷ୍ଣବକୁଁ ସତ୍‌କାର କରି, ପୂଜେ ଅତି ପ୍ରିୟ ମାନିକେଁ।।

ଭଗବାନଙ୍କର ଏହି ସୃଷ୍ଟି ବିଚିତ୍ର। ତେଣୁ ବୋଧେ ସମସ୍ତଙ୍କର ପ୍ରକୃତି ଭିନ୍ନ ଭିନ୍ନ ହୋଇଛି। ଏକା ଭଳି ସଂସାରରେ କୌଣସି ବସ୍ତୁ ନାହିଁ। ପ୍ରେମୀ ଯେତେ ହୋଇଥାନ୍ତୁ, ଜଣଙ୍କର ରୁଚି ଅନ୍ୟର ରୁଚିଠାରୁ ନିଶ୍ଚିତ ପୃଥକ୍ ହୋଇଥାଏ। ଆକୃତି, ପ୍ରକୃତି, ରୂପ ରଙ୍ଗ, ବାଣୀ, ସବୁଥିରେ କିଛି ନା କିଛି ଭିନ୍ନତା ଥାଏ। ରେଖାଶାସ୍ତ୍ରଜ୍ଞମାନେ କହନ୍ତି ଯେ ଆଙ୍ଗୁଠିର ରେଖା ଭିନ୍ନ ଭିନ୍ନ ହୋଇଥାଏ। ଯେପରି କାହା ହସ୍ତାକ୍ଷର


ସବିତା ଅନଳ ବ୍ରାହ୍ମଣ । ବୈଷ୍ଣବଜନ ଧେନୁଗଣ ।।
ଆକାଶ ସଲିଳ ମରୁତ । ପୃଥିବୀ ଆତ୍ମା ସର୍ବଭୂତ ।।
ଆହେ ଉଦ୍ଧବଟି ଏମାନ । ଅଟନ୍ତି ମୋର ପୂଜାସ୍ଥାନ ।।
[ଭାଗବତ :ଜଗନ୍ନାଥ ଦାସ :୧୧ଶ ସ୍କନ୍ଧ]

ଅନ୍ୟର ହସ୍ତାକ୍ଷର ସହିତ ମିଶେନାହିଁ, ସେହିଭଳି ଆଙ୍ଗୁଠିର ରେଖା ବି ଏକାଭଳି ହୋଇ ନ ଥାଏ। ତେଣୁ ହିଁ ଯେଉଁମାନେ ଅକ୍ଷର ଚିହ୍ନି ଜାଣିନାହାନ୍ତି, ସେମାନଙ୍କର ଟିପଚିହ୍ନ ନିଆଯାଏ। ସମସ୍ତଙ୍କର ଆଖିର ରେଖା ବି ଏକାଭଳି ହୋଇନଥାଏ। ସୂକ୍ଷ୍ମ ରୂପରେ ଦେଖିଲେ, ସମସ୍ତଙ୍କର ସବୁକିଛି ଭିନ୍ନ ଦେଖାଯାଏ। ତେଣୁ, ସମସ୍ତଙ୍କର ଉପାସନା ମଧ ଭିନ୍ନ ଭିନ୍ନ ହୋଇଥାଏ। ଭଗବାନ ତ ସର୍ବବ୍ୟାପକ। ତାଙ୍କୁ ଯିଏ ଯେଉଁଠାରେ ଭଜନକରେ ସେ ସେହିଠାରେ ପ୍ରକଟ ହୁଅନ୍ତି। ଯେଉଁ ବସ୍ତୁରେ ତାଙ୍କୁ ଉପାସନା କରାଯାଏ ସେହି ବସ୍ତୁରେ ସେ ଦର୍ଶନ ଦିଅନ୍ତି। ତାଙ୍କୁ ଯିଏ ଯେଉଁପରି ଭଜନକରେ ସେ ତାକୁ ସେହିପରି ଭାବରେ ପରିଚୟ ଦେଇଥା'ନ୍ତି।

ମହର୍ଷି ସୂତ କହୁଛନ୍ତି, ହେ ମୁନିଗଣ! ଉଦ୍ଧବ ଭଗବାନଙ୍କୁ ଯେତେବେଳେ ସେ ରହୁଥିବା ଆଶ୍ରୟଗୁଡ଼ିକ ସମ୍ବନ୍ଧରେ ପଚାରିଲେ, ପୂଜା ବିଧି ପ୍ରସଙ୍ଗ ପଚାରିଲେ, ସେତେବେଳେ ଭଗବାନ କହିଲେ, ''ହେ ଉଦ୍ଧବ! ମୋ ପୂଜାର ମୁଖ୍ୟ ଆଶ୍ରୟ ହେଉଛି, ଏଗାରଟି ସ୍ଥାନ। ସୂର୍ଯ୍ୟ, ଅଗ୍ନି, ବ୍ରାହ୍ମଣ, ଧେନୁ, ବୈଷ୍ଣବ, ଆକାଶ, ବାୟୁ, ଜଳ, ପୃଥିବୀ, ନିଜର ଅନ୍ତରାତ୍ମା ଓ ସମସ୍ତ ଚରାଚର ପ୍ରାଣୀ– ଏହି ସ୍ଥାନମାନଙ୍କରେ ମୋର ପୂଜାକରିବା ବିଧେୟ।''

ଏହା ଶୁଣି ଉଦ୍ଧବ ପଚାରିଲେ, ''ପ୍ରଭୁ! ଏହି ସ୍ଥାନମାନଙ୍କରେ ଆପଣଙ୍କୁ ପୂଜା କିପରି କରାଯିବା ଉଚିତ? ଆକାଶକୁ ପୁଷ୍ପ ପିନ୍ଧାଇବା କିପରି?''

ଉଦ୍ଧବଙ୍କର ଏପରି ପ୍ରଶ୍ନ ଶୁଣି ଭଗବାନ ହସିବାରେ ଲାଗିଲେ। ସେ କହିଲେ, ''ଭାଇ ଉଦ୍ଧବ! ଫୁଲ ପିନ୍ଧାଇବା କ'ଣ ପୂଜା! ଦେବତା ଯେପରି ହୋଇଥିବ ପୂଜା ସେପରି ହେବା ବିଧେୟ। ଦେଶ, କାଳ, ପାତ୍ର ଓ ପରିସ୍ଥିତି ଅନୁସାରେ ପୂଜା ବି ଭିନ୍ନ ଭିନ୍ନ ପ୍ରକାର ହୋଇଥାଏ। ଶୀତ ଦିନରେ ପଙ୍ଖା କରିବା, ଶୀତଳ ଚନ୍ଦନ ଲଗାଇବା, ଶୀତଳ ଜଳରେ ସ୍ନାନ କରାଇବା, ତେବେ ତାହା ପୂଜା ହୋଇନଥାଏ। ଥଣ୍ଡା ଦିନରେ ଅଗ୍ନିରେ ଉତ୍ତାପ ଦେବା, ଉଷ୍ଣ ଜଳରେ ସ୍ନାନ କରାଇବା, ଗରମ ମହନଭୋଗ ଭୋଗ କରିବା, ସେ ସମୟର ପୂଜା ଏହିପରି କରାଯିବା ଉଚିତ।

''ଠିକ୍ ଏହିଭଳି ଦେଶକ୍ଷେତ୍ରରେ ପୂଜାରେ ଭିନ୍ନତା ହୋଇଥାଏ। ଉଷ୍ଣ ଦେଶ ହୋଇଥିଲେ ଶୀତଳ ଦ୍ରବ୍ୟରେ ପୂଜା କରାଯିବା ଉଚିତ। ଶୀତପ୍ରଧାନ ଦେଶରେ ଉଷ୍ଣ ଦ୍ରବ୍ୟର ଅଧିକ ବ୍ୟବହାର କରାଯିବା ଉଚିତ। ଏହିଭଳି ପାତ୍ର ଭେଦରେ ପୂଜାର ଭେଦ ବି ହୋଇଯାଏ। ସୂର୍ଯ୍ୟଙ୍କ ପୂଜା ନିମନ୍ତେ ଭିନ୍ନ ବସ୍ତୁର ଉପଯୋଗ ହୁଏ, ଆକାଶ ପୂଜା ନିମିତ୍ତ ଭିନ୍ନ ବସ୍ତୁର ଆବଶ୍ୟକ ହୋଇଥାଏ।''

ଉଦ୍ଧବ ପଚାରିଲେ, ''ହଁ ପ୍ରଭୁ! ମୁଁ ତ ଏ ସବୁ କଥା ଜାଣିବା ପାଇଁ ଚାହୁଁଛି। ଆପଣଙ୍କ ଆଶ୍ରୟଙ୍କ ପୂଜା ବିଶେଷକରି କେଉଁ କେଉଁ ଦ୍ରବ୍ୟରେ କରାଯିବା ଉଚିତ? ପ୍ରଥମେ ସୂର୍ଯ୍ୟଙ୍କ ଉପାସନା ବିଧି କୁହନ୍ତୁ।''

ଭଗବାନ କହିଲେ, ''ହେ ଉଦ୍ଧବ! ପାଦ୍ୟ, ଅର୍ଘ୍ୟ, ଆଚମନୀୟ, ସ୍ନାନୀୟ ଜଳ, ବସ୍ତ୍ର, ଯଜ୍ଞୋପବୀତ, ଧୂପ, ଦୀପ, ନୈବେଦ୍ୟ ଆଦି ଦ୍ରବ୍ୟ ପ୍ରତ୍ୟେକ ପୂଜା

ପାଇଁ ସାଧାରଣତଃ ଦରକାର ହୋଇଥାଏ। କିନ୍ତୁ ଭିନ୍ନ ଭିନ୍ନ ଆଶ୍ରୟ ପୂଜା ନିମନ୍ତେ ଅନ୍ୟ କେତେକ ବିଶେଷ ସାମଗ୍ରୀର ଆବଶ୍ୟକ ହୋଇଥାଏ। ଯେପରି ସୂର୍ଯ୍ୟଙ୍କ ଉପାସନା ପାଇଁ ବେଦମନ୍ତ୍ରର ବିଶେଷତା ଅଛି। ଉଦୟକାଳୀନ ସୂର୍ଯ୍ୟଙ୍କ ମନ୍ତ୍ର, ମଧ୍ୟାହ୍ନ ସୂର୍ଯ୍ୟଙ୍କ ମନ୍ତ୍ର ଓ ସନ୍ଧ୍ୟା ସମୟର ଅସ୍ତଗାମୀ ସୂର୍ଯ୍ୟଙ୍କ ମନ୍ତ୍ର ଭିନ୍ନ ଭିନ୍ନ। ତ୍ରିକାଳ ସନ୍ଧ୍ୟା ଗାୟତ୍ରୀ ଜପ, ଏ ସବୁ ହେଉଛି ସୂର୍ଯ୍ୟଙ୍କ ଉପାସନା। ପ୍ରତ୍ୟୁଷରେ ଠିଆ ହୋଇ ସ୍ତୁତି ମୁଦ୍ରାରେ ହସ୍ତଦ୍ୱୟକୁ ସମ୍ମୁଖରେ ରଖି ଉପସ୍ଥାନ କରିବା ଉଚିତ। ମଧ୍ୟାହ୍ନ ସମୟରେ ସିଂହ ଭଳି ଦୁଇ ହାତକୁ ଉପରକୁ ଟେକି ଉପସ୍ଥାନ କରାଯିବା ଓ ସନ୍ଧ୍ୟାରେ ହାତ ଯୋଡ଼ି ଉପସ୍ଥାନ କରାଯିବା ଉଚିତ। ଏହି ଭଳି ବେଦତ୍ରୟୀ ଦ୍ୱାରା ସୂର୍ଯ୍ୟମଣ୍ଡଳରେ ମୋର ଉପାସନା କରାଯିବା ଉଚିତ।''

ଉଦ୍ଧବ ପଚାରିଲେ, ''ଭଗବନ୍! ଅଗ୍ନିରେ ଆପଣଙ୍କୁ କିପରି ଉପାସନା କରାଯାଏ ? ସେଥିରେ କାହାର ବିଶେଷତା ଥାଏ ?''

ଭଗବାନ କହିଲେ, ''ଅଗ୍ନିରେ ବେଦମନ୍ତ୍ର ଉଚ୍ଚାରଣ ପୂର୍ବକ ଘୃତ ଆହୁତି ଦେବା ହିଁ ବିଶେଷ ଉପାସନା ବିଧି ହୋଇଥାଏ। ଋଷିମାନଙ୍କର ଅଗ୍ନିଶାଳାରେ ସବୁବେଳେ ଅଗ୍ନି ପ୍ରଜ୍ୱଳିତ ହେଉଥାଏ। ସେମାନେ ସନ୍ଧ୍ୟାରେ, ସକାଳେ ଘୃତାହୁତି ପ୍ରଦାନକରି ତାଙ୍କୁ ପୂଜାକରନ୍ତି। ବ୍ରହ୍ମଚାରୀ ଅଗ୍ନିରେ ସମିଧ ଦାନ କରନ୍ତି। ଗୃହୀ ସବୁବେଳେ ଦୁଇଥର ଅଗ୍ନିହୋତ୍ର କରି ଅଗ୍ନିପୂଜା କରନ୍ତି। ବାନପ୍ରସ୍ଥୀ ଯଦିଓ ଗୃହ ତ୍ୟାଗ କରିଥା'ନ୍ତି, ନଗରର ସକଳ ପ୍ରକାର ସୁବିଧା ପରିତ୍ୟାଗ କରିଥା'ନ୍ତି, ସେମାନେ ନା ଘରେ ରୁହନ୍ତି ନା ସଂସାର ସୁଖ ଭୋଗ କରନ୍ତି। କିନ୍ତୁ ସେମାନେ ଅଗ୍ନି ଉପସନା ଛାଡ଼ି ପାରନ୍ତି ନାହିଁ। ବଣର କନ୍ଦମୂଳ ଫଳଦ୍ୱାରା ସେମାନେ ଅଗ୍ନିଙ୍କୁ ଆରାଧନା କରନ୍ତି। ଅଗ୍ନିହୋତ୍ରର ରକ୍ଷା ନିମନ୍ତେ ସେମାନେ ଚାଳିଆ ତିଆରି କରନ୍ତି। ଅଗ୍ନି ହେଉଛି ଦେବତାମାନଙ୍କର ମୁଖ। ସେଥିରେ ଯେଉଁ ଦେବତାଙ୍କ ନିମିତ୍ତ ଆହୁତି ଦିଆଯାଏ ଅଗ୍ନିଦେବ ଅଥର୍ବୋଗ୍ରେ ତାହା ସେହି ସେହି ଦେବତାଙ୍କ ପାଖରେ ପହଞ୍ଚାଇ ଦିଅନ୍ତି। ଅଗ୍ନିଙ୍କୁ ଉପାସନା କରି ଦ୍ୱିଜାତି ତେଜସ୍ୱୀ ଜାତି ହୋଇଛନ୍ତି। ଯେଉଁମାନେ ବିଧିବଦ୍ ଅଗ୍ନିଙ୍କୁ ପୂଜା କରନ୍ତି, ଅଗ୍ନି ପ୍ରତ୍ୟକ୍ଷ ହୋଇ ସେମାନଙ୍କୁ ଫଳ ଦିଅନ୍ତି। ଜଣେ ବ୍ରାହ୍ମଣ ଅନ୍ୟ ଜଣେ ବ୍ରାହ୍ମଣଙ୍କଠାରୁ ପାଦଲେପ ଲଗାଇ ଉଡ଼ି ଉଡ଼ି ହିମାଳୟରେ ପହଞ୍ଚିଗଲା। ହିମ ପ୍ରଦେଶରେ ବୁଲି ବୁଲି ପ୍ରାକୃତିକ ସୌନ୍ଦର୍ଯ୍ୟ ଦେଖିବାରେ ଲାଗିଲା। ସେ ବରଫ ଉପରେ ଅନ୍ୟ ମନସ୍କ ଭାବେ ଚାଲୁଥିଲା। ବରଫ ଲାଗି ପାଦଲେପ ଧୋଇ ହୋଇଗଲା। ଫଳତଃ ଉଡ଼ିବା ଶକ୍ତି ନଷ୍ଟ ହୋଇଗଲା। ଅଗ୍ନିହୋତ୍ର ସମୟ ହୋଇଯାଉଥାଏ। ବ୍ରାହ୍ମଣ ଏଥର ଚିନ୍ତାରେ ପଡ଼ିଗଲା। ଆଶ୍ରମକୁ ଠିକ୍ ସମୟରେ ଫେରି ଅଗ୍ନିହୋତ୍ର କରିବା କଥା। ସେ ବ୍ୟାକୁଳ ହୋଇଉଠିଲା। ଆଉ ଅଗ୍ନିଦେବଙ୍କୁ ପ୍ରାର୍ଥନା କରି କହିଲା, 'ହେ ପ୍ରଭୁ! ମୁଁ ଯଦି ଆପଣଙ୍କର ଉପାସନା ଠିକ୍ ରୀତିରେ କରିଥିବି ତେବେ ଏହି ମୁହୂର୍ତ୍ତରେ ଆଶ୍ରମରେ ପହଞ୍ଚାଇ ଦିଅନ୍ତୁ।' ଅଗ୍ନିଦେବ ତତ୍କ୍ଷଣାତ୍ ତା'ର ଶରୀରରେ ପ୍ରକଟ ହୋଇଗଲେ ଓ ପରମୁହୂର୍ତ୍ତରେ ତାକୁ ଆଶ୍ରମରେ ପହଞ୍ଚାଇ ଦେଲେ।''

ଉଦ୍ଧବ ପଚାରିଲେ ''ଭଗବନ୍! ବ୍ରାହ୍ମଣଙ୍କୁ ଆପଣଙ୍କ ଆଶ୍ରୟ ମନେକରି ପୂଜା କିପରି କରାଯିବା ଉଚିତ।''

ଭଗବାନ କହିଲେ, ''ହେ ଉଦ୍ଧବ! ମୋ ବାଣୀ ହେଉଛି ବେଦ। ବ୍ରାହ୍ମଣ ଏହାକୁ ଧାରଣ କରିଥା'ନ୍ତି। ଏଣୁ, ବ୍ରାହ୍ମଣ ହେଉଛି ମୋର ସ୍ୱରୂପ। ମୋତେ ଯେତେବେଳେ ବି ରୂପ ଧାରଣ କରିବାକୁ ପଡ଼େ ମୁଁ ବୃଦ୍ଧ ବ୍ରାହ୍ମଣର ରୂପ ଧାରଣ କରେ। ବ୍ରାହ୍ମଣଙ୍କୁ ମୁଁ ବି ପୂଜା କରେ। ତେଣୁ, ଲୋକମାନେ ମୋତେ ବ୍ରାହ୍ମଣ-ଦେବତା ବୋଲି କୁହନ୍ତି। ଆଉ ବ୍ରାହ୍ମଣଙ୍କ ନିମିତ୍ତ ମୁଁ ଅବନିକୁ ଅବତରଣ କରେ। ବ୍ରାହ୍ମଣଙ୍କୁ ଯିଏ ସେବାକରେ ସେ ହିଁ ସଂସାରରେ ଯଶ ପାଏ। ବ୍ରାହ୍ମଣଙ୍କୁ ସେବା କରିବା ଦ୍ୱାରା ହିଁ ମୋର ଏତେ ଯଶ ବୃଦ୍ଧି ହୋଇଛି।

''ମୟୂରଧ୍ୱଜ ଜଣେ ବିଶିଷ୍ଟ ବ୍ରାହ୍ମଣଭକ୍ତ ଥିଲା। ସେ ବ୍ରାହ୍ମଣର ସିଂହ ପାଇଁ ନିଜ ପୁଅକୁ କରତରେ ଚିରି ଦେଇଥିଲା।

''ରାଜା ଶିବି ବ୍ରାହ୍ମଣର ଇଚ୍ଛା ପୂରଣ କରିବାକୁ ଯାଇ ନିଜ ପୁତ୍ରକୁ କାଟି ମାଂସ ରନ୍ଧନ କରି ପରଷି ଥିଲେ।

''ମହାବୀର କର୍ଣ୍ଣ ମହାଦାନୀ କର୍ଣ୍ଣ ନାମରେ ବିଶ୍ୱ ବିଦିତ ହୋଇଛି କେବଳ ବ୍ରାହ୍ମଣଙ୍କୁ ଦାନ ଦେଇ। ଯେତେବେଳେ ଯାହା ବ୍ରାହ୍ମଣ ମାଗିଛନ୍ତି ସେ ତାହା ପ୍ରସନ୍ନତାର ସହିତ ପ୍ରଦାନ କରିଛି।

''ମୁଁ ଜରାସନ୍ଧର ବଳ ପରାକ୍ରମରେ ପରାଜିତ ହୋଇ ମଥୁରା ଛାଡ଼ି ଚାଲିଯାଇ ନ ଥିଲି। ତା'ର ବ୍ରାହ୍ମଣଭକ୍ତି ହେତୁ ହିଁ ମୋତେ ଆମର ପୈତୃକ ରାଜଧାନୀ ପରମ ପୁଣ୍ୟବତୀ ମଥୁରାକୁ ଛାଡ଼ିବାକୁ ପଡ଼ିଥିଲା। ହେ ଉଦ୍ଧବ! ଉପାସନା କରି ସଂସାରରେ କେହି କେବେ ଦୁଃଖୀ ହୋଇଛି ଏହା ମୁଁ ଆଜି ପର୍ଯ୍ୟନ୍ତ ଜାଣିନାହିଁ। ଯେତେବେଳେ କ୍ଷତ୍ରିୟମାନେ ବ୍ରାହ୍ମଣଦ୍ରୋହୀ ହୋଇଗଲେ, ବ୍ରାହ୍ମଣଙ୍କ ପତ୍ନୀଙ୍କ ସହିତ ବ୍ୟଭିଚାର କରିବାରେ ଲାଗିଲେ, ବ୍ରାହ୍ମଣଙ୍କ ଧନ ଅପହରଣ କରିବାରେ ଲାଗିଲେ, ସେତେବେଳେ ମୁଁ ପର୍ଶୁରାମ ଅବତାର ଗ୍ରହଣ କରି କ୍ଷତ୍ରିୟଙ୍କୁ ସଂହାର କଲି।

''ବ୍ରାହ୍ମଣ ବାଳକ ହେଲେ ବି ସେ ପୂଜନୀୟ ହୋଇଥାଏ। ଅନ୍ୟ ବର୍ଣ୍ଣର ଯେତେ ବୃଦ୍ଧ ହୋଇଥାଉ ପଛେ, ବ୍ରାହ୍ମଣ ସାନ ପିଲାଟିଏ ବି ତାକୁ ଆଶୀର୍ବାଦ ଦେଇଥାଏ। ବ୍ରାହ୍ମଣ ଜନ୍ମରୁ ହିଁ ପୂଜନୀୟ। କେତେକ ରାଜାଙ୍କ ନାଁ ଶୁଣିଥିବ। ତେବେ ସତ୍ୟବାଦୀ ରାଜା ହରିଶ୍ଚନ୍ଦ୍ରଙ୍କର ନାମ ଆଜି ଏତ ବଡ଼ ହୋଇଛି କାହିଁକି? କାରଣ, ବ୍ରାହ୍ମଣଙ୍କୁ ପ୍ରତିଶ୍ରୁତି ଦେଇଥିବା ଧନ ଶୁଝିବା ପାଇଁ ସେ ପତ୍ନୀ ପୁତ୍ରକୁ ବିକିବା ପରେ ନିଜେ ବି ବିକ୍ରିତ ହୋଇଯାଇଥିଲେ। ଚଣ୍ଡାଳ ଘରେ ଦାସତ୍ୱ କରିଥିଲେ। ଏତେ କଷ୍ଟ ଭୋଗକରିଥିଲେ ବି ସେ ବ୍ରାହ୍ମଣଙ୍କୁ ସାମାନ୍ୟମାତ୍ର ଅବମାନନା କରିନଥିଲେ।

''ଉଦ୍ଧବ! କେତେ କହିବି, ଯେତେ ବି ତେଜସ୍ୱୀ, ଯଶସ୍ୱୀ ରାଜା ହେଲେଣି, ସେମାନଙ୍କର ଯଶ ଆଉ ତେଜ ବ୍ରାହ୍ମଣଙ୍କ କୃପାରୁ ହିଁ ବଢ଼ିଛି। ସୂର୍ଯ୍ୟବଂଶରେ କେଡ଼େ କେଡ଼େ ପ୍ରତାପୀ ରାଜା ହୋଇଛନ୍ତି; କିନ୍ତୁ ସୂର୍ଯ୍ୟବଂଶ ରଘୁବଂଶ ନାମରେ ହିଁ ଖ୍ୟାତ। କାରଣ ମହାରାଜ ରଘୁ ଥିଲେ ପରମ ବ୍ରାହ୍ମଣଭକ୍ତ। ମୁଁ ନିଜେ ବ୍ରାହ୍ମଣ ରୂପରେ ଥରେ ତାଙ୍କୁ ପରୀକ୍ଷା କରିଥିଲି। ସେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପରେ ମୁଁ ତାଙ୍କୁ ବର ଦେଇଥିଲି।''

ଏପରି କଥା ଶୁଣି ଉଦ୍ଧବ ପଚାରିଲେ, ''ଭଗବନ୍! ମହାରାଜ ରଘୁଙ୍କୁ ଆପଣ ପରୀକ୍ଷା କଲେ କିପରି ?''

ଭଗବାନ କହିଲେ, ''ହେ ଉଦ୍ଧବ! ବ୍ରାହ୍ମଣଙ୍କ ପରମ ଭକ୍ତ ବୋଲି ମହାରାଜ ରଘୁଙ୍କର ନାମ ଯେତେବେଳେ ଚତୁର୍ଦ୍ଦିଗରେ ବ୍ୟାପିଯାଇଥିଲା, ସେତେବେଳେ ମୁଁ ଦିନେ ଭାବିଲି, 'ଏଇ ରାଜାଙ୍କୁ ଥରେ ପରୀକ୍ଷା କରିବା।' ମୁଁ ମୋ ଭକ୍ତର ଯଶ ବୃଦ୍ଧି କରିବା ଉଦ୍ଦେଶ୍ୟରେ ହିଁ ପରୀକ୍ଷା କରିଥାଏ। ରାଜା ଥିଲେ ପରମ ବ୍ରାହ୍ମଣଭକ୍ତ। ତାଙ୍କ ଦ୍ୱାରରୁ କେହି ବ୍ରାହ୍ମଣ ନିରାଶ ହୋଇ କେବେ ଫେରୁ ନଥିଲେ। ରାଜା ବଡ଼ ହୋଇଯାଇଥିଲେ ସତ, ମାତ୍ର ସେ ବିବାହ ହୋଇ ନ ଥିଲେ। ସେ ଇଚ୍ଛା କରିଥିଲେ, 'ମୁଁ ଏପରି କନ୍ୟାଙ୍କୁ ବିଭା ହେବି ଯିଏ ମୋର ଧର୍ମକାର୍ଯ୍ୟରେ ଅନୁକୂଳ ଥିବ, ମୋତେ ପୂର୍ଣ୍ଣପ୍ରାଣରେ ସହାୟତା କରୁଥିବ। ବ୍ରାହ୍ମଣ ଭକ୍ତି ଓ ଅତିଥି ସେବାରେ ଯାହାର ମନ ପ୍ରସନ୍ନ ରହୁଥିବ।'

''ଅନେକ ଖୋଜାଖୋଜି ହେଲା। ଏପରି ଜଣେ ସର୍ବସୁଲକ୍ଷଣସମ୍ପନ୍ନା କନ୍ୟାରତ୍ନ ଜଣେ ଥିବା କଥା ରାଜା ବ୍ରାହ୍ମଣଙ୍କ ମୁହଁରୁ ଶୁଣିଲେ। ରାଜକୁମାରୀ ଥିଲେ ତ୍ରୈଲୋକ୍ୟ ସୁନ୍ଦରୀ ଓ ସଦ୍‌ଗୁଣର ଖଣି। ରାଜା ସେହି ରାଜକୁମାରୀଙ୍କୁ ବିବାହ କରିବା ପାଇଁ ରାଜି ହେଲେ। ଖୁବ୍ ଧୁମ୍‌ଧାମରେ ବିବାହ ଉତ୍ସବ ହେଲା। ନବବଧୂଙ୍କୁ ଧରି ରାଜା ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କରୁଥିଲେ। ରାସ୍ତାରେ ଜଣେ ବୃଦ୍ଧ ବ୍ରାହ୍ମଣ ରାଜାଙ୍କର ଜୟଜୟକାର କରିବାରେ ଲାଗିଥିବା ରାଜା ଦେଖିଲେ।

''ସେ ତ ଥିଲେ ପରମ ବ୍ରାହ୍ମଣଭକ୍ତ। ସହସା ରାଜା ରଥରୁ ଓହ୍ଲାଇ ପଡ଼ିଲେ। ବ୍ରାହ୍ମଣଙ୍କ ପଦ ବନ୍ଦନା କରିବା ପରେ ହାତଯୋଡ଼ି କହିଲେ, 'ବ୍ରହ୍ମନ୍! ମୁଁ ଆପଣଙ୍କର କିପରି ସେବା କରି କୃତାର୍ଥ ହେବି ଆଜ୍ଞା କରନ୍ତୁ।'

ବ୍ରାହ୍ମଣ କହିଲେ, 'ରାଜନ୍! ମୁଁ ଆପଣଙ୍କର ଖ୍ୟାତି ଖୁବ୍ ଶୁଣିଛି। ତେଣୁ ଆପଣଙ୍କୁ କିଛି ଯାଚନା କରିବା ପାଇଁ ମନ କରିଛି।'

ରାଜା କହିଲେ, 'ମହାରାଜ! ଆଜ୍ଞା କରିବା ହୁଅନ୍ତୁ। ମୋ ସର୍ବସ୍ୱ ତ ବ୍ରାହ୍ମଣଙ୍କର। ମୁଁ ସେ ସମସ୍ତର ସାମାନ୍ୟ ରକ୍ଷକମାତ୍ର। ଆପଣ ଧନ, ରତ୍ନ, ହାତୀ, ଘୋଡ଼ା, ଗ୍ରାମ, ଯାହା ମାଗିବାକୁ ଇଚ୍ଛା କରୁଛନ୍ତି କୁହନ୍ତୁ।''

ସେତେବେଳେ ବ୍ରାହ୍ମଣ କହିଲେ, ''ମୁଁ ସେ ସବୁ କିଛି ଚାହୁଁ ନାହିଁ। ମୁଁ ଆଉ ଗୋଟିଏ କଥା ଚାହୁଁଛି। ଆଉ ତାହା ହେଉଛି ଅତି ଦୁର୍ଲଭ।'

ରାଜା ହସି ହସି କହିଲେ, 'ବ୍ରହ୍ମନ୍! ବ୍ରାହ୍ମଣଙ୍କ ପାଇଁ ପୁଣି ଦୁର୍ଲଭ! ଆପଣ କହିବା ହୁଅନ୍ତୁ। ଆଦୌ ସଂକୋଚ କରନ୍ତୁ ନାହିଁ।'

ବ୍ରାହ୍ମଣ କହିଲେ, 'ଆଜି ପର୍ଯ୍ୟନ୍ତ ମୁଁ ତପସ୍ୟା କରୁଥିଲି। ଏବେ ଗୃହସ୍ଥ ହୋଇ କିଛି ସୁଖ ଭୋଗ କରିବା ପାଇଁ ଇଚ୍ଛା ହେଉଛି। ଆପଣ ଯେଉଁ ରାଣୀଙ୍କୁ ବିବାହ ହୋଇଛନ୍ତି ସେ ଜଣେ ପରମା ଗୁଣବତୀ ବୋଲି ମୁଁ ଶୁଣିଛି। ଆପଣ ତାଙ୍କୁ ହିଁ ମୋତେ ଦେଇଦିଅନ୍ତୁ।'

ମହାରାଜ ରଘୁ ପ୍ରସନ୍ନତା ପ୍ରକାଶ କରି କହିଲେ, 'ଅତି ଉତ୍ତମ କଥା ମହାରାଜ! ଏତିକି କଥା ପାଇଁ ଏତେ ସଂକୋଚ! ମୁଁ ଏଇ ମୁହୂର୍ତ୍ତରେ ରାଣୀଙ୍କୁ ପଚାରି ଆସୁଛି।' ରାଜା ଏପରି କହି ପାଲିଙ୍କି ପାଖକୁ ଗଲେ ଓ ରାଣୀଙ୍କୁ ପାଲିଙ୍କି ବାହାରକୁ ଆସିବାକୁ କହିଲେ। ରାଜାଙ୍କ କଥା ଶୁଣି ରାଣୀ ପାଲିଙ୍କିରୁ ଓହ୍ଲାଇପଡ଼ିଲେ ଓ ମହାରାଜ ରଘୁଙ୍କ ସମ୍ମୁଖରେ ହାତଯୋଡ଼ି ଠିଆହୋଇଗଲେ। ସେତେବେଳେ ରାଜା କହିଲେ, 'ରାଜକୁମାରି! ଏଇ ବ୍ରାହ୍ମଣ ତୁମକୁ ଗ୍ରହଣ କରିବାକୁ ଇଚ୍ଛା କରୁଛନ୍ତି, ଆଉ ମୁଁ ଦେବାକୁ ଇଚ୍ଛା କରୁଛି। ଏବେ ତୁମର ଇଚ୍ଛା ଜାଣିବାକୁ ଚାହୁଁଛି। ତୁମେ ତାଙ୍କ ପାଖକୁ ଯିବାକୁ ଚାହଁ, କି ନାହିଁ।'

ରାଣୀ ଆନନ୍ଦର ସହିତ କହିଲେ, 'ମହାରାଜ! ମୋତେ ଏପରି ପଚାରିବାର କିଛି ଅଛି କି? ଆପଣ ମୋର ସ୍ୱାମୀ। ଆପଣ ଯାହା ଚାହିଁବେ ତାହା ମୋର ଶିରୋଧାର୍ଯ୍ୟ କରିବା କଥା। ଏହି ବ୍ରାହ୍ମଣ ଜଣେ ସଦ୍‌ପାତ୍ର, ସେ ହେଉଛନ୍ତି ଭୂ-ଦେବ। ଆପଣ ମୋତେ ଯାହା ହାତରେ ସମର୍ପଣ କରିବେ ମୁଁ ତାଙ୍କ ପାଖକୁ ଯିବି।'

ମହାରାଜ ରଘୁ ବ୍ରାହ୍ମଣଙ୍କୁ କହିଲେ, 'ଭଗବନ୍! ଆପଣଙ୍କ ମନୋରଥ ପୂର୍ଣ୍ଣ ହେଲା। ମୋ ରାଜଧାନୀ ଅତି ନିକଟରେ। ଆପଣ ସେଠାକୁ ଆସି ବିଧିବତ୍ ଯାଙ୍କୁ ଗ୍ରହଣ କରନ୍ତୁ।'

ଏପରି କଥା ଶୁଣି ବ୍ରାହ୍ମଣ କହିଲେ, 'ରାଜନ୍! ମୋ ହାତରେ କୁଶ ମୁଠା ଅଛି। ମୋ କମଣ୍ଡଲୁରେ ସରଜୂ ଜଳ ଅଛି। ଜଳ ଆଉ କୁଶ ହାତରେ ଧରନ୍ତୁ। ମୁଁ ସଂକଳ୍ପ କରୁଛି, ଶୁଭ କାର୍ଯ୍ୟରେ ବିଳମ୍ବ କରିବା ଉଚିତ ନୁହେଁ। ବିଳମ୍ବରେ ବିଘ୍ନ ଯେ କେତେବେଳେ ପହଞ୍ଚିଯିବ କିଏ କହିବ?'

ରାଜା କହିଲେ, 'ଅତି ଉତ୍ତମ କଥା ମହାରାଜ! ତା' ହେଲେ ସଂକଳ୍ପ କରନ୍ତୁ।'

ରାଜା ବ୍ରାହ୍ମଣଙ୍କୁ ବସ୍ତ୍ରାଭୂଷଣରେ ଅଳଙ୍କୃତ ରାଣୀଙ୍କୁ ବିଧିଅନୁସାରେ ଦାନ କରିଦେଲେ। ବ୍ରାହ୍ମଣ ମୃଗଚର୍ମର କଟିବସ୍ତ୍ର ଓ ମେଖଳା ପରିହିତ ହୋଇ ହାତରେ କୁଶ ଓ କମଣ୍ଡଳୁ ଧରି ଖାଲି ପାଦରେ ଆଗେ ଆଗେ ଚାଲିଲେ, ଆଉ ତାଙ୍କ ପଛେ ପଛେ ଭୁବନମୋହିନୀ ରାଜକୁମାରୀ, ଯିଏ ଜୀବନରେ କେବେ ପାଦରେ ଚାଲି ନ ଥିଲେ, ବ୍ରାହ୍ମଣଙ୍କ ପଛେ ପଛେ ଚାଲିଲେ। ଏହା ଦେଖି ରାଜା ଦୌଡ଼ି ଆସିଲେ, ଆଉ କହିଲେ, 'ବ୍ରହ୍ମନ୍! ଏହି ବେଶରେ ଆପଣ ରାଣୀଙ୍କ ସହିତ ସୁନ୍ଦର ଦେଖାଯାଉ ନାହାନ୍ତି। ଗୋଟିଏ ଦାନ ଆପଣ ସ୍ୱଇଚ୍ଛାରେ ଗ୍ରହଣ କରିଛନ୍ତି, ଆଉ ଏକ ଦାନ ଆପଣ ମୋ ଇଚ୍ଛାରେ ଗ୍ରହଣ କରନ୍ତୁ।'

ବ୍ରାହ୍ମଣ କହିଲେ, 'ରାଜନ୍! ତୁମେ ମୋତେ କି ପ୍ରକାର ଦାନ ଦେବାକୁ ଚାହୁଁଛ!'

ରାଜା କହିଲେ, 'ବ୍ରହ୍ମନ୍! ମୁଁ ଅନେକ ଦିନ ହେବ ରାଜ୍ୟ କଲିଣି। ଆଉ ଆପଣ ଅନେକ ଦିନ ଧରି ତପ କରିଛନ୍ତି। ଏଥର ଆପଣ ରାଜ୍ୟ କରନ୍ତୁ, ମୁଁ ତପ କରିବି। ଗୃହସ୍ଥ ସୁଖଭୋଗ ପାଇଁ ଆପଣଙ୍କର ଯେତେବେଳେ ଇଚ୍ଛା ହୋଇଛି, ଆପଣ ସବୁପ୍ରକାର ଭାବରେ ତାହା ଭୋଗକରିବା ଉଚିତ।''

ଭଗବାନ କହୁଥିଲେ, ‘‘ହେ ଉଦ୍ଧବ! ମୁଁ ନିଜେ ବ୍ରାହ୍ମଣ ରୂପରେ ଯାଇଥିଲି। ରାଜାଙ୍କର ଏପରି ଉଦାରତା ଦେଖି ମୁଁ ପ୍ରସନ୍ନ ହୋଇଗଲି, ଆଉ ମୋର ଚତୁର୍ଭୁଜ ସ୍ୱରୂପ ଦର୍ଶନ ଦେଲି। ମୁଁ ବର ପ୍ରଦାନ କରି କହିଲି, ଆଜିଠାରୁ ସୂର୍ଯ୍ୟବଂଶ ରଘୁବଂଶ ନାମରେ ପରିଚିତ ହେବ। ସେହିଦିନଠାରୁ ପରମପରାକ୍ରମୀ ସୂର୍ଯ୍ୟବଂଶ ରଘୁବଂଶ ନାମରେ ଖ୍ୟାତ ହେଲା। ହେ ଉଦ୍ଧବ! ବ୍ରାହ୍ମଣଭକ୍ତିର ଅସଂଖ୍ୟ ଉଦାହରଣ ଅଛି। ଏଣୁ, ବ୍ରାହ୍ମଣଙ୍କ ଶରୀରରେ ମୋର ପୂଜା ଉତ୍ତମ ଆତିଥ୍ୟ ଦ୍ୱାରା କରାଯିବା ଉଚିତ।’’

ଉଦ୍ଧବ ପଚାରିଲେ, ‘‘ପ୍ରଭୁ! ଏଥର ଧେନୁଙ୍କୁ କେଉଁ ବିଶେଷ ରୂପରେ ପୂଜା କରାଯିବା ଉଚିତ?’’

ଭଗବାନ କହିଲେ, ‘‘ହେ ଉଦ୍ଧବ! ଧେନୁ ହେଉଛି ମୋର ହିଁ ରୂପ। ମୁଁ ଗୋରୁଙ୍କୁ ରକ୍ଷା କରେ। ସେମାନଙ୍କୁ ପାଳନ କରେ। ଏଇଥିପାଇଁ ମୋ ନାମ ହେଉଛି ଗୋପାଳ। ଗାଈଙ୍କୁ ଯିଏ ପୂଜା କରେ, ସେଥିରେ ମୁଁ ପ୍ରସନ୍ନ ହୁଏ। ଗାଈଙ୍କୁ ଦେଖି ପ୍ରଣାମ କରିବା ଉଚିତ। ମହାରାଜ ଦିଲୀପ ସୁରଭିଙ୍କୁ ଦେଖି ପ୍ରଣାମ କରି ନଥିଲେ, ତେଣୁ, ସେ ନିଃସନ୍ତାନ ହୋଇଥିଲେ। ବଶିଷ୍ଠଙ୍କ ନିର୍ଦ୍ଦେଶରେ ସେ କାମଧେନୁଙ୍କ ଝିଅ ନନ୍ଦିନୀଙ୍କୁ ପୂଜା କଲେ। ଫଳରେ ତାଙ୍କର ରଘୁଙ୍କ ଭଳି ଯଶସ୍ୱୀ ପୁତ୍ର ହେଲା। ଗାଈଙ୍କ ଶରୀରରେ ସମସ୍ତ ଦେବତା ଥାଆନ୍ତି। ଗାଈ ହେଉଛି ଲୋକଙ୍କ ମାତା। ଗାଈଙ୍କୁ କଅଁଳ କଅଁଳ ଘାସ ଖୋଇବା ହେଉଛି ପୂଜା। ସେମାନଙ୍କୁ ଆଉଁସିବା ଓ ସବୁପ୍ରକାର ସେବା କରିବା ଉଚିତ।’’

ଉଦ୍ଧବ ପଚାରିଲେ, ‘‘ପ୍ରଭୁ! ବୈଷ୍ଣବଙ୍କର ପୂଜା କିପରି କରାଯାଏ?’’

ଅଳ୍ପ ଅଳ୍ପ ହସି ଭଗବାନ କହିଲେ, ‘‘ଉଦ୍ଧବ! ଭାଇ, ତୁମକୁ ଆଉ କ’ଣ କହିବି! ଦେଖ, ଘରକୁ ଜ୍ୱାଇଁ ଆସିଲେ କିପରି ସତ୍କାର କରାଯାଏ? ଘରେ ଘିଅ ନଥିଲେ ପଡ଼ିଶାଘରୁ ଘିଅ ଉଧାର ଆଣନ୍ତି। ପୁରି, କଚୋଡ଼ି, ମହନଭୋଗ କରନ୍ତି। ତାକୁ ଭଲଲାଗିବା ଭଳି ସତ୍କାର କରନ୍ତି। ଉତ୍ସାହର ସହିତ ସତ୍କାର କରନ୍ତି। ବୈଷ୍ଣବ ଘରେ ପହଞ୍ଚିଲେ ଯାହାର ଏପରି ଉତ୍ସାହ ହୁଏ, ସେ ହିଁ ପ୍ରକୃତ ଭଗବଦ୍‌ଭକ୍ତ ବୋଲି ଜଣାଯାଏ। ଭକ୍ତି ବଢ଼ାଇବାର ଏହା ହେଉଛି ସର୍ବଶ୍ରେଷ୍ଠ ଉପାୟ। ବୈଷ୍ଣବଙ୍କୁ ବନ୍ଧୁଙ୍କ ଭଳି ସତ୍କାର କରାଯିବା ଉଚିତ।’’

ଜଣେ ଗୃହସ୍ଥ ବୈଷ୍ଣବ ଥିଲେ। ସେ ନିଜେ ତ ଜଣେ ବଡ଼ ଭଗବଦ୍-ଭକ୍ତ ଥିଲେ, ତାଙ୍କ ପତ୍ନୀ ଥିଲା କର୍କଶ। ଘରକୁ କେହି ବୈଷ୍ଣବସାଧୁ ଆସିଗଲେ ସେ ଚିଡ଼୍‌ଚିଡ଼ ହୋଇଯାଏ। ତା’ ଦେହ ଜଳେ। ତା’ ପାଇଁ ଖାଇବାକୁ କରିବାକୁ ପଡ଼ିବ ବୋଲି ଭାବି ଖୁବ୍ ବିରକ୍ତ ହୁଏ। ଗୃହସ୍ଥ ବୈଷ୍ଣବ ଥିଲେ କିନ୍ତୁ ଅତି ସରଳ। ସେ ନିଜେ କିଛି ଖାଉ ନଥିଲେ। ଅନ୍ୟ ବୈଷ୍ଣବଙ୍କୁ ଖୋଇ ଦେଉଥିଲେ। ଦିନେ ସେଇ ଗୃହସ୍ଥର ଜ୍ୱାଇଁ ଘରକୁ ଆସିଲା। ତା’ ପାଇଁ କେଉଁଠାରୁ ଘିଅ ତ କେଉଁଠାରୁ କ୍ଷୀର ଯୋଗାଡ଼ କରି ଖୁବ୍ କ୍ଷୀରି ପୁରି ତିଆରି ହେଲା। ଏହି ସମୟରେ ବୈଷ୍ଣବ ଜଣକ ପହଞ୍ଚିଗଲେ। ଘରଣୀଙ୍କ ବିରକ୍ତି ଆଉ ଦେଖେ କିଏ। ପୁଣି, ଏଇ ବୈଷ୍ଣବଙ୍କ ପାଇଁ ଖାଇବା କରିବାକୁ ହେବ। ଜ୍ୱାଇଁ ଆସି ନ ଥିଲେ ବୈଷ୍ଣବଙ୍କୁ ଖୁବ୍ ଉତ୍ତମ-ମଧ୍ୟମ

ଶୁଣାଇ ଥାନ୍ତା । ହେଲେ କ୍ୱାଇଁଙ୍କ ଆଗରେ ବୈଷ୍ଣବଙ୍କୁ ଗାଳି କିପରି ଦେବେ ? ସେ ବୈଷ୍ଣବଙ୍କ ପାଇଁ ଅନିଚ୍ଛାରେ ଦରପୋଡ଼ା ରୁଟି କେଇପଟ ଆଉ ଚଟଣି କରିଦେଲା । ଆଉ ଓଢ଼ଣା ପକାଇ ପତିଦେବଙ୍କୁ କହିଲା, ''ଆଗ କ୍ୱାଇଁଙ୍କୁ ଖାଇବାକୁ ଦେଇଦିଅ । ତା'ପରେ ବୈଷ୍ଣବଙ୍କୁ ଦେବ ।'' ଗୃହସ୍ଥ ଏହା ଶୁଣିଲେ । ସେ କହିଲେ, ''ଏତେଥର ପରିଶ୍ରମ କାହିଁକି କରିବ, ଏକାଥରେ ଦୁଇଜଣଙ୍କ ପାଇଁ ବାଢ଼ିଦିଅ ।''

ସେ କହିଲା, ''ହଉ ! କ୍ୱାଇଁଙ୍କୁ ଟେବୁଲ ଉପରେ ବାଢ଼ିଦେବ । ଆଉ ବୈଷ୍ଣବଙ୍କୁ ତଳେ ବସାଇଦେବ ।''

ଗୃହସ୍ଥ କହିଲେ, ''ଠିକ୍ ଅଛି । ସେୟା କରିବା । ତେବେ ତୁ ଥାଳିରେ ବାଢ଼ି ଦେ ତ !'' ସେ ତେଣୁ ଗୋଟିଏ ଥାଳିରେ ମହନଭୋଗ, ପୁରି, କଟୋଡ଼ି, କ୍ଷୀରି, ଦହି, ରାଇତା ଆଦି ବାଢ଼ିଦେଲା ; ଆଉ ଅନ୍ୟ ଥାଳିରେ ମୋଟା ମୋଟା ରୁଟି କେଇପଟ ଓ ଚଟଣି ଟିକିଏ ପକାଇ ଦେଲା । କହିଲା, ଏଇ ଥାଳି ବାବାଜୀଙ୍କୁ ଦେବ, ଆଉ ଆରଟା କ୍ୱାଇଁଙ୍କୁ ।''

ଗୃହସ୍ଥ ଦୁଇଟି ଥାଳି ଧରି କ୍ଷୀରି, ପୁରି, ମହନଭୋଗ ଆଦି ଥିବା ଥାଳିକୁ ବୈଷ୍ଣବଙ୍କ ପାଖରେ ଓ ଅନ୍ୟଟି କ୍ୱାଇଁଙ୍କ ପାଇଁ ବାଢ଼ି ଦେଲା । ଦୁହେଁ ଖାଇ ବସିଲେ । ସ୍ତ୍ରୀ ଜଣକ ଯେତେବେଳେ ଓଢ଼ଣା ଫାଙ୍କରେ କଣେଇ ଦେଖେ, ତା' କ୍ରୋଧର ସୀମା ରହିଲା ନାହିଁ । ହେଲେ କ୍ୱାଇଁଙ୍କ ସମ୍ମୁଖରେ ନିଜ ସ୍ୱାମୀକୁ କିଛି କହିପାରିଲା ନାହିଁ । କହିଲେ ତା'ର ଅପଯଶ ହେବ । ପ୍ରକୃତି ଧରାପଡ଼ିଯିବ । ତେବେ ଓଢ଼ଣା ତଳେ ଏଡ଼େ ଏଡ଼େ ଆଖି କରି ନାକକୁ ସଁ ସଁ କରି ତା' କ୍ରୋଧ ପ୍ରକାଶ କରିବାରେ ଲାଗିଲା । ''ଆରେ, ତୁମେ ତ ମୋ ମୁହଁ ପୋଡ଼ିଦେଲ !''

ଗୃହସ୍ଥ ନିଜେ ତ ଜଣେ ବୈଷ୍ଣବ । ସ୍ତ୍ରୀର ଏତାଦୃଶ ବ୍ୟବହାର ତାକୁ ଅଛପା ରହିଲା ନାହିଁ । ସେ ତା'ର ସ୍ତ୍ରୀର ମୁଁହ ଫଣଫଣକୁ ହୃଦୟଙ୍ଗମ କରି ମନେ ମନେ କହୁଥିଲା, ''ମୋ ମୁହଁ ପୋଡ଼ିବାକୁ ବସିଥିଲୁ, ଏବେ କ'ଣ ହେଲା ?'' ଆଉ ପାଟିକରି କହିଲା, ''କାହାର ମୁଁହ ପୋଡ଼ିଲା ? କାହାର ନାକ କଟିଲା ? ତୁ ମୋ ମୁହଁରେ କଳାବୋଳିବାକୁ ବସିଥିଲୁ । ଏକାଠି ଇମିତି ଦୁଇପ୍ରକାର ଥାଳି କାହିଁକି ପରସିଥିଲୁ ? ତା' ଫଳ ଏବେ ପା''।

ଏହା ଶୁଣି ସ୍ତ୍ରୀ ଖୁବ୍ ଲଜ୍ଜିତ ହୋଇଗଲା । ସାରକଥା ହେଉଛି, ବୈଷ୍ଣବମାନେ ସାଧୁ ସନ୍ନ୍ୟାସୀଙ୍କ ସତ୍କାର ନିଜର କ୍ୱାଇଁଠାରୁ ହେଲେ ଅଧିକ ବିଧିରେ କରିଥା'ନ୍ତି । ବୈଷ୍ଣବ, ସାଧୁ ସନ୍ନ୍ୟାସୀଙ୍କୁ ମୋ ସ୍ୱରୂପୀ ବୋଲି ମନେକରି ସତ୍କାର କରୁଥିବା ଉଚିତ ।''

ଉଦ୍ଧବ ପଚାରିଲେ, ''ଭଗବନ୍ ! ଆକାଶକୁ କିପରି ପୂଜା କରାଯିବ ?''

ଭଗବାନ୍ କହିଲେ, ''ହେ ଉଦ୍ଧବ ! ମୁଁ ସକଳ ପ୍ରାଣୀଙ୍କ ହୃଦୟ-କମଳରେ ବିରାଜମାନ କରୁଥାଏ । ହୃଦୟ କମଳରେ ମୋତେ, ବିଷ୍ଣୁଙ୍କୁ, ପୂଜା କରିବା ହେଉଛି ଆକାଶାଶ୍ରୟ ମୋର ପୂଜା । ଆକାଶ ଯେପରି ସର୍ବବ୍ୟାପକ ସେହିଭଳି ମୁଁ ସର୍ବବ୍ୟାପକ ।''

ଉଦ୍ଧବ ପଚାରିଲେ, ''ପ୍ରଭୁ ! ଆପଣଙ୍କୁ ବାୟୁରେ କିପରି ପୂଜା କରାଯାଏ ?''

ଭଗବାନ କହିଲେ, ''ହେ ଉଦ୍ଧବ ! ପ୍ରାଣ ଦଶ ପ୍ରକାରର। ସେମାନଙ୍କ ମଧ୍ୟରେ ମୁଖ୍ୟ ହେଉଛି ପ୍ରଧାନପ୍ରାଣ। ମନ୍ତ୍ର ସହିତ ପ୍ରାଣାୟାମ କରିବା ହେଉଛି ବାୟୁର ମୁଖ୍ୟ ପୂଜା।''

ଉଦ୍ଧବ କହିଲେ, ''ପ୍ରଭୁ ! ଜଳକୁ କିପରି ପୂଜା କରାଯାଏ ?''

ଭଗବାନ କହିଲେ, ''ଗଙ୍ଗା ଆଦି ନଦୀରେ ଅଥବା ପୁଣ୍ୟ ସରୋବରରେ ଅଥବା ବଡ଼ ବଡ଼ ଜଳାଶୟ ଜଳରେ ପୁଷ୍ପ, ଦୁଧ, ଚଢ଼ାଇ ପ୍ରାର୍ଥନା କଲେ ଜଳ ପୂଜା ହୋଇଥାଏ।''

ଉଦ୍ଧବ କହିଲେ, ''ପ୍ରଭୁ ! ଭୂମିରେ ଆପଣଙ୍କୁ କିପରି ପୂଜା କରାଯାଏ ?''

ଭଗବାନ କହିଲେ, ''ମନ୍ତ୍ର ହୃଦୟ ଦ୍ୱାରା ପୃଥିବୀରେ ବେଦୀ କରି ସେଥିରେ ମୋର ଉପସ୍ଥିତି ଭାବନା କରି ପୂଜା କରାଯିବା ଉଚିତ।''

ଉଦ୍ଧବ ଏଥର ପଚାରିଲେ, ''ପ୍ରଭୁ ! ଆତ୍ମପୂଜା କିପରି କରାଯାଏ ?''

ଭଗବାନ କହିଲେ, ''ନାନା ପ୍ରକାର ଭୋଗ ଦ୍ୱାରା ନିଜର ଅନ୍ତରାତ୍ମାକୁ ତୃପ୍ତ କର। ସୁନ୍ଦର ଅନ୍ନ କରି ମୁଖ ଦ୍ୱାରା ଅନ୍ତରାତ୍ମାକୁ ଆହୁତି ଦେବା ଉଚିତ। ଆଖି ମାଧ୍ୟମରେ ସୁନ୍ଦର ସୁନ୍ଦର ରୂପ ଦର୍ଶନ କରିବା ଉଚିତ। କାନ ଦ୍ୱାରା ଭକ୍ତି ଭାବ ପରିପୂର୍ଣ୍ଣ ସୁଲଳିତ ସୁମଧୁର ସଂଗୀତ ଶ୍ରବଣ କରିବା ଉଚିତ। ଏହିଭଳି ଅନ୍ତରାତ୍ମାକୁ ସନ୍ତୁଷ୍ଟ କରିବା ଉଚିତ।

ଉଦ୍ଧବ ପଚାରିଲେ, ''ପ୍ରାଣୀ ସମୁଦାୟରେ ଆପଣଙ୍କୁ କିପରି ପୂଜା କରାଯାଇ ପାରିବ ?''

ଭଗବାନ କହିଲେ, ''ହେ ଉଦ୍ଧବ ! ମୁଁ ତୃଣଠାରୁ ଆରମ୍ଭ କରି ବ୍ରହ୍ମାଙ୍କ ପର୍ଯ୍ୟନ୍ତ ଚର-ଅଚର ସବୁଥିରେ ସମାନ ରୂପରେ ବ୍ୟାପ୍ତ ହୋଇ ରହିଥାଏ। ଯେ ଭେଦଭାବ କରେ ସେ ଭୟ ପ୍ରାପ୍ତ ହୁଏ। ଏଣୁ ସମସ୍ତଙ୍କଠାରେ ସମଭାବ ରଖିବା ଉଚିତ। କାହାକୁ କୌଣସି ସମୟରେ ଅପମାନ ନ କରିବା ଉଚିତ। ମାନସିକ ସ୍ତରରେ ବି କାହାର ଅପକାର ନ କରିବା ଉଚିତ। ସବୁଥିରେ 'ମୁଁ' ଅଛି ବୋଲି ଭାବନା ଦୃଢ଼ ହେବା ଉଚିତ। ମୁଁ ହିଁ ସମସ୍ତଙ୍କଠାରେ ରମଣ କରୁଥାଏ ଓ ସବୁ ରୂପରେ ମୁଁ ହିଁ ଦୃଷ୍ଟି ଗୋଚର ହେଉଥିବା ଉଚିତ। ସୂର୍ଯ୍ୟରେ, ଅଗ୍ନିରେ, ବ୍ରାହ୍ମଣ, ଧେନୁ, ବୈଷ୍ଣବ, ଆକାଶ, ବାୟୁ, ପୃଥିବୀ, ଜଳ, ଆତ୍ମା ଅଥବା ସମସ୍ତ ପ୍ରାଣୀଙ୍କଠାରେ, ଯେଉଁଠାରେ ହେଉପଛେ କ୍ଷେତ୍ରଜ୍ଞଙ୍କ ପୂଜା କରୁଥିଲେ ଶଙ୍ଖ, ଚକ୍ର, ଗଦା ତଥା ପଦ୍ମଯୁକ୍ତ ମୋର ଚତୁର୍ଭୁଜ ଶାନ୍ତ ସ୍ୱରୂପକୁ ଧ୍ୟାନ କରିବା ଉଚିତ। ସୂର୍ଯ୍ୟ ମଣ୍ଡଳରେ ମୋର ହିଁ ଭାବନା କରିବା ଉଚିତ। ସମାହିତ ଚିତ୍ତରେ, ମୁଁ ବିଷ୍ଣୁଙ୍କୁ ପୂଜା କରୁଥିବା ଉଚିତ। ଏହି ଭଳି ହେ ଉଦ୍ଧବ ! ଯଜ୍ଞାଦି ଶୁଭ କର୍ମ କରିବା ଦ୍ୱାରା, ବାଂପୀ, କୂପ, ତଡ଼ାଗ, ବଗିଚା, ଧର୍ମଶାଳା, କରିବାଦ୍ୱାରା ଯେ କୌଣସି ଇଷ୍ଟ ଆଉ ପୂର୍ତ୍ତ କର୍ମ କରିବାଦ୍ୱାରା, ଏ ସମସ୍ତଦ୍ୱାରା ସମାହିତ ଚିତ୍ତରେ ମୋତେ ଆରାଧନା କଲେ, ତାହା ସବୁ ମୋର

ହିଁ ପୂଜା ହୋଇଥାଏ। ଏ ପ୍ରକାର ପୂଜାଦ୍ୱାରା ମୋର ହିଁ ପୂଜା ହୋଇଥାଏ। ଏବଂ ଏହାଦ୍ୱାରା ଭକ୍ତି ବଢ଼େ ଆଉ ଅନବରତ ସାଧୁ ସେବାଦ୍ୱାରା ମୋ ସ୍ୱରୂପର ଜ୍ଞାନ ହୁଏ।''

ଉଦ୍ଧବ କହିଲେ, ''ଭଗବନ୍! ସାଧନ ତ ଅନେକ! ଆପଣ ମୋତେ କୃପାକରି ସର୍ବଶ୍ରେଷ୍ଠ, ସରଳ, ସୁଗମ, ତଥା ସର୍ବୋପଯୋଗୀ ଏକମାତ୍ର ସାଧନ କ'ଣ ହୋଇପାରେ ତାହା ବୁଝାଇ ଦିଅନ୍ତୁ।''

ଭଗବାନ କହିଲେ, ''ଭାଇ ମୋର, ଶୁଣ! ମୁଁ ତୁମକୁ ଅନେକ ଥର କହିଛି, ତୁମେ ମୋ କଥାକୁ କାନିରେ ଗଣ୍ଠି ପକାଇ ରଖ। ଏହି ସଂସାର ଅସାର। ଏଥିରୁ ତରିବା ପାଇଁ ସତ୍‌ସଙ୍ଗ ସହିତ ଭକ୍ତିଯୋଗ ଛଡ଼ା ଅନ୍ୟ କୌଣସି ଉତ୍ତମ ସାଧନ ନାହିଁ, ମୋତେ ସାଧୁମାନଙ୍କ ଛଡ଼ା ଅନ୍ୟ କୌଣସି କଥା ଭଲ ଲାଗେ ନାହିଁ। ସାଧୁମାନଙ୍କୁ ମୁଁ ମୋ ହୃଦୟର ହାର ବୋଲି ମାନେ। ସେମାନଙ୍କ ଚରଣ ଧୂଳି ଲାଭ ନିମନ୍ତେ ମୁଁ ସେମାନଙ୍କ ପଛେ ପଛେ ଗୋଡ଼ାଇ ଥାଏ। ସାଧୁମାନେ ମୋତେ ସବୁବେଳେ ସ୍ମରଣ କରୁଥା'ନ୍ତି, ମନେପକାଉ ଥା'ନ୍ତି, ମୁହୂର୍ତ୍ତେ ବି ମୋତେ ଭୁଲନ୍ତି ନାହିଁ। ତେଣୁ ମୁଁ ମଧ ସେମାନଙ୍କ ସଙ୍ଗ ଆଦୌ ଛାଡ଼ିପାରେ ନାହିଁ। ସାଧୁମାନଙ୍କର ମୁଁ ହେଉଛି ଏକମାତ୍ର ଅବଲମ୍ବ, ସେମାନେ ମୋତେ ଛାଡ଼ି ଅନ୍ୟ କିଛି ଆଶା କରନ୍ତି ନାହିଁ। ଆଶା ତ ପୃଥକ୍ କଥା, ମୋ ଛଡ଼ା ସେମାନେ ଅନ୍ୟ କାହାକୁ ଚିହ୍ନନ୍ତି ବି ନାହିଁ। ଯେଉଁମାନେ ମୋ' ଠାରେ ଏତେ ମମତା ରଖିଥା'ନ୍ତି, ସେପରି ସ୍ଥଳରେ ମୁଁ ତାଙ୍କୁ କାହିଁକି ପାଖରେ ରଖିବି ନାହିଁ! ମୁଁ ସେମାନଙ୍କୁ ଭୁଲିଯିବି କିପରି ?''

ଉଦ୍ଧବ କହିଲେ, ''ଭଗବନ୍! ଆପଣଙ୍କୁ ପାଇବା ପାଇଁ ମୁଁ ଅନେକ ଉପାୟ ଶୁଣିଲି। କିନ୍ତୁ କେତେକ ଋଷି କହିଥା'ନ୍ତି, ସାଂଖ୍ୟ ଯୋଗଦ୍ୱାରା ଆପଣଙ୍କୁ ପାଇବା ସହଜ, ଆଉ କେତେକଙ୍କ ମତ ହେଉଛି, ଅବିରାମ ଧର୍ମ ପାଳନଦ୍ୱାରା ଆପଣ ପ୍ରାପ୍ତ ହୋଇଥା'ନ୍ତି, କିଏ ତପରେ, କିଏ ତ୍ୟାଗରେ, କିଏ ଦକ୍ଷିଣା ସହିତ ଯଜ୍ଞରେ କିଏ ଇଷ୍ଟପୂର୍ତ୍ତି ତୀର୍ଥଗମନରେ, ବ୍ରତ, ଯମ, ନିୟମରେ ଆପଣଙ୍କୁ ପ୍ରାପ୍ତ ହୋଇପାରେ ବୋଲି ମତ ବ୍ୟକ୍ତ କରନ୍ତି। ମୋତେ ଆପଣ ଠିକ୍ କଥା କୁହନ୍ତୁ। ଏ ସମସ୍ତ ଭିତରୁ କେଉଁଟି ଠିକ୍ ଓ କାହାକୁ ଅନୁସରଣ କଲେ ଆପଣଙ୍କୁ ପାଇବା ସୁଲଭ, ତାହା କୃପାକରି କହିବା ହୁଅନ୍ତୁ। ଏ ସମସ୍ତ ଭିତରୁ କେଉଁଟି ସରଳ ଓ ସୁଗମ ତାହା କୁହନ୍ତୁ।''

ଉଦ୍ଧବଙ୍କଠାରୁ ଏପରି କଥା ଶୁଣି ଭଗବାନ ହସିଲେ, ଆଉ କହିଲେ, ''ହେ ଉଦ୍ଧବ! ଶାସ୍ତ୍ର ଅନେକ, ଶାସ୍ତ୍ର ଅନନ୍ତ। ଯେତେ ଯେତେ ତତ୍ତ୍ୱଦର୍ଶୀ ମୁନି ହୋଇଛନ୍ତି ସେତେ ସେତେ ପୃଥକ ପୃଥକ ଶାସ୍ତ୍ର ସୃଷ୍ଟି ହୋଇଛି, ସେତେସେତେ ମତ ପୁଷ୍ଟ ହୋଇଛି। ମୋତେ ପାଇବା ପାଇଁ ତ ଅନେକ ଉପାୟ ଅଛି; କିନ୍ତୁ ଯେତେ ସରଳ, ସୁଗମ, ସିଧା ଆଉ ସର୍ବୋପଯୋଗୀ ସତ୍‌ସଙ୍ଗ ହୋଇଥାଏ, ସେପରି ଦ୍ୱିତୀୟ ଅନ୍ୟ କିଛି ହୋଇପାରନ୍ତି ନାହିଁ।

ଉଦ୍ଧବ କହିଲେ, ''ଭଗବନ୍! ଆପଣଙ୍କ କଥା ଯେତେ ଶୁଣିଲେ ବି ମୋର ତୃପ୍ତି ହେଉନାହିଁ। ମୁଁ ଆପଣଙ୍କ ମୁଖରୁ ସତ୍‌ସଙ୍ଗର ମହିମା ଶୁଣିବାକୁ ଚାହୁଁଛି। ପ୍ରକୃତରେ ସତ୍‌ସଙ୍ଗର ଅର୍ଥ କ'ଣ ?''

ଭଗବାନ କହିଲେ, ''ସଂସାରରେ ସର୍ବଶ୍ରେଷ୍ଠ ସତ୍ ହେଉଛି 'ମୁଁ'। ମୋ ଠାରେ ଆସକ୍ତି ହୋଇଯିବା ହିଁ ହେଉଛି ସତ୍‌ସଙ୍ଗ। ମୋ ଠାରେ ଯେଉଁମାନଙ୍କର ଆସକ୍ତି ହୋଇଯାଇଛି, ତା'ର ସଂସାରରୁ ଆସକ୍ତି ଦୂର ହୋଇଯାଏ। ଯେତେବେଳେ ଯାହାର ସଂସାରକୁ ଆସକ୍ତି ଦୂର ହୋଇଯାଏ, ମୋ ପ୍ରତି ମନ ଲାଗିଯାଏ, ସେଠାରେ ସେ ଭବସାଗରରୁ ତରିଯାଏ। ଏବେ ତୁମକୁ ସତ୍‌ସଙ୍ଗର ମହିମା ବିଶଦ୍ ଭାବରେ କହୁଛି, ତୁମେ ଦକ୍ଷଚିତ୍ତ ହୋଇ ଶୁଣ।''

ସୂତ କହୁଛନ୍ତି ''ହେ ମୁନିଗଣ! ଉଦ୍ଧବଙ୍କୁ ଭଗବାନ ଯେପରି ସତ୍‌ସଙ୍ଗର ମହିମା କହିଥିଲେ ମୁଁ ତାହା ବର୍ଣ୍ଣନା କରୁଛି। ଏହା ଅତ୍ୟନ୍ତ ଗୂଢ଼ ଗୋପନୀୟ ରହସ୍ୟ।''

## ଛପ୍ପୟ

ମୁଖ୍ୟ ପ୍ରାନ୍ ତେଁ ବାୟୁ ହୃଦୟ ଆକାଶ ଧ୍ୟାନ ଧରି।
ପୁଷ୍ପାଦିକ ତେଁ ନୀର ଭୂମି ବେଦୀ ଥାପନ କରି॥
ଅନ୍ତରାତ୍ମା କରୈ ତୁଷ୍ଟ ଭୋଗନି ତେଁ ନିୟମିତ।
ପୂଜି କରି ସମ ଦୃଷ୍ଟି ସକଲ ପ୍ରାନିନି ମହଁ ନିତନିତ॥
ଶାନ୍ତ ଚତୁରଭୁଜ ରୂପକୋ, କରୈ ଧ୍ୟାନ ହ୍ୱେଁ ସମାହିତ।
କରୈ କରମ ମେରେ ନିମିତ, ମୋମେଁ ରଖେଁ ନିତ୍ୟଚିତ୍ତ॥



# ସତ୍ସଙ୍ଗର ମହିମା

ମଦ୍‌କାମା ରମଣଂ ଜାରମସ୍ୱରୂପବିଦୋଽବଲାଃ ।
ବ୍ରହ୍ମ ମାଂ ପରମଂ ପ୍ରାପୁଃ ସଙ୍ଗାଚ୍ଛତସହସ୍ରଶଃ ॥ ★
[ଶ୍ରୀଭା.୧୧ସ୍କ,୧୨ଅ.୧୩ଶ୍ଲୋକ]

### ଛପ୍‌ପୟ

ଭକ୍ତିଯୋଗ ସତ୍‌ସଙ୍ଗ ବିନା ସୁଖ ନହିଁ ନର ପାବେଁ ।
ଚାହଂ ଜପ ତପ କରେଁ ଯୋଗ କରି ଧ୍ୟାନ ଲଗାବେଁ ॥
ସତ୍‌ସଂଗତିତେଁ ତରେ ଦୈତ୍ୟ ଅନ୍ତ୍ୟଜ ଅଘକାରୀ ।
ଅସୁର, ଗୀଧ, ଗଜ, ଗାୟ, ଗୋପିଗନ କୁବ୍‌ଜା ନାରୀ ॥
ନହିଂ କରୀ ସେବା ମହତ, ବେଦ ପଢ଼େ ନହିଁ ବ୍ରତ କରେ ।
କରି ସତ୍‌ସଂଗତି ଜଗତ ମହଁ, ଜୀବ ଚରାଚର ବହୁ ତରେ ॥

ଏହି ପ୍ରାଣୀ ଆସକ୍ତିରେ ଫସିଯାଏ । ଯାହା ମନକୁ ଧରିପକାଏ ମନ ତା'ର ହୋଇଯାଏ । ସଂସାର ଚାଲିଛି କିପରି? ସଂସାର କେବଳ ଆକର୍ଷଣ ବଳରେ ଚାଲିଛି । ପୁରୁଷର ମନକୁ ସ୍ତ୍ରୀ ଆକର୍ଷଣ କରିଛି, ସ୍ତ୍ରୀର ମନ ପୁରୁଷ ଆଡ଼କୁ ଆକର୍ଷିତ ହୋଇଯାଇଛି । ପୁରୁଷ-ସ୍ତ୍ରୀ ଉଭୟଙ୍କ ମନ ପୁତ୍ରକନ୍ୟାଙ୍କ ପ୍ରତି ଆକର୍ଷିତ ହୋଇରହିଛି । ଏହି ଆକର୍ଷଣ କମେ ନାହିଁ । ମରିବା ସମୟରେ ବି ସ୍ତ୍ରୀ ପୁରୁଷକୁ ପୁରୁଷ ସ୍ତ୍ରୀକୁ, ସନ୍ତାନମାନଙ୍କୁ ମନେପକାଉଥାଏ । ଏଥିଯୋଗୁଁ ମଣିଷ ଯେଉଁ ଯେଉଁ ଯୋନିକୁ ଯାଏ ସେହି ସେହି ଯୋନିରେ ସ୍ତ୍ରୀ ଓ ସନ୍ତାନମାନଙ୍କୁ ପାଏ । ନିଜର କେହି ନୁହନ୍ତି । ଅନ୍ୟଙ୍କଠାରେ ନିଜର-ଭାବ, ଆପଣାର ସ୍ଥାପିତ କରିଥା'ନ୍ତି । ଜଡ଼ଭରତଙ୍କ ମନ ହରିଣ ଶାବକ ଠାରେ ଲାଗିଯାଇଥିଲା । ଫଳରେ ତାଙ୍କୁ ହରିଣ ହେବାକୁ ପଡ଼ିଲା । ଏହି ଆସକ୍ତି ମନକୁ ଜପ, ତପ, ନିୟମ, ସଂଯମ କରିବାକୁ ଦିଏ ନାହିଁ । ଏହା ଏତେ ନୀଚ ଯେ, ଏହା ଅତି ଘୃଣ୍ୟ ସ୍ଥାନରେ ଫସିଯାଏ ଯାହାକି କହିବାକୁ ବି ଖରାପ ଲାଗେ । ଚକ୍ରବର୍ତ୍ତୀ ଭରତ ନିଜର ତ୍ରୈଲୋକ୍ୟ ସୁନ୍ଦରୀ ପତ୍ନୀଙ୍କୁ ଛାଡ଼ିଗଲେ, ଫୁଲ ଭଳି ରାଜକୁମାରଙ୍କ ମୋହକୁ ତୃଣ ସମ ଛିଣ୍ଡାଇ ଦେଲେ, ବଣକୁ ଯାଇ ସମାଧିସ୍ଥ ହେଲେ । ଅତି ଉଚ୍ଚ ସ୍ଥିତିରେ ଉପନୀତ ହେଲେ । ପରିଶେଷରେ 'ଦୟା' ତାଙ୍କ ସହିତ ଛଳ କଲା । ହବନ କରିବା ସମୟରେ ହାତ ପୋଡ଼ିଗଲା । ମନ ଏକ ସାମାନ୍ୟ ପଶୁ ପ୍ରତି ଆସକ୍ତ ହୋଇଗଲା । କୌଣସି ପ୍ରକାର

---

★ ଶ୍ରୀ ଭଗବାନ କୃଷ୍ଣଚନ୍ଦ୍ର ଉଦ୍ଧବଙ୍କୁ କହୁଛନ୍ତି, "ହେ ଉଦ୍ଧବ! ଦେଖ, ବ୍ରଜର ଗୋପୀମାନେ ମୋର ବାସ୍ତବିକ ସ୍ୱରୂପ ବିଷୟରେ ଅନଭିଜ୍ଞ ଥିଲେ । ସେ ମୋତେ ପରମ ରମଣ ବୋଲି ଜାଣିଥିଲେ । ଆଉ ଜାର-ବୁଦ୍ଧିରେ ମୋତେ କାମନା କରୁଥିଲେ । ଏହିଭଳି ଶତ କୋଟି ଅବଳା ଅନବରତ ମୋର ସଙ୍ଗ ଲାଭ କରି ମୋର ପରବ୍ରହ୍ମ ସ୍ୱରୂପ ପ୍ରାପ୍ତ ହୋଇଛନ୍ତି ।

ଯଦି ଏହି ମନ କୌଣସି ମହାପୁରୁଷଙ୍କ ପଦାରବିନ୍ଦ ପ୍ରତି ଆସକ୍ତ ହୋଇଯାଏ ତେବେ ସକଳ ଦୁଃଖ ଦୂର ହୋଇଯାଆନ୍ତା। ଏହି କ୍ଷୁଦ୍ର ମନ ମହାପୁରୁଷଙ୍କ ଚରଣରେ ଆସକ୍ତ ନ ରହି କାମିନୀଙ୍କ ପ୍ରତି ଆସକ୍ତ ହୋଇଯାଏ। ଏଣୁ କାମମୟ ହୋଇଯାଏ। ଭଗବାନ ତ ନିଷ୍କାମ। ଯଦି କାମପ୍ରତି ତାଙ୍କ ମନ ଆସକ୍ତ ହୋଇଯାଆନ୍ତା ତେବେ କାମ ତାଙ୍କୁ ଦେଖି ଦୌଡ଼ି ପଳାନ୍ତା, କାରଣ ସେ ହେଉଛନ୍ତି କାମାରୀ।

ମହର୍ଷି ସୂତ ଶୌନକାଦି ମୁନିମାନଙ୍କୁ କହୁଛନ୍ତି, 'ହେ ମୁନିଗଣ! ଉଦ୍ଧବ ଯେତେବେଳେ ଭଗବାନଙ୍କୁ ତାଙ୍କୁ ପାଇବାର ଏକମାତ୍ର, ସରଳ, ସୁଗମ ଉପାୟ ପଚାରିଲେ, ସେତେବେଳେ ଭଗବାନ ତାଙ୍କୁ କହିଲେ, ''ହେ ଉଦ୍ଧବ! ଏପରି ଏକ ସରଳ, ସୁଗମ, ଅତ୍ୟନ୍ତ ଗୂଢ଼ ଆଉ ଗୋପନୀୟ ସାଧନ ଅଛି ଯାହା କାହାକୁ କୁହାଯାଇପାରେ ନାହିଁ। ଏହା ସମସ୍ତଙ୍କ ଆଗରେ କହିବା ଭଳି ବସ୍ତୁ ନୁହେଁ। କିନ୍ତୁ ତୁମେ ତ ସର୍ବସାଧାରଣଙ୍କ ଭଳି ନୁହଁ। ତୁମେ ତ ମୋର ଅନନ୍ୟ ସେବକ। ମୁଁ ଯେଉଁଦିନଠାରୁ ମଥୁରାକୁ ଆସିଲିଣି ତୁମେ ମୋର ସେହିଦିନଠାରୁ ସେବା କରୁଛ। ତୁମେ ତୁମର ପୂରା ଜୀବନ ମୋ ସେବାରେ ହିଁ ଅତିବାହିତ କରିଦେଇଛ। ତୁମ ଭଳି ଅନ୍ୟ କେହି ମୋର ସେବକ ନାହାନ୍ତି। ତୁମେ ମୋର ସେବକ କେବଳ ନୁହଁ, ତୁମେ ମୋର ସୁହୃଦ୍ ମଧ। ତୁମର ଓ ମୋର ହୃଦୟ ଏକା ଭଳି, ତୁମେ ଅତ୍ୟନ୍ତ ପ୍ରେମମୟ ହୃଦୟବାନ୍। ତୁମେ ବି ମୋର ସଖା। ସଂସାରରେ ସମସ୍ତଙ୍କୁ କିଛି ନା କିଛି ଲୁଚା ଯାଏ। କିନ୍ତୁ ସଖାଙ୍କଠାରେ କୌଣସି କଥା ଲୁଚାଯାଏ ନାହିଁ। ପତିବ୍ରତା ସମସ୍ତଙ୍କ ସମ୍ମୁଖରେ ମୁହଁ ତଳକୁ ପୋତି ରହିଥାଏ, କାହା ସହିତ ଦୃଷ୍ଟି ମିଳାଏ ନାହିଁ। କିନ୍ତୁ ପତି ପାଖରେ କୌଣସି କଥା ଲୁଚାଏ ନାହିଁ। ଏଣୁ ମୁଁ ତୁମକୁ ଏହି ରହସ୍ୟମୟ କଥା କହିବି।

''ଦେଖ, ଯୋଗଦ୍ୱାରା ମୋତେ ପାଇ ହୁଏ। ଚିତ୍ତର ପ୍ରବୃତ୍ତିଗୁଡ଼ିକୁ ନିରୋଧ କରିବା ହିଁ ଯୋଗ। ଆସନ, ପ୍ରାଣାୟାମ, ଧାରଣା, ଧ୍ୟାନ ଆଉ ସମାଧି ମାଧ୍ୟମରେ ଚିତ୍ତକୁ ସଂଯମ କରାଯାଏ। କିନ୍ତୁ ଏଥିରେ ଅତ୍ୟଧିକ କ୍ଲେଶ ହୁଏ। ବେଳେ ବେଳେ ଯୋଗାରୂଢ଼ ହୋଇ ଯିବାପରେ ବି ପତନ ହୋଇଯାଏ।''

''ସାଂଖ୍ୟଜ୍ଞାନ ଦ୍ୱାରା ମଧ ମୋତେ ପ୍ରାପ୍ତ ହୋଇପାରେ। ସାଂଖ୍ୟଜ୍ଞାନରେ ତତ୍ତ୍ୱର ସଂଖ୍ୟା କରାଯାଏ। ଯିଏ ଛବିଶ ତତ୍ତ୍ୱକୁ ଜାଣିଯାଏ ସେ ଜଟୀ, ମୁଣ୍ଡୀ, ଗୃହସ୍ଥୀ, ବାନପ୍ରସ୍ଥୀ, ଯେ କେହି ବି ହେଉପଛେ, ମୁକ୍ତ ହୋଇଯାଏ। କିନ୍ତୁ ଏପରି ନିଷ୍ଠା ପାଇବା ଅତ୍ୟଧିକ କଠିନ କଥା।

''ଧର୍ମ ଦ୍ୱାରା ମୋତେ ପ୍ରାପ୍ତି ହେବା କଥା ଋଷି-ମୁନିମାନେ କୁହନ୍ତି। ଜପ, ତପ, ତ୍ୟାଗ, ଇଷ୍ଟ, ପୂର୍ତ୍ତ, ଦକ୍ଷିଣା, ବ୍ରତ, ବେଦ, ତୀର୍ଥ ତଥା ଯମ ନିୟମ ଆଦି ଯେଉଁ ସବୁ ସାଧନାର ନାମ ତୁମେ କହିଛ, ସେ ସମସ୍ତ ଦ୍ୱାରା ମୁଁ ବଶୀଭୂତ ହୁଏ। କିନ୍ତୁ ସର୍ବସଙ୍ଗ-ନିବାରକ ସତ୍‌ସଙ୍ଗ ଦ୍ୱାରା ମୁଁ ଯେପରି ବଶୀଭୂତ ହୁଏ ସେପରି ଉପରୋକ୍ତ ସାଧନଗୁଡ଼ିକରେ ହୁଏ ନାହିଁ।''

ଉଦ୍ଧବ ପଚାରିଲେ, ''ପ୍ରଭୁ! ସତ୍‌ସଙ୍ଗ କ'ଣ? ସାଧୁମାନଙ୍କ ଗହଣରେ ବସି ସେମାନଙ୍କ ଉପଦେଶ ଶୁଣିବାକୁ ସତ୍‌ସଙ୍ଗ କୁହାଯାଏ ନା?''

ଭଗବାନ କହିଲେ, ''ହେ ଉଦ୍ଧବ! ମହାନ୍ ପୁରୁଷଙ୍କ ସଙ୍ଗକୁ ବି ସତ୍ସଙ୍ଗ କୁହାଯାଏ। କିନ୍ତୁ ଅନେକ ଧୂର୍ତ୍ତ ଲୋକ ନିଜର ସ୍ୱାର୍ଥ ସିଦ୍ଧି ନିମନ୍ତେ, ପଇସା ରୋଜଗାର କରିବା ଉଦ୍ଦେଶ୍ୟରେ ବି ସତ୍ସଙ୍ଗର ମୁଖା ପିନ୍ଧିଥା'ନ୍ତି। ସେମାନଙ୍କର ମୂଳ ଉଦ୍ଦେଶ୍ୟ ଥାଏ, ଯେକୌଣସି ଉପାୟରେ ଲୋକଙ୍କୁ ଏକତ୍ରିତ କରିବା, ଆଉ ଏକତ୍ରିତ ହୋଇଯିବା ପରେ ସେମାନଙ୍କୁ ଫସେଇ ଔଷଧାଳୟ, ପାଠଶାଳା ଆଦି ନାମରେ କିଛି କିଛି ଦ୍ରବ୍ୟ ସଂଗ୍ରହ କରିବା। ଏହା ଏକପ୍ରକାର ସତ୍ସଙ୍ଗ ବ୍ୟବସାୟ। ଏଥିରେ ପରଲୋକ ସମ୍ବନ୍ଧୀ କିଛି କଥା ନ ଥାଏ। **ଯାହାଙ୍କ ସଙ୍ଗରେ ଭଗବାନଙ୍କ ପ୍ରତି ପ୍ରେମ ବନ୍ଧନ ହୋଇପାରେ, ସେହି ମହାପୁରୁଷଙ୍କ ସଙ୍ଗକୁ ହିଁ ସତ୍ସଙ୍ଗ କୁହାଯାଏ।** କିନ୍ତୁ ଏଠାରେ ସତ୍ସଙ୍ଗର ଅର୍ଥ ଅନ୍ୟପ୍ରକାର। **ସଂସାରରେ ଏକମାତ୍ର ସତ୍ୟ ହେଉଛି 'ମୁଁ'। ମୋ ଠାରେ କୌଣସି ପ୍ରକାର ଆସକ୍ତି ହୋଇଗଲେ ଅନ୍ୟ କୌଣସି ପ୍ରକାର ସାଧନାର ଆବଶ୍ୟକତା ରହେ ନାହିଁ।** ମୋତେ ଆସକ୍ତି କରୁଥିବା ସାତ୍ତ୍ୱିକ ପୁରୁଷମାନଙ୍କର ହିଁ ଉଦ୍ଧାର ହୋଇଛି, ଏପରି କଥା ନୁହେଁ। ଦୈତ୍ୟ, ରାକ୍ଷସ, ମୃଗ, ପକ୍ଷୀ, ଗନ୍ଧର୍ବ, ଅପ୍ସରା, ନାଗ, ସିଦ୍ଧ, ଚାରଣ, ଗୁହ୍ୟକ, ବିଦ୍ୟାଧର, ବୈଶ୍ୟ, ଶୂଦ୍ର, ସ୍ତ୍ରୀ, ଅନ୍ତ୍ୟଜ ଆଦି ଯେଉଁମାନେ ଘୋର ରାଜସ-ତାମସ ସ୍ୱଭାବର, ସେମାନେ ବି ମୋ ସଙ୍ଗ ଲାଭକରି, ମୋ ପ୍ରତି ଆସକ୍ତ ହୋଇ, ତରି ଯାଇଛନ୍ତି।''

ଉଦ୍ଧବ କହିଲେ, ''ପ୍ରଭୁ! ଦୈତ୍ୟ ତ ଘୋର ତାମସୀ ହୋଇଥା'ନ୍ତି। ସେମାନଙ୍କ ଭିତରୁ କେଉଁମାନେ ଆପଣଙ୍କୁ ଭଜନ କରି ଉଦ୍ଧାର ପାଇଛନ୍ତି ?''

ଭଗବାନ କହିଲେ, ''ପ୍ରହ୍ଲାଦ ହେଉଛି ଦୈତ୍ୟରାଜ ହିରଣ୍ୟକଶିପୁର ପୁଅ। ମୋ ପ୍ରତି ଅତ୍ୟଧିକ ଆସକ୍ତି ରଖିଥିବା ହେତୁ ଭକ୍ତାଗ୍ରଗଣ୍ୟ ହେଲା। ଦେବତାଙ୍କ ସଭାରେ ବି ଯେତେବେଳେ ଭଗବଦ୍‌ଭକ୍ତଙ୍କ କଥା ପଡ଼େ, ଗଣନା କରାଯାଏ, ସର୍ବପ୍ରଥମେ ପ୍ରହ୍ଲାଦଙ୍କ ନାମ ଉଚ୍ଚାରିତ ହୁଏ।

''ବୃଷପର୍ବା ଥିଲା ଦୈତ୍ୟ। ଅସୁରଙ୍କ ଗୁରୁ ଶୁକ୍ରାଚାର୍ଯ୍ୟ ହେଉଛନ୍ତି ତାଙ୍କ ଗୁରୁ। ତେବେ ବି ତା'ର ମୋ ପ୍ରତି ଆସକ୍ତି ଥିଲା। ମୋ ପ୍ରତି ତା'ର ଅନୁରାଗ ଥିଲା।

''ପ୍ରହ୍ଲାଦଙ୍କ ପୁତ୍ର ବିରୋଚନ ମଧ ମୋର ଭକ୍ତ ଥିଲା। ତା'ପୁଅ ବଳି ତ ମୋ ପ୍ରତି ଅତ୍ୟଧିକ ଆସକ୍ତ ହୋଇ ମୋତେ ତା'ର ଦ୍ୱାରପାଳ କରିଦେଲା। ମୁଁ ବାମନ ରୂପରେ ତ ଯାଇଥିଲି ତାକୁ ଠକିବାକୁ, ହେଲେ ସେ ତା' ପ୍ରେମରେ ମୋତେ ଠକି ଦେଲା। ଏବେ ମୁଁ ତା' ଘରେ ସବୁବେଳେ ଦ୍ୱାରପାଳ ରୂପେ ରହି ତାକୁ ରକ୍ଷା କରୁଛି।

''ତା' ପୁଅର ନାମ ବାଣାସୁର। ବାଣାସୁରର ଝିଅ ଉଷା ମୋର ନାତି ଅନିରୁଦ୍ଧକୁ ହରଣକରି ତା' ଘରକୁ ନେଇଗଲା। ବସ୍ତୁତଃ ସେ ଅନିରୁଦ୍ଧଙ୍କୁ ବନ୍ଦୀ କରିଦେଲା। ଆମେ ସମସ୍ତେ ବାଣାସୁରର ରାଜଧାନୀ ଶୋଣିତପୁରକୁ ଗଲୁ। ସେ ଆମ ସହିତ ଯୁଦ୍ଧ କଲା। ତା'ର ସହସ୍ର ହାତ। ମୁଁ ତା'ର ସବୁପାକ ହାତ କାଟି ଦେଲି। ତା'ର ମାତ୍ର ଚାରିଟି ହାତ ଥିଲା। ସେ ତା'ର ଅନନ୍ୟ ଭକ୍ତି ଦ୍ୱାରା ଶଙ୍କରଙ୍କର ଅନନ୍ୟ ଗଣ ହୋଇଗଲା ଓ ମୋର ବି ଭକ୍ତ ରୂପେ ରହିଲା।''

ଉଦ୍ଧବ ପଚାରିଲେ, ''ଭଗବାନ୍! ଦାନବଙ୍କ ମଧ୍ୟରେ କିଏ କ'ଣ ଆପଣଙ୍କ ଭକ୍ତ ହୋଇଛି ?''

ଭଗବାନ କହିଲେ, ''ଭକ୍ତଙ୍କର ତ କୌଣସି ଜାତି ନ ଥାଏ। ଯାହାର ମୋ ପ୍ରତି ଆସକ୍ତି ହୋଇଗଲା, ସେ ମୋ ଭକ୍ତ ହୋଇଗଲା। ଦାନବଙ୍କ ମଧ୍ୟରେ ମୟ ଦାନବ ହେଉଛି ମୋର ପରମ ଭକ୍ତ। ମୋର ଉପାସନା କରି ସେ ବିବିଧ ପ୍ରକାର ରଚନା କରିବାର ଶକ୍ତି ପ୍ରାପ୍ତ ହୋଇଛି।''

ଉଦ୍ଧବ ପଚାରିଲେ, ''ରାକ୍ଷସଙ୍କ ଭିତରେ କେହି ଏପରି ଭକ୍ତ ହୋଇଛନ୍ତି କି?''

ଭଗବାନ କହିଲେ, ''ହଁ, ହୋଇନାହାନ୍ତି କାହିଁକି? ରାକ୍ଷସଙ୍କ ଭିତରେ ବିଭୀଷଣ ମୋର ପରମ ଭକ୍ତ ହୋଇ, ମୋଠାରେ ପ୍ରଗାଢ଼ ଆସକ୍ତି ରଖି ସଂସାରରେ ସର୍ବଶ୍ରେଷ୍ଠ ପୂଜନୀୟ ଭକ୍ତ ରୂପେ ପରିଚିତ ହୋଇଛି। ସେ ତା'ର କୁଟୁମ୍ବ, ପରିବାରବର୍ଗଙ୍କୁ ପରିତ୍ୟାଗ କରି ମୋ ଶରଣକୁ ପଳାଇ ଆସିଥିଲା। ମୁଁ ତାକୁ ଶରଣ ପ୍ରଦାନ କଲି। ନିଜର କରିନେଲି। ସେ ମୋ ସଙ୍ଗ କଲା। ସେ ରାକ୍ଷସ ହୋଇ ବି ମୋ ପୂଜା ସହିତ ପୂଜା ପାଇବାରେ ଲାଗିଲା। ସେ ମୋର ଏକ ମୁଖ୍ୟ ପାର୍ଷଦ ରୂପେ ପରିଗଣିତ।''

ଏହା ଶୁଣି ଉଦ୍ଧବ ଆଗ୍ରହରେ ପଚାରିଲେ, 'ପ୍ରଭୁ! ବାନରଙ୍କ ଭିତରୁ ଆପଣଙ୍କର ଏପରି କେହି ସତ୍‌ସଙ୍ଗୀ ଭକ୍ତ ଅଛନ୍ତି?''

ଭଗବାନ୍ ତତ୍‌କ୍ଷଣାତ୍ କହିଲେ, ''ହଁ! ହଁ! ଅନେକ ଅଛନ୍ତି। ବସ୍ତୁତ ସମସ୍ତ ବାନର ହିଁ ମୋର ଭକ୍ତ। ମୋର ଭକ୍ତିଯୋଗୁଁ ହିଁ ସକଳ ବାନର ଘରଦ୍ୱାରର ମମତା ତ୍ୟାଗକରି ମୋ ସହିତ ଲଙ୍କାକୁ ଯାଇଥିଲେ ଯୁଦ୍ଧକରିବା ପାଇଁ। ସେମାନଙ୍କ ମଧ୍ୟରୁ ହନୁମାନ ହେଉଛନ୍ତି ଭକ୍ତାଗ୍ରଗଣ୍ୟ। ହନୁମାନ ଓ ମୋ ମଧ୍ୟରେ ସାମାନ୍ୟମାତ୍ର ଅନ୍ତର ନାହିଁ। ପ୍ରଭେଦ ନାହିଁ। ମୋତେ ପୂଜା କରିବା ଭଳି ସେ ପୂଜା ପାଆନ୍ତି। ତାଙ୍କୁ ପୂଜା କଲେ ବି ମୁଁ ପ୍ରସନ୍ନ ହୁଏ। ସୁଗ୍ରୀବ ବି ମୋର ପରମ ଭକ୍ତ। ସେମାନଙ୍କର ମୋ ଠାରେ ଗଭୀର ଆସକ୍ତି ଥିଲା। ଜାମ୍ବବାନ୍ ମୋର ଅତି ପ୍ରିୟ ଭକ୍ତ। ବାନର ଓ ଭାଲୁମାନେ, ସମସ୍ତେ ମୋ ପ୍ରତି ଖୁବ୍ ଅନୁରାଗ ରଖିଥିଲେ। ମୋ ସଙ୍ଗଲାଭ କରି ଜାମ୍ବବାନ ଭକ୍ତଶିରୋମଣି ହୋଇଛନ୍ତି। କୃଷ୍ଣାବତାରରେ ମୁଁ ତାଙ୍କ ସହିତ ଦ୍ୱନ୍ଦ୍ୱ ଯୁଦ୍ଧକରି ତାଙ୍କ ଅଭିଳାଷ ଚରିତାର୍ଥ କରିଛି। ଏବଂ ତାଙ୍କ କନ୍ୟା ଜାମ୍ବବତୀଙ୍କୁ ପତ୍ନୀରୂପେ ଗ୍ରହଣ କରିଛି।'' ★

---



ସୁଗ୍ରୀବ ହନୁମାନୃକ୍ଷୋ ଗଜୋ ଗୃଧ୍ରୋ ବଣିକ୍‌ପଥଃ।
ବ୍ୟାଧଃ କୁବ୍‌ଜା ବ୍ରଜେ ଗୋପ୍ୟୋ ଯଜ୍ଞପତ୍ନ୍ୟସ୍ତଥପରେ ॥୬॥
ତେ ନାଧୀତଶ୍ରୁତିଗଣା ନୋପାସିତମହତ୍ତମାଃ।
ଅବ୍ରତାତପ୍ତତପସଃ ସତ୍‌ସଙ୍ଗାନ୍‌ମାମୁପାଗତାଃ ॥୭॥

ସତ୍‌ସଙ୍ଗ ଦ୍ୱାରା ହିଁ ସୁଗ୍ରୀବ, ହନୁମାନ୍, ଜାମ୍ବବାନ୍, ଗଜେନ୍ଦ୍ର, ଜଟାୟୁ, ତୁଳାଧାର, ବୈଶ୍ୟଦ୍ୱ, ଧର୍ମବ୍ୟାଧ, କୁବ୍‌ଜା, ଗୋପୀଗଣ, ଯଜ୍ଞପତ୍ନୀଗଣ, ଓ ଅନ୍ୟ ଅନେକ ଲୋକ ମୋତେ ପ୍ରାପ୍ତ ହୋଇଛନ୍ତି।

ଏମାନେ କେହି ନା ବେଦ ସ୍ୱାଧ୍ୟାୟ କରିଛନ୍ତି ନା ବିଧିପୂର୍ବକ କୌଣସି ମହାପୁରୁଷଙ୍କୁ ଉପାସନା କରିଛନ୍ତି। ସେହିଭଳି ଏମାନେ କୌଣସି କୃଚ୍ଛଚାନ୍ଦ୍ରାୟଣ ଆଦି ବ୍ରତ ବି କୌଣସି ତପ ଘୋର ସାଧନା ବି କରିନାହାନ୍ତି। କେବଳ ସତ୍‌ସଙ୍ଗ ପ୍ରଭାବରେ ହିଁ ସେମାନେ ମୋତେ ପ୍ରାପ୍ତ ହୋଇଯାଇଛନ୍ତି।

ଉଦ୍ଧବ ପଚାରିଲେ, ''ପଶୁଙ୍କ ଭିତରେ ଆପଣଙ୍କର କିଏ ଭକ୍ତ ହୋଇଛି କି ପ୍ରଭୁ ?''

ଭଗବାନ କହିଲେ, ''ଉଦ୍ଧବ! ଗଜ କ'ଣ ? ସେ ପଶୁ ତ। ଯେତେବେଳେ କୁମ୍ଭୀର ତା'ର ଗୋଡ଼କୁ କାମୁଡ଼ି ଟାଣିଲା ସେ ଆର୍ତ୍ତସ୍ୱରରେ ମୋତେ ଡାକପକାଇଲା। ମୁଁ ଗରୁଡ଼ାରୂଢ଼ ହୋଇ ସହସା ତା' ପାଖରେ ପହଞ୍ଚି କୁମ୍ଭୀରର ଶିର ଛେଦନ କରି ଗଜକୁ ରକ୍ଷା କଲି। ମୋ ପ୍ରତି ଆସକ୍ତି ଥିବାରୁ ସେ ତାମସୀ ଗଜଯୋନିରୁ ଉଦ୍ଧାର ପାଇ ବିମୁକ୍ତ ହୋଇଗଲା। ବ୍ରଜର ହରିଣ, ପଶୁ, ପକ୍ଷୀ, ଏପରିକି ଯାମଳାର୍ଜୁନ ବୃକ୍ଷ ବି ମୋ ସଂଗ ଲାଭକରି ପବିତ୍ର ହୋଇଯାଇଛନ୍ତି।''

ଉଦ୍ଧବ ପଚାରିଲେ, ''ଭଗବାନ! ପକ୍ଷୀଙ୍କ ଭିତରେ ଆପଣଙ୍କ ବଡ଼ ଭକ୍ତ କିଏ ?''

ଭଗବାନ କହିଲେ, ''ପକ୍ଷୀଙ୍କ ଭିତରେ ଗୃଧ୍ରରାଜ ଜଟାୟୁ ମୋର ପରମ ଭକ୍ତ ଥିଲେ। ସତ୍‌ସଙ୍ଗ ପ୍ରଭାବରେ ହିଁ ସେ ପରମ ଗତି ଲାଭ କଲେ। ରାମ ରୂପରେ ମୁଁ ସ୍ୱୟଂ ପୁତ୍ର ଭଳି ଗୃଧ୍ରରାଜର ଦାହସଂସ୍କାର ଆଦି କରିଥିଲି।''

ଉଦ୍ଧବ ପଚାରିଲେ, ''ବୈଶ୍ୟ, ଶୂଦ୍ର ଯୋନିରେ ଆପଣଙ୍କର କ'ଣ କେହି ଭକ୍ତ ହୋଇଛନ୍ତି ?''

ଭଗବାନ କହିଲେ, ''ଏମିତି ତ ଅନେକ ଭକ୍ତ ହୋଇଛନ୍ତି। ତୁଳାଧାର ବୈଶ୍ୟ ମୋ ପ୍ରତି ଗଭୀର ଆସକ୍ତି ରଖି ଥିବାରୁ ଧର୍ମର ସର୍ବଶ୍ରେଷ୍ଠ ଜ୍ଞାତା ହୋଇପାରିଥିଲା। ଧର୍ମ-ବ୍ୟାଧ ମୋ ପ୍ରେମରେ ହିଁ ତା'ର ପ୍ରଭାବ ବିସ୍ତାର କରିପାରିଥିଲା। ମୁଁ କେତେ ଜଣଙ୍କ ନାଁ କହିବି? ବ୍ରଜର ତୃଣ, ବୃକ୍ଷ, ଖଗ, ମୃଗ, ଧେନୁ, ଗୋପୀ ଏମାନେ ସମସ୍ତେ ମୋର ସତ୍‌ସଙ୍ଗ ଜନିତ ଭକ୍ତିଯୋଗର ପ୍ରଭାବରେ ଅସାର ସଂସାରକୁ ସୁଗମତାର ସହିତ ତରି ଯାଇ 'ମୁଁ' ପରଂବ୍ରହ୍ମକୁ ପ୍ରାପ୍ତ ହୋଇଗଲେ।

ହେ ଉଦ୍ଧବ! ବୈଦିକ ମାର୍ଗରେ ମୋତେ ପ୍ରାପ୍ତ ହେବାପାଇଁ ବ୍ରହ୍ମଚର୍ଯ୍ୟ ବ୍ରତ ଠାରୁ ଆରମ୍ଭକରି ଗୁରୁଗୃହରେ ରହି ନିୟମପୂର୍ବକ ବେଦ ଅଧ୍ୟୟନ କରିବା ଆବଶ୍ୟକ ହୋଇଥାଏ। ଆଶ୍ରମ ବ୍ୟବସ୍ଥା ଅନୁସାରେ ଧର୍ମାଚରଣ କରିବାକୁ ହୋଇଥାଏ। ଯୋଗ, ସାଂଖ୍ୟ, ଦାନ, ବ୍ରତ, ତପ, ଯଜ୍ଞ, ଶାସ୍ତ୍ରସମୂହର ଶ୍ରବଣ, ମନନ, ନିଦିଧ୍ୟାସନ, ସନ୍ନ୍ୟାସ ଆଦି ଅନେକ ଉପାୟ ଅବଲମ୍ବନରେ ମୁଁ ପ୍ରାପ୍ତ ହୋଇଥାଏ। କିନ୍ତୁ ମୁଁ ଯେଉଁମାନଙ୍କର ନାମ କହିଲି, ଏମାନେ ସମସ୍ତେ ବିଧିବଦ୍ ବ୍ରହ୍ମଚର୍ଯ୍ୟ ବ୍ରତ ଧାରଣ କରି ବେଦାଧ୍ୟୟନ କରି ନ ଥିଲେ। ମହାପୁରୁଷଙ୍କୁ ଉପାସନା କରିନଥିଲେ; କୌଣସି ବ୍ରତ, ତପ, ଯଜ୍ଞ, ଅନୁଷ୍ଠାନ ବି କରି ନାହାନ୍ତି। କେବଳ ଭକ୍ତି ଭାବରେ ହିଁ ସେମାନେ ସଂସାର ବନ୍ଧନରୁ ମୁକ୍ତ ହୋଇଯାଇଛନ୍ତି। ଦେଖ, ଏଇ ବ୍ରଜର ଗୋପୀମାନେ କିଛି ପଢ଼ାଲେଖା ଜାଣି ନ ଥିଲେ। ଏମାନଙ୍କ ଭାବ ବି ଥିଲା ଅନ୍ୟପ୍ରକାରର। କିନ୍ତୁ ଏତେ କଥା ହେବା ପରେ ବି ଏମାନେ ମୋର ଅନନ୍ୟ ଭକ୍ତିର ଅଧିକାରିଣୀ ହୋଇଗଲେ।''

ଉଦ୍ଧବ କହିଲେ, ''ଭଗବନ୍! ଗୋପିକାମାନଙ୍କର ତ ବିଚିତ୍ର ଦଶା ଥିଲା। ମୋ ହାତରେ ଆପଣ ସମ୍ବାଦ ଦେଇ ଯେତେବେଳେ ପଠାଇଥିଲେ, ସେତେବେଳେ

ମୁଁ ସେମାନଙ୍କର ଭାବ ଦେଖି ଅବାକ୍ ହୋଇଗଲି। କୃପାକରି ଏଥିରେ ଭକ୍ତି ଭାବର କିପରି ସମ୍ବନ୍ଧ ରହିଛି ମୋତେ ପ୍ରାଞ୍ଜଳ ଭାବେ କହିବା ହୁଅନ୍ତୁ।''

ମହର୍ଷି ସୂତ କହୁଛନ୍ତି, ''ହେ ମୁନିଗଣ! ଗୋପିକାଙ୍କ କଥା ପଡ଼ିଯିବାକ୍ଷଣି ଭଗବାନଙ୍କର ହୃଦୟ ଦ୍ରବିତ ହୋଇଗଲା। ତାଙ୍କ କଣ୍ଠ ଭାବାବେଶରେ ଗଦ୍‌ଗଦ ହୋଇଗଲା। ସେ ପ୍ରେମାବେଶରେ ତତ୍‌କାଳ କିଛି କହିପାରିଲେ ନାହିଁ। ଉଦ୍ଧବ ବଲବଲ ହୋଇ ଯାହା ଭଗବାନଙ୍କ ଶ୍ରୀମୁଖକୁ ଚାହିଁରହି ଥା'ନ୍ତି। ମୁଖର ଭାବ ଭଙ୍ଗୀର ପରିବର୍ତ୍ତନ ଲକ୍ଷ୍ୟ କରୁଥା'ନ୍ତି। ତାଙ୍କ ନେତ୍ରଯୁଗଳ ଜଳାର୍ଦ୍ର ହୋଇଗଲା। ଗୋପିକାଗଣଙ୍କର ପ୍ରେମ କଥା ଭଗବାନ ଯାହା ଉଦ୍ଧବଙ୍କୁ କହିଥିଲେ ତାହାର ବର୍ଣ୍ଣନା କରୁଛି, ଶୁଣନ୍ତୁ।''

**ଛପ୍‌ପୟ**

ଯୋଗ, ଦାନ, ବ୍ରତ, ସାଂଖ୍ୟ, ଯଜ୍ଞ, ଜପ, ତପ ସବସାଧନ।
ଶ୍ରବଣ, ମନନ, ସନ୍ୟାସ, ଆଦିତେଁ, ହୋବୈ ବଶ ମନ॥
କିନ୍ତୁ ନ ଯେ ସବ ସରସ ସରଲ ହିୟକୁଁ ନହିଁ ପକରେଂ।
ସାଧନ ଚ୍ୟୁତ ଯଦି ଭୟେ ଫେଇ ଜଗବନ୍ଧନ ଜକରେଂ॥
ଭକ୍ତିଭାବ ସଦ୍‌ସଙ୍ଗତେ, ହୋହି ସରସ ତନ୍ମୟ ହିୟୋ।
ବ୍ରଜବନିତନି ମୋମେଂ ମଧୁର, ପ୍ରେମଭାବ ଅନୁପମ କିୟୋ॥



# ଗୋପିକାଙ୍କର ପ୍ରେମାସକ୍ତି

ରାମେଣ ସାର୍ଧଂ ମଥୁରାଂ ପ୍ରଣୀତେ
ଶ୍ୱାଫଲ୍‌କିନା ମୟ୍ୟନୁରକ୍ତଚିତ୍ତାଃ।
ବିଗାଢ଼ଭାବେନ ନ ମେ ବିୟୋଗ-
ତୀବ୍ରାଧୟୋଽନ୍ୟଂ ଦଦୃଶୁଃ ସୁଖାୟ॥ ★

[ଶ୍ରୀଭା. ୧୧ ସ୍କ. ୧୨ ଅ. ୧୦ ଶ୍ଳୋକ]

★ ଶ୍ରୀ ଭଗବାନ ଶ୍ରୀକୃଷ୍ଣ ଉଦ୍ଧବଙ୍କୁ କହୁଛନ୍ତି, ''ହେ ଉଦ୍ଧବ! ଦେଖ, ବୃନ୍ଦାବନରୁ ଯେତେବେଳେ ବଳଦେବଙ୍କ ସହିତ ମୋତେ ଅକ୍ରୂର ମଥୁରାକୁ ନେଇ ଆସିଥିଲେ, ସେତେବେଳେ ମୋଠାରେ ଅନୁରକ୍ତି ଥିବା ଗୋପିକାମାନେ ପ୍ରେମରେ ତନ୍ମୟ ହୋଇଯାଇ ଥିଲେ, ସେମାନଙ୍କୁ ମୋର ବିଷମ ବିୟୋଗର ବ୍ୟଥା ହେତୁ ସଂସାରରେ ସୁଖ ନିମନ୍ତେ ଅନ୍ୟ ବସ୍ତୁ ଦେଖାଯାଉ ନ ଥିଲା।''

## ଛପ୍ପୟ

ରୂପସୁଧାମହଁ ଛକୀଂ ନିରନ୍ତର ମୋକୂଁ ଧ୍ୟାବେଁ।
ପ୍ରେମଡୋରିମହଁ ବଁଧୀଂ ସୁନତ ବଂଶୀ ଧ୍ୱନି ଆବେଁ।।
ତଜି ବୃନ୍ଦାବନ ଗୟୋ ମଧୁପୁରୀ ବେ ଘବରାୟୀଂ।
ମନ ମୋଇ ମହଂ ଫସ୍ୟୋ ସକଲ ସୁଧି ବୁଧି ବିସରାୟୀଂ।।
ମେରେ ସଁଗମହଁ ଛିନ ସରିସ, ନିଶା ବିତାଇ ଜୋ ସୁଖଦ।
ଇଗଁ କଲପ ସମ ମୋ ବିନା, ମମ ବିୟୋଗମହଁ ଅତି ଦୁଃଖିତ।।

ସଂଯୋଗ ଓ ବିରହ ମଧ୍ୟରୁ ରସିକମାନେ ବିରହକୁ ହିଁ ଶ୍ରେଷ୍ଠ ବୋଲି କହିଛନ୍ତି। ସଂଯୋଗ ସମୟରେ କେବଳ ନିଜ ପ୍ରିୟତମଙ୍କ ଶରୀରରେ ହିଁ ତାଙ୍କର ଅନୁଭୂତି ହୋଇଥାଏ। କିନ୍ତୁ ବିରହରେ ଚରାଚର ସମସ୍ତ ଜଗତରେ ତାଙ୍କର ରୂପ ହିଁ ଦେଖାଯାଏ। ମନକୁ କେହି ଦୃଢ଼ତାର ସହିତ ଜାବୋଡ଼ି ଧରିବା ପରେ ଜପ, ତପ, ଯୋଗ, ବୈରାଗ୍ୟ ଆଦି ସକଳ ସାଧନ ବ୍ୟର୍ଥ ହୋଇଯାଏ। ସକଳ ପ୍ରକାର ସାଧନ ମନର ବହୁମୁଖୀ ବୃତ୍ତିକୁ ଅଟକାଇ ରଖିବାପାଇଁ କରାଯାଏ। ସ୍ଥିର ହୋଇଯାଇଥିବା ମନ ନିଜ ସ୍ୱରୂପରେ ସ୍ଥିତ ହୋଇଯାଏ। କିନ୍ତୁ ମନକୁ ଯଦି କେହି ତାଙ୍କଆଡ଼କୁ ଆକର୍ଷିତ କରିନିଏ, ତାକୁ କେହି ନିଜ ରଙ୍ଗରେ ରଙ୍ଗିଲା କରିଦିଏ, ତେବେ ସାଧନାର ଆଉ ଆବଶ୍ୟକତା ରହେନାହିଁ। ମନକୁ ଏକମାତ୍ର ଶ୍ରୀକୃଷ୍ଣ ହିଁ ତାଙ୍କ ଆଡ଼କୁ ଆକର୍ଷଣ କରିପାରନ୍ତି। କାରଣ କର୍ଷଣ କରିପାରୁଥିବାରୁ ତାଙ୍କର ନାମ କୃଷ୍ଣ। ଅନ୍ୟ ଲୋକଙ୍କ ଆଡ଼କୁ ଯେଉଁ ଆକର୍ଷଣ ହୁଏ ତାହା କ୍ଷଣିକ ହୋଇଥାଏ। ଅସ୍ଥାୟୀ ହୋଇଥାଏ।

ମହର୍ଷି ସୂତ କହୁଛନ୍ତି, ହେ ମୁନିଗଣ! ଗୋପିକାଗଣଙ୍କ ପ୍ରେମର ପ୍ରଶଂସା କରିବାକୁ ଯାଇ ଭଗବାନ ଉଦ୍ଧବଙ୍କୁ କହିଲେ, "ଦେଖ ଉଦ୍ଧବ! କେତେ ଯୋଗୀ ଆଖି କାନ ବନ୍ଦକରି, ବ୍ରତ ଉପବାସ ପ୍ରାଣାୟାମାଦି କରି ମୋତେ ଧ୍ୟାନ କରୁଛନ୍ତି। କିନ୍ତୁ ସେମାନଙ୍କ ପାଇଁ ମୁଁ ଛୁରୀର ଧାର ଭଳି ହୋଇଯାଉଛି। ସେମାନେ ଚିତ୍କାର କରୁଛନ୍ତି, 'ଏହି ମାର୍ଗ ଅତି ଦୁର୍ଗମ, ଅତି ଦୁର୍ଗମ ମାର୍ଗ।' କିନ୍ତୁ ବ୍ରଜର ଗୋପିକାମାନେ ନା କିଛି ପଢ଼ାପଢ଼ି କରିଥିଲେ, ନା ସେମାନଙ୍କର କିଛି ଶୌଚ ଆଚାର ବିଚାର ଥିଲା। ସେମାନଙ୍କ ଦ୍ୱୈତ ଅଦ୍ୱୈତ ଭଳି ଜଟିଳ ଗୋଳକଧନ୍ଦାର ପରିଚୟ ବି ନ ଥିଲା। ସେମାନଙ୍କର ମୋ ପ୍ରତି ଆସକ୍ତି ହୋଇଗଲା। ସେମାନେ ମୋତେ ଉତ୍ତମରୂପେ ଚିହ୍ନି ଆଥାନ୍ତେ ହେଲେ! ମୁଁ ଯେ ପରବ୍ରହ୍ମ ଏହା ତ ସେମାନେ ଆଦୌ କଳ୍ପନା ବି କରି ନ ଥିଲେ। ସେମାନେ ମୋର ତ୍ରିଭୁବନମୋହନ ଶ୍ୟାମସୁନ୍ଦର ସ୍ୱରୂପକୁ ଦେଖିଲେ, ସେମାନେ ମୋ ରୂପରେ ଲଟ୍‌ଟୁ ହୋଇଗଲେ। ସେମାନଙ୍କୁ ମୁଁ ସେମାନଙ୍କର ପତିଙ୍କ ଅପେକ୍ଷା ଅଧିକ ପ୍ରେମିକ ଭଳି ଜଣାଗଲି। ସ୍ତ୍ରୀମାନଙ୍କୁ ସେମାନଙ୍କର ଜାର ପତି ନିଜ ପତି ଠାରୁ ଅଧିକ ଭଲ ଲାଗେ। ଅନେକେ ତ ଜାର ପତିପାଇଁ ନିଜ ନିଜର ପତିଙ୍କୁ ହତ୍ୟା ବି କରିଦିଅନ୍ତି। ମୋତେ ସେମାନେ ନିଜନିଜର ଜାରପତିଙ୍କଠାରୁ ବି ଅଧିକ ପ୍ରେମ କରିବାରେଲାଗିଲେ। ସେମାନେ ମୋତେ ପରମରମଣ-ପ୍ରେମିକ ଆଉ ମନମୋହନ ବୋଲି ଭାବି ମୋତେ ପାଇବାକୁ ବ୍ୟାକୁଳ ହେବାରେ ଲାଗିଲେ। ଯେପରି ବି ହେଉ ଜ୍ଞାତରେ ଅଜ୍ଞାତରେ ସେମାନଙ୍କର ଆସକ୍ତି ମୋର ସର୍ବାନ୍ତର୍ଯ୍ୟାମୀ ପ୍ରତି ହିଁ ଥିଲା।

ମିଶ୍ରିକୁ ଜାଣିକି ହେଉ ଅଥବା ଅଜଣାତରେ ହେଉ, ପାଟିରେ ପକାଇଲେ ମିଠା ହିଁ ଲାଗିବ। ଅଗ୍ନିକୁ ଜାଣିକରି ହେଉ ଅଥବା ଅଜଣାରେ ହେଉ, ଛୁଇଁଲେ ନିଶ୍ଚୟ ଫୋଟକା ହୋଇଯିବ। ଏହିଭଳି ଅଜଣାରେ ବି ଭାଗ୍ୟବଶତଃ ସେମାନଙ୍କର ମୋର ସତ୍‌ସ୍ୱରୂପର ସଙ୍ଗ ହୋଇଗଲା। ସେମାନେ ସେମାନଙ୍କର ତନ, ମନ, ଧନ, ସର୍ବସ୍ୱ ମୋତେ ଅର୍ପଣ କରିଦେଲେ। ନିଜର କହିବା ଭଳି ସେମାନେ କିଛି ବି ରଖିଲେ ନାହିଁ। ମୁଁ ବି ସେମାନଙ୍କୁ ହସାଇବାରେ ଲାଗିଲି, ଖେଳାଇବାରେ ଲାଗିଲି, ସବୁପ୍ରକାର କ୍ରୀଡ଼ା କରାଇବାରେ ଲାଗିଲି। ସେମାନେ ମୋ ପ୍ରତି ଏତେ ଆସକ୍ତ ହୋଇଗଲେ ଯେ, ସବୁ କଥା ଭୁଲିଗଲେ। ସେମାନଙ୍କର ବିଶ୍ୱାସ ହୋଇଗଲା ଯେ ମୁଁ ସେମାନଙ୍କୁ ଏହିପରି ହସାଉଥିବି। ସବୁବେଳେ ସେମାନଙ୍କ ସାଙ୍ଗରେ ରହି କ୍ରୀଡ଼ା କରୁଥିବି। କିନ୍ତୁ ତାହା ହେଲାନାହିଁ।

''ଦିନେ ଅକ୍ରୂର କକା ଗଲେ ଆଉ ବଳରାମଙ୍କ ସହିତ ମୋତେ ରଥରେ ବସାଇ ମଥୁରାକୁ ନେଇ ଆସିଲେ। ଉଦ୍ଧବ! ସେ ଦିନ ଗୋପୀମାନଙ୍କର ଦଶା ଯେପରି ହୋଇଥିଲା ତାହା ଦେଖିଥିଲେ ତୁମ ହୃଦୟ ଫାଟିଯାଇ ଥା'ନ୍ତା। ସେହି ଦୃଶ୍ୟ ସ୍ମରଣ କଲେ ହୃଦୟ ବିଦୀର୍ଣ୍ଣ ହୋଇଯାଏ। ସେହି ସରଳା, ଅବଳା, ଅସହାୟାମାନେ ନୀରବରେ ଲାଜକୁଳିଲତା ଭଳି ଠିଆହୋଇ ଅଶ୍ରୁ ବିମୋଚନ କରିବାରେ ଲାଗିଥିଲେ। ଆଉ ରଥ ଅଦୃଶ୍ୟ ହୋଇଯିବା ପରେ କଟା ହୋଇଯିବା ଲତା ଭଳି କଚାଡ଼ି ହୋଇ ତଳେ ପଡ଼ିଯାଉଥିଲେ। ସେତେବେଳେ ସଂସାରରେ ତାଙ୍କୁ କିଛି ଦେଖାଯାଉ ନ ଥିଲା। ସେମାନଙ୍କୁ ସର୍ବତ୍ର ମୋର ମନମୋହନ ରୂପ ଦେଖାଯାଉଥିଲା। ସେମାନଙ୍କ ଚିତ୍ତ ମୋ ଠାରେ ଅନୁରକ୍ତ ଥିଲା। ଏଣୁ ମୋତେ ମନେପକାଇ ପକାଇ କାନ୍ଦିବାରେ ଲାଗିଥିଲେ।''

''ଉଦ୍ଧବ! ରାସ-ବିଳାସର ସେଇ ଶ୍ରୁତିଗୁଡ଼ିକ ଛ' ଛ' ମାସର ହେଉଥିଲା। ମୋ ସହିତ ସେମାନେ କ୍ରୀଡ଼ା କରି କରି ଅର୍ଦ୍ଧକ୍ଷଣ ଭଳି ବ୍ୟତୀତ କରିଦେଉଥିଲେ। ମୁଁ ଯେତେବେଳେ ସେମାନଙ୍କୁ କହୁଥିଲି, 'ସକାଳ ହୋଇଗଲା' ବୋଲି ସେମାନେ ଚମକି ପଡୁଥିଲେ। ସେମାନେ କହୁଥିଲେ, 'ସତରେ, ଆରେ, ଆମେ ଏଇ ଅଳପ ସମୟ ହେବ ଆସିଛୁ ତ!' ଉଦ୍ଧବ! ସୁଖର ସମୟ ଗଲାବେଳେ ଜଣାପଡ଼େ ନାହିଁ। ଆଜି ସେମାନଙ୍କ ପାଇଁ ରାତ୍ରି ମହାକଳ୍ପ ଭଳି ଦୀର୍ଘ ହୋଇଯାଇଛି। ଏବେ ସେମାନେ ମୋତେ ମନେପକାଇ ପକାଇ ବାହୁନିବାରେ ଲାଗିଛନ୍ତି। ସେମାନଙ୍କୁ ଖାଦ୍ୟ-ପେୟ, ରାଗ-ରଙ୍ଗ, ହୋଲି-ଦିବାଳୀ କି ଶ୍ରାବଣ କିଛି ହେଲେ ଭଲ ଲାଗୁନାହିଁ।''

''ସେବେ ହୋଲି ପୂର୍ବରୁ ସେମାନେ କେତେ ନା କେତେ ପ୍ରକାର ଭାବରେ ପ୍ରସ୍ତୁତ ହେଉଥିଲେ। ଆଜି ହୋଲି ଚାଲିଯାଉଛି, ବୁନ୍ଦାଟିଏ ବୋଲି ରଙ୍ଗ ନାହିଁ, ଟିକିଏ ବୋଲି ଅବିର ଦେଖାଯାଉ ନାହିଁ। ଏବେ ତ ସେମାନେ ମୋ ଧ୍ୟାନରେ ନିମଗ୍ନ। ସେମାନଙ୍କୁ ସଂସାର ଦେଖାଯାଉ ନାହିଁ। ଉଦ୍ଧବ! ଏବେ ତୁମେ ମୋତେ କୁହ, ଯା ଠାରୁ ବଳି ସମାଧି ଆଉ କିଛି ଅଛି କି? ନଦୀମାନେ ଯେପରି ସମୁଦ୍ରରେ ମିଶି ନିଜର ନାମ ରୂପ ଭୁଲିଯାଆନ୍ତି, ସମାଧିରେ ସ୍ଥିତ ଯୋଗୀ ଯେପରି ନିଜ ନିଜର ଉପାଧି ଭୁଲିଯାଏ, ଠିକ୍ ସେହିଭଳି ମୋ ପ୍ରେମରେ ବୁଡ଼ିଯାଇଥିବା ହେତୁ ସେମାନେ ସବୁ କିଛି ଭୁଲିଯାଇଛନ୍ତି। ସେମାନଙ୍କର ମୋ ସ୍ମୃତି ହିଁ ବାକି ରହିଯାଇଛି। ସେମାନଙ୍କୁ

ସେମାନଙ୍କର ଶରୀରର ଜ୍ଞାନ ନାହିଁ, ଘରର ଜ୍ଞାନ ନାହିଁ, ସଂସାର ଜ୍ଞାନ ନାହିଁ, କେବଳ ଏକମାତ୍ର ମୋର ସ୍ମୃତି ରହିଯାଇଛି।''

ଉଦ୍ଧବ କହିଲେ, ''ପ୍ରଭୁ! ମୁଁ ନିଜେ ଯାଇ ସେମାନଙ୍କର ଦଶା ତ ଦେଖିଆସିଛି। ସେମାନଙ୍କର ଦଶା ଦେଖି ସହସ୍ରାଧିକ ସମାଧିର ସୁଖ ବି ତୁଚ୍ଛ ମନେହୁଏ। ଏବେ ଆପଣ ମୋତେ କୃପାକରି କୁହନ୍ତୁ, ସେମାନେ ଏପରି ସ୍ଥିତି ପ୍ରାପ୍ତ ହେଲେ କିପରି ?''

ଭଗବାନ କହିଲେ, ''ହେ ଉଦ୍ଧବ! ବର୍ତ୍ତମାନ ସୁଦ୍ଧା ତୁମେ ବହୁତ ବିଧି ନିଷେଧ ପାଳନ କରିଛ। ଏବେ ତୁମେ ଶ୍ରୁତି, ସ୍ମୃତି, ପ୍ରବୃତ୍ତି, ନିବୃତ୍ତି, ଶ୍ରୋତବ୍ୟ ତଥା ଶ୍ରୁତ ସମସ୍ତ ପରିତ୍ୟାଗ କରି କେବଳ ଅନନ୍ୟଭାବରେ ମୋତେ ସ୍ମରଣ କର। ମୋ ଶରଣଠାରେ ନିମଗ୍ନ ହୋଇଯାଅ। ମୁଁ ହିଁ ହେଉଛି ସମସ୍ତ ଦେହଧାରୀଙ୍କର ଆତ୍ମା। ମୁଁ ହିଁ ସମସ୍ତଙ୍କର ଆଧାର। ମୋ ଶରଣରେ ହିଁ ସୁଖ ଅଛି। ମୋ ଶରଣରେ ଶାଶ୍ୱତୀ ଶାନ୍ତି ରହିଛି। **ମୋର ଆଶ୍ରିତ ହୋଇ ତୁମେ ସର୍ବଥା ସୁଖୀ, ଶାନ୍ତ ଓ ନିର୍ଭୟ ହୋଇଯାଅ। ତୁମେ ନିଜକୁ ଜଣେ ସାଧାରଣ ଜୀବ ବୋଲି ମନେକର ନାହିଁ। ନିଜକୁ ସର୍ବସମର୍ଥ ଜୀବ ବୋଲି ଅନୁଭବ କର।''**

ଉଦ୍ଧବ କହିଲେ, ''ପ୍ରଭୁ! ବୁଝାଇବାରେ ତ ଆପଣ କଦାପି କୌଣସି ତ୍ରୁଟି କରି ନ ପାରନ୍ତି; କିନ୍ତୁ ମୋ ବୁଦ୍ଧି ଏଡ଼େ ମନ୍ଦ ଯେ ଆପଣଙ୍କର ଏତେ ଉପଦେଶ ଶୁଣି ସୁଦ୍ଧା ମୁଁ ଠିକ୍ ରୂପେ ତାହା ବୁଝି ପାରିନାହିଁ। ବର୍ତ୍ତମାନ ପର୍ଯ୍ୟନ୍ତ ମୋର ସନ୍ଦେହ ବିଦୂରିତ ହୋଇନାହିଁ। ମୋ ଚିତ୍ତ ଭ୍ରମିତ ହେବାର ଲାଗିଛି। ମୁଁ ମୋ ନିଜକୁ ଜୀବ ବୋଲି ନ ଭାବି ଶିବ ବୋଲି ଭାବିବି କିପରି ? ମୁଁ ଅନନ୍ୟ ଭାବରେ ଆପଣଙ୍କର ଉପାସନା କିପରି କରିବି ? କୃପାକରି ମୋତେ ତାହା ବୁଝାଇ ଦିଅନ୍ତୁ।''

ଉଦ୍ଧବଙ୍କଠାରୁ ଏପରି କଥା ଶୁଣି ଭଗବାନ କହିଲେ, ''ଠିକ୍ ଅଛି ଉଦ୍ଧବ! ଏ ବିଷୟ ଅତ୍ୟନ୍ତ ଗୂଢ଼। ତୁମେ ସମାହିତ ଚିତ୍ତରେ କର୍ମମାର୍ଗର ବିଧି ଶ୍ରବଣ କର।''

ମହର୍ଷି ସୂତ ଶୌନକାଦି ମୁନିଙ୍କୁ କହୁଛନ୍ତି, ''ହେ ମୁନିଗଣ! ଭଗବାନ ଉଦ୍ଧବଙ୍କୁ ଯେଉଁଭଳି ଭାବରେ କର୍ମତ୍ୟାଗ ତଥା ଗୁଣର ଊର୍ଦ୍ଧ୍ୱକୁ ଉଠିବାର ଶିକ୍ଷା ପ୍ରଦାନ କଲେ ତାହା ପ୍ରାଞ୍ଜଳ ଭାବରେ ଆପଣମାନଙ୍କୁ ଶୁଣାଉଛି। ଆପଣମାନେ ସମାହିତ ଚିତ୍ତରେ ଶୁଣନ୍ତୁ।''

### ଛପ୍‌ପୟ

ଜ୍ୟୋ ସମାଧିମହଁ ସିନ୍ଧ ମିଲୈଂ ସାଗରମହଁ ସରିତା।
ତ୍ୟୋଂ ହ୍ୱୈକେଂ ଆସକ୍ତ ମିଲୀଂ ମୋମେଂ ବ୍ରଜବନିତା॥
ମୋମେଂ ମନ ଫସିଗୟୋ ସକଲ ତନ ସୁଧି ବୁଧି ଭୂଲୀଂ।
ନହିଂ ସମୁଝୀ ସରବେଶ ରମନ ସୁନ୍ଦର ଲଖି ଫୂଲୀଂ।
ପରମ ଧନ୍ୟ ଜଗମହଁ ଭଈ, ମୋମେଁ କରି ଆସକ୍ତି ଅତି।
ତୁମହୂ ଉଦ୍ଧବ! ତ୍ୟାଗି ସବ, ଭଜୋ ମୋଇ ପାଓ ସୁଗତି।



# ଗୁଣାତୀତ ହେବାର ଉପାୟ

ବେଣୁସଙ୍ଘର୍ଷଜୋ ବହ୍ନିର୍ଦଗ୍‌ଧ୍ୱା ଶାମ୍ୟତି ତଦ୍‌ବନମ୍ ।
ଏବଂ ଗୁଣବ୍ୟତ୍ୟୟଜୋ ଦେହଃ ଶାମ୍ୟତି ତତ୍‌କ୍ରିୟଃ ।। ★
[ଶ୍ରୀଭା. ୧୧ସ୍କ. ୧୩ଅ. ୭.ଶ୍ଲୋକ]

**ଛପ୍‌ପୟ**

ହୌଂ ହୀ ଜଗ ବନି ଗୟୋ ବୀଜ ଜ୍ୟୋ ତରୁ ବନି ଜାବେଂ ।
ବୃକ୍ଷ କର୍ମମୟ ମୋକ୍ଷ ଭୋଗ ଫଲ ଫୂଲ କହାବେଂ ।।
ପାପ ପୁଣ୍ୟ ଦ୍ୱୈ ବୀଜ ବାସନା ଜଡ଼ ଗୁନ ତନୁ ହେଂ ।
ଇନ୍ଦ୍ରିୟ ଶାଖା ଇଶ ଜୀବ ଦ୍ୱୈ ବୈଠେ ଖଗ ହେ ।।
ସୁଖ ଦୁଖ ହୀ ଦ୍ୱୈ ଫଲ ଲଗେ, ଖାବେଂ ଦୁଖ ଭୋଗୀ ସତତ ।
ଯୋଗୀ ସୁଖ ଚାଖତ ରହତ, ବ୍ରହ୍ମଭାବ ମହଁ ନିତ ନିରତ ।।

ବୃକ୍ଷରେ ଯେତେ ସବୁ ବସ୍ତୁ ଅଛି, ସେ ସମସ୍ତ ବୀଜରୁ ହିଁ ଉତ୍ପନ୍ନ ହୋଇଥାଏ । ମୂଳ, ଗଣ୍ଡି, ଶାଖା ପ୍ରଶାଖା, କାଷ୍ଠ, ପତ୍ର, ଫଳ, ଫୁଲ, ଅଙ୍କୁର ଏ ସବୁ ପରବର୍ତ୍ତୀ କାଳର କଥା । କିନ୍ତୁ ଏ ସମସ୍ତ ବସ୍ତୁ ସୂକ୍ଷ୍ମରୂପରେ ବୀଜ ମଧ୍ୟରେ ସନ୍ନିହିତ ହୋଇ ରହିଥାଏ । ଠିକ୍ ଏହିଭଳି ଜଗତରେ ଯେତେପ୍ରକାର ସ୍ଥୂଳ ସୂକ୍ଷ୍ମ ବସ୍ତୁ ଅଛି, ସେ ସମସ୍ତ ଭଗବାନଙ୍କଠାରୁ ପରମାତ୍ମାଙ୍କଠାରୁ, ବ୍ରହ୍ମରୁ ପ୍ରକଟ ହୋଇଛି । ପରିଶେଷରେ ତାଙ୍କରିଠାରେ ହିଁ ସମସ୍ତ ପର୍ଯ୍ୟବସାନ ହୋଇଯାଏ । ଯିଏ ଏହିକଥା ବୁଝିଯାଇଥାଏ, ତା'ର ଦ୍ୱୈତ ଭାବ ନଷ୍ଟ ହୋଇଯାଇଥାଏ । ଆଉ ସେ ଶୋକ ମୋହରୁ ରକ୍ଷାପାଇ ସଂସାର ସାଗର ଅକ୍ଲେଶରେ ପାରିହୋଇଯାଏ ।

ମହର୍ଷି ସୂତ କହୁଛନ୍ତି, ହେ ମୁନିଗଣ ! ଉଦ୍ଧବ ଯେତେବେଳେ କର୍ମ ତ୍ୟାଗର ଉପାୟ ପଚାରିଲେ, ଭଗବାନ ତାଙ୍କୁ କହିଲେ, "ହେ ଉଦ୍ଧବ ! ମୋର ଦୁଇଟି ରୂପ ଅଛି, ଗୋଟିଏ ଶବ୍ଦବ୍ରହ୍ମ ଓ ଦ୍ୱିତୀୟ ପରବ୍ରହ୍ମ । ଏହା କିନ୍ତୁ ଭିନ୍ନ ଭିନ୍ନ ନୁହେଁ ।"

---

★ ଭଗବାନ ଶ୍ରୀକୃଷ୍ଣଚନ୍ଦ୍ର କହୁଛନ୍ତି, "ହେ ଉଦ୍ଧବ ! ଯେଉଁ ବାଉଁଶ ଘର୍ଷଣରୁ ଉତ୍ପନ୍ନ ହୋଇଥିବା ଅଗ୍ନି ସମୁଦାୟ ବାଉଁଶ ବଣକୁ ଧ୍ୱଂସକରି ଶାନ୍ତ ହୁଏ, ସେହିଭଳି ଗୁଣ ବୈଷମରେ ଉତ୍ପନ୍ନ ହୋଇଥିବା ଦେହ, ସେହିଭଳି କ୍ରୀୟା ସମାପନାନ୍ତେ ଶାନ୍ତ ହୁଏ ।

ପରବ୍ରହ୍ମ ହିଁ ହେଉଛି ଶବ୍ଦବ୍ରହ୍ମର ଅଭିବ୍ୟକ୍ତି ମାତ୍ର। ସକଳ ପ୍ରାଣୀଙ୍କଠାରେ ଜୀବନଦାତା ଈଶ୍ୱର ହିଁ ଶବ୍ଦ ରୂପରେ ପ୍ରକଟ ହୋଇଥା'ନ୍ତି।''

ଉଦ୍ଧବ କହିଲେ, ''ଭଗବନ୍! ମୁଁ ଏହାକୁ, ବୁଝିପାରିଲି ନାହିଁ। ମୋତେ ଦୟାକରି ସ୍ୱଷ୍ଟ ଭାବରେ ବୁଝାନ୍ତୁ।''

ଭଗବାନ କହିଲେ, ''ଆଚ୍ଛା, ଦେଖ! ଏହାକୁ ଏମିତି ବୁଝ। କହିଲ, ଆମେ ବାଣୀରେ ଯେଉଁ ଶବ୍ଦ ଉଚ୍ଚାରଣ କରୁଛେ, କିପରି କରୁଛେ ?''

ଉଦ୍ଧବ କହିଲେ, ''ପ୍ରଭୁ! ମନକୁ ଯେଉଁ କଥା ଆସେ, ତାହା ବାଣୀ ଦ୍ୱାରା କହିଦେଉ।''

ଭଗବାନ କହିଲେ, ''ନା, ନା! ଏହାକୁ ଆହୁରି ସୂକ୍ଷ୍ମ ରୂପରେ ବିଚାର କର। ବାଣୀ ଚାରି ପ୍ରକାରର ଯଥା :-ପରା, ପଶ୍ୟନ୍ତୀ, ମଧ୍ୟମା ଆଉ ବୈଖରୀ। ଆମେ ଯେଉଁ ଶବ୍ଦ କହୁ, କଥାବାର୍ତ୍ତା କରୁ, ତାହା ବୈଖରୀ ବାଣୀରେ କରୁ।''

ଉଦ୍ଧବ ପଚାରିଲେ, ''ତା'ହେଲେ ପ୍ରଭୁ! ପରା, ପଶ୍ୟନ୍ତୀ ଆଦି କିପରି କୁହାଯାଏ ?''

ଭଗବାନ କହିଲେ, ''ଭାଇ! ଏହା ବାଣୀ କୁହାଯାଏ ନାହିଁ। ଏହା ଅଭିବ୍ୟକ୍ତି ହୁଏ ନାହିଁ। ଆଚ୍ଛା, ତୁମେ ବହୁତ ସମୟ ପର୍ଯ୍ୟନ୍ତ ଅତି ଯତ୍ନରେ, ଧ୍ୟାନ କଲାଭଳି ଯେ କୌଣସି ଗୋଟିଏ ଶବ୍ଦ ଅତି ଧୀରେ ଧୀରେ ସଂଯମ ପୂର୍ବକ କୁହ। କିପରି କ୍ରିୟା ହେଉଛି ?''

ଉଦ୍ଧବ କହିଲେ, ''ପ୍ରଭୁ! କେଉଁ ଶବ୍ଦଟି କରିବି ?''

ଭଗବାନ କହିଲେ, ''ଯେ କୌଣସି ଶବ୍ଦ ହେଉ! ହଉ, 'ଓମ୍' କୁହ। କିନ୍ତୁ ସେଇ 'ଓମ୍' ଶବ୍ଦ ପ୍ରତି ଧ୍ୟାନ ରଖିଥିବ।''

ମହର୍ଷି ସୂତ କହୁଛନ୍ତି, ''ହେ ମୁନିଗଣ! ଏହା ଶୁଣି ଅତି ଏକାଗ୍ରଚିତ୍ତରେ ଉଦ୍ଧବ 'ଓମ୍' ଉଚ୍ଚାରଣ କଲେ।''

ଭଗବାନ୍ ପଚାରିଲେ, ''ଏହି ଶବ୍ଦ କେଉଁଠାରୁ ଉଠିଲା ?''

ଉଦ୍ଧବ କହିଲେ, ''ଭଗବନ୍! ଉଚ୍ଚାରଣ କରିବା ବେଳେ ମୋ ପେଟ କାଟୁଥିଲା। ଏଣୁ ଏହା ନାଭିରୁ ଉଠୁଥିବା ଭଳି ଜଣା ପଡୁଛି।''

ଏପରି କଥା ଶୁଣି ଭଗବାନ ହସିଲେ, ଆଉ କହିଲେ, ''ହଁ, ଠିକ୍ କହିଛ। ତୁମେ ମନକୁ ଏକାଗ୍ର କରିଛ। କିନ୍ତୁ ତାହା ଅତି ସୂକ୍ଷ୍ମ ହୋଇନାହିଁ। ଧ୍ୟାନ ପୂର୍ବକ ଦେଖ।''

ଉଦ୍ଧବ ଅନେକ ସମୟ ପର୍ଯ୍ୟନ୍ତ ଧ୍ୟାନ କରିବାରେ ଲାଗିଲେ। ମନକୁ ମନ ବାରମ୍ବାର ଓମ୍ କହିବାରେ ଲାଗିଲେ। ଏହାପରେ ଚିହିଁକି ଉଠି କହିଲେ, ''ଲାଗୁଛି, ସତେ ଯେମିତି ବାୟୁର ସ୍ୱର୍ଶ ନାଭିର ନିମ୍ନ ଦେଶରେ ହେଉଛି। ଆଉ ଧକ୍କା ଦେଇ କୌଣସି ବସ୍ତୁକୁ ନାଭି ଚର୍ତୁପାଶ୍ୱରେ ଚାପା ଦେଉଛି।''

ଭଗବାନ ଖିଲି ଖିଲି ହୋଇ ହସିବାରେ ଲାଗିଲେ। ସେ ହସି ହସି କହିଲେ, ହଁ। ଏଥର ତୁମ ମନ ସୂକ୍ଷ୍ମ ହୋଇଛି। ଯାହାକୁ ତୁମେ ଧକ୍କା ଦେଲାଭଳି କହୁଛ, ତାହା ହେଉଛି ପଶ୍ୟନ୍ତୀ ଭାଷା। ପ୍ରଥମେ ଏହାର ଅଭିବ୍ୟକ୍ତି ମଳଦ୍ୱାର ଉପରେ ଥିବା ଚାରିଦଳ ପଦ୍ମ ଆଧାର ଚକ୍ରରେ ଥାଏ। ସେଠାରେ ଅତି ସୂକ୍ଷ୍ମ ଶବ୍ଦ ହୁଏ। କମଳ ତନ୍ତୁକୁ ଗୋଟିଏ ସିରୀଶ ପୁଷ୍ପ ଅତି ସୂକ୍ଷ୍ମରେ ଛୁଇଁଲେ ଯେପରି ଶିହରଣ ହୁଏ ସେପରି ଜଣାଯାଏ। ଏପରି ଅନୁଭୂତ ସାଧାରଣ ଲୋକଙ୍କୁ କିନ୍ତୁ ହୁଏନାହିଁ। ସହସ୍ର କମଳର ପତ୍ର ଯେପରି ଗୋଟିଏ ଉପରେ ଗୋଟିଏ ଅତି ମୁନିଆ ସରୁ ଛୁଞ୍ଚିଟିଏ ଗଳାଇ ଦେଲେ ତାହା ଗଳିଯାଏ ଏବଂ ଯଦି ପଚରାଯାଏ, ଯେ 'ଗୋଟିଏ ପତ୍ରକୁ କଣା କରିବାକୁ କେତେ ସମୟ ଲାଗିଲା' ତୁମେ ଚୁପ ହୋଇଯିବ, ଅଥବା କହିବ 'କିଛି ସମୟ ତ ଲାଗିଲା ନାହିଁ, ଠିକ୍ ସେହିଭଳି ତାହା ଅନୁଭୂତ ହେଉଥିବ। କିନ୍ତୁ କଥାଟା ସେୟା ନୁହେଁ। ଛୁଞ୍ଚି ଯେତେ ପତ୍ର ଥିଲା ଗୋଟିକୁ କଣା କରି ଦ୍ୱିତୀୟରେ, ଦ୍ୱିତୀୟକୁ କଣା କରି ତୃତୀୟରେ, ଏହିପରି କ୍ରମରେ ପ୍ରବେଶ କରିଛି। ଗୋଟିଏ ପତ୍ରକୁ କଣା କରିବାରେ କିଛି ସମୟ ତ ନିଶ୍ଚୟ ଲାଗିଛି। କିନ୍ତୁ ଆମେ ସେହି ସମୟକୁ ବ୍ୟକ୍ତ କରିପାରୁନା। ଠିକ୍ ଏହିଭଳି ଆଧାର ଚକ୍ରରେ ଯେଉଁ ଶବ୍ଦ ହୁଏ, ହୋଇଥାଏ ତ ନିଶ୍ଚୟ; କିନ୍ତୁ ଅତି ସୂକ୍ଷ୍ମ ହୋଇଥିବାରୁ ଆମେ ତାହା ଧାରଣ କରିପାରୁନା, ଶୁଣିପାରୁନା। ସମସ୍ତଙ୍କୁ ଜୀବନଦାନ ଦେଇଥିବା ପରମେଶ୍ୱର ହିଁ ପରା-ବାଣୀରେ ଯୁକ୍ତ ହୋଇ ପ୍ରଥମ ଆଧାର ଚକ୍ରରେ ପ୍ରବିଷ୍ଟ ହୁଅନ୍ତି। ଏହାପରେ ସେ ନାଭିରେ ସ୍ଥିତ ଅଷ୍ଟଦଳ ବିଶିଷ୍ଟ ମଣିପୂରକ ଚକ୍ରକୁ ଆସନ୍ତି। ସେଠାରେ ମନୋମୟ ସୂକ୍ଷ୍ମରୂପରେ ତାଙ୍କର ଅଭିବକ୍ତି ହୁଏ। ସେତେବେଳେ ସେହି ବାଣୀର ନାମ ପଶ୍ୟନ୍ତୀ ହୁଏ। ତାହା ମନଦ୍ୱାରା ଦେଖି ହୁଏ। କୌଣସି ଶବ୍ଦ କହିବା ବେଳେ ପେଟ ଟିକିଏ ହଲିଯାଏ। ଅର୍ଥାତ୍ ପରା-ବାଣୀରେ ସ୍ଥୂଳ ହେବା ପରେ ତାହା ଜଣାପଡ଼େ। ଏହାପରେ ସେହି ଶବ୍ଦ କଣ୍ଠସ୍ଥଳରେ ସ୍ଥିତ ଷୋଡ଼ଶ ଦଳ ବିଶିଷ୍ଟ ବିଶୁଦ୍ଧ ଚକ୍ରକୁ ଆସେ। ଅ, କ, ଖ, ଗ, ଘ, ଙ, ହ ଏହା ଉଚ୍ଚାରଣ କରିବାବେଳେ ସ୍ପଷ୍ଟ ଭାବେ କଣ୍ଠରୁ ବାହାରେ। ଅର୍ଥାତ୍ ଏହିସବୁ ଅକ୍ଷର ଉଚ୍ଚାରଣ କରିବାବେଳେ କଣ୍ଠଉପରେ ବିଶେଷ ବଳ ପଡୁଥିବା ଭଳି ଜଣାପଡ଼େ। ସମସ୍ତ ଶବ୍ଦ ନାଭିରୁ ଉଠି କଣ୍ଠ ମୂଳରେ ବିଶୁଦ୍ଧ ଚକ୍ରରେ ମଧ୍ୟମା ବାଣୀ ରୂପରେ, ପରିଣତ ହୋଇଯାଏ। ତାହାର ସ୍ଥୂଳରୂପ ହୋଇଯାଏ। ମୂଳାଧାରରେ ତାହା ସବୁ ବୀଜ ରୂପରେ ଥିଲା, ମଣିପୂରକରେ ଅଙ୍କୁର ହେଲା, ବିଶୁଦ୍ଧଚକ୍ର (କଣ୍ଠମୂଳ)ରେ ବୃକ୍ଷ ହୋଇଗଲା। ମୁଖ ମାଧ୍ୟମରେ ବୈଖରୀ ବାଣୀରୂପରେ ବ୍ୟକ୍ତହୋଇଯିବା କ୍ଷଣି ଫଳୀଭୂତ ହୋଇଗଲା। ଏହାର କ୍ରମହେଉଛି, ପ୍ରଥମେ ପରାରୂପରେ ଅତି ସୂକ୍ଷ୍ମ; ପଶ୍ୟନ୍ତୀ ରୂପରେ ସୂକ୍ଷ୍ମ, ମଧ୍ୟମା ରୂପରେ ସ୍ଥୂଳ; ଆଉ ବୈଖରୀ ରୂପରେ ଅତିସ୍ଥୂଳ।

''ବର୍ତ୍ତମାନ ଗୋଟିଏ ଦୃଷ୍ଟାନ୍ତ ମାଧ୍ୟମରେ ଏହାକୁ ବୁଝିବାକୁ ଚେଷ୍ଟା କରିବା। ଯଜ୍ଞ ନିମନ୍ତେ ଅଗ୍ନି ଦରକାର। ଅଗ୍ନି ନିମନ୍ତେ ଦୁଇଟି କାଠକୁ ଘର୍ଷଣ କରାଯାଏ। ଘର୍ଷଣ ଫଳରେ ଅଗ୍ନି ବାହାରେ। ଘର୍ଷଣପୂର୍ବରୁ ସେହି ଦୁଇ କାଠରେ ସୂକ୍ଷ୍ମରୂପରେ ଅଗ୍ନି ବିଦ୍ୟମାନ ଥିଲା। ସେ କାଠରେ କେବଳ କାହିଁକି, ଆକାଶରେ ବି ଉଷ୍ମ ରୂପରେ ସର୍ବତ୍ର ଅଗ୍ନି ଅଛି; କିନ୍ତୁ ତାହା ବ୍ୟକ୍ତନୁହେଁ। କାଠ ଦୁଇଟିକୁ ବଳପୂର୍ବକ ଘର୍ଷଣ

କରାଗଲା, ଏଥିରେ ବାୟୁ ସହାୟତା ବି କଲା। ଫଳରେ କାଠଦ୍ୱୟରେ ଘର୍ଷିତ ହେଉଥିବା ସ୍ଥାନ ଉଷ୍ମ ହେଲା। ଅର୍ଥାତ୍ ସେଠାକୁ ଉଷ୍ମ ଆସିଗଲା। ଏବେ ସେହି ଉଷ୍ମହିଁ ମଥିତ ହୋଇ ହୋଇ ଅଗ୍ନିକଣାରୂପରେ ବ୍ୟକ୍ତ ହୁଏ। ସେହି ଅଗ୍ନିକଣାକୁ ତୂଳା ବା ଶୁଷ୍କ ତୃଣରେ ସଂଯୋଗ କରି ବଢ଼ାଯାଏ, ଏହାପରେ ଛୋଟ ଛୋଟ କାଠ ରଖି ଅଗ୍ନିକୁ ପ୍ରଜ୍ୱଳିତ କରାଯାଏ। ଘୃତାହୁତି ଦେବା ଫଳରେ ଅଗ୍ନି ପ୍ରଚଣ୍ଡ ରୂପ ଧାରଣ କରେ। ବର୍ତ୍ତମାନ ଅତି ସୂକ୍ଷ୍ମ ସ୍ଥୂଳରୂପ ଧାରଣ କରିଦେଲା। ପ୍ରକଟ ହୋଇଥିବା ଏହି ଅଗ୍ନି ଆକାଶରେ ଉଷ୍ମ ରୂପରେ ସର୍ବତ୍ର ବ୍ୟାପକ ଅଗ୍ନିଠାରୁ ଭିନ୍ନ ନୁହେଁ। ଅତି ସୂକ୍ଷ୍ମରୂପରୁ ସ୍ଥୂଳରୂପ ହୋଇଯାଏ।'

''ଠିକ୍ ଏହିଭଳି ପରା, ପଶ୍ୟନ୍ତୀ, ମଧ୍ୟମା ଆଉ ବୈଖରୀ ବାଣୀରୂପରେ ମୋର ହିଁ ଅଭିବ୍ୟକ୍ତି ହୋଇଥାଏ। ସର୍ବବ୍ୟାପକ ରୂପରେ ମୁଁ ହିଁ ପରବ୍ରହ୍ମ। ମୁଁ ଯେତେବେଳେ ବ୍ୟକ୍ତହୋଇଯାଏ, ସେତେବେଳେ ଶବ୍ଦବ୍ରହ୍ମ ବୋଲି କୁହାଯାଏ। କେବଳ ବାଣୀ ନୁହେଁ, ଯେତେ ସବୁ କର୍ମ ଅଛି, ସେ ସବୁ ମୋର ହିଁ କାର୍ଯ୍ୟ। ସମସ୍ତର ଉତ୍ପତ୍ତି ମୋ ଠାରୁ ହୋଇଥାଏ। ଚାରିପ୍ରକାରର ବାଣୀ ମୋ ଠାରୁ ହିଁ ହୋଇଥାଏ।

''ହାତର କାମ ଉଠାଇବା, ଧରିବା, ଦେବା, ନେବା; ପାଦର କର୍ମ ଚାଲିବା, ବୁଲିବା, ମଳଦ୍ୱାରର କର୍ମ ମଳତ୍ୟାଗକରିବା; ନାକର କର୍ମ ଶୁଙ୍ଘିବା, ଆଘ୍ରାଣକରିବା; ଜିହ୍ୱାର କର୍ମ ରସଗ୍ରହଣ କରିବା; ଆଖିର କର୍ମ ବିଷୟ ଦର୍ଶନକରିବା; ଚର୍ମର କର୍ମ ଇନ୍ଦ୍ରିୟଙ୍କର ବିଷୟ କଠିନ, ମୃଦୁଳ, ଶୀତ, ଉଷ୍ଣ ଆଦି ସ୍ପର୍ଶର ଅନୁଭବକରିବା। ଶ୍ରବଣ ଇନ୍ଦ୍ରିୟର କର୍ମ ଭଲ ଖରାପ, ସରସ-ନୀରସ ଶବ୍ଦ ଶୁଣିବା; ମନର କର୍ମ ବିଷୟ ସଂକଳ୍ପକରିବା; ବୁଦ୍ଧିର କର୍ମ ବିଷୟ ବିଚାରକରିବା; ଅଭିମାନର କର୍ମ ଅହଂକୃତିକରିବା; ସୂତ୍ରାତ୍ମାର ମହତତ୍ତ୍ୱର ବିଷୟ ହେଉଛି ସୂକ୍ଷ୍ମରୁ ମହତତ୍ତ୍ୱକରିବା। ସୂକ୍ଷ୍ମଗୁଣର କର୍ମ ଜ୍ଞାନ ଆହରଣକରିବା। ରଜୋଗୁଣର କର୍ମ ହେଉଛି ବିଷୟକୁ କର୍ମରେ ପ୍ରବୃତ୍ତକରିବା; ତଥା ତମୋଗୁଣର କର୍ମ ହେଉଛି ନିଦ୍ରା, ଆଳସ୍ୟ ଆଉ ପ୍ରମାଦକୁ ଜନ୍ମଦେବା। ହେ ଉଦ୍ଧବ! ଏ ସବୁ ହେଉଛି ମୋର କାର୍ଯ୍ୟ। ମୋ ଦ୍ୱାରା ହିଁ ଏହା ସବୁ ହେଉଥାଏ। ମୋ ଠାରୁ ସମଗ୍ର ସଂସାର ଉତ୍ପତ୍ତି ହୋଇଛି।''

ଉଦ୍ଧବ ପଚାରିଲେ, ''ଭଗବନ୍! ଆପଣଙ୍କ ଠାରୁ ଏଡ଼େ ବିଶାଳ ସଂସାର କିପରି ଉତ୍ପତ୍ତି ହେଲା ?''

ଭଗବାନ କହିଲେ, ''ମୋର ଯେତେବେଳେ ରମଣ (କ୍ରୀଡ଼ା) କରିବାକୁ ଇଚ୍ଛା ହେଲା ସେତେବେଳେ ମୁଁ ମୋର ମାୟାର ଆଶ୍ରୟ ନେଲି। ମାୟୋପାଧିକ ହୋଇଥିବାରୁ ମୁଁ ଏହି ତ୍ରିଗୁଣ-ବ୍ରହ୍ମାଣ୍ଡ-କାମନାର ହିଁ କାରଣ। ଆଦିପୁରୁଷ ମୁଁ ହିଁ ସମସ୍ତଙ୍କର ଜନକ।''

ଉଦ୍ଧବ ପଚାରିଲେ, ''ଜଣେ ତ ଆଦିପୁରୁଷ, ତାହା ପୁଣି ଅନେକ ରୂପ ହେଲେ କିପରି ?''

ଭଗବାନ କହିଲେ, ''ହେ ଉଦ୍ଧବ! ମୁଁ ତୁମକୁ ଅନେକଥର କହିଛି, ଆଦିପୁରୁଷ ସର୍ବାଦ୍ୟରେ କେବଳ ଜଣେ ହିଁ ଥିଲେ। ସର୍ବବ୍ୟାପକ ଅଗ୍ନିଙ୍କଭଳି ସେ ଥିଲେ ଅବ୍ୟକ୍ତ।

ଯେତେବେଳେ ସେ ମାୟାର ଆଶ୍ରୟ ନେବାରୁ କାଳର ଗତି ଦ୍ୱାରା ଶକ୍ତିର ବିଭାଗ ହେବାରୁ ଏହି ଆଦିପୁରୁଷ ପରମାତ୍ମା ନାନାରୂପରେ ଆଭାସିତ ହେଉଥିବା ଜଣାଗଲେ। ଏହାର ହିଁ ନାମ ହେଉଛି ଜଗତ।''

ଉଦ୍ଧବ କହିଲେ, ''ଜଗତ ହୋଇଯିବା ପରେ ଭଗବାନ ତ ପୃଥକ୍ ରହିଗଲେ, ଜୀବ ବି ପୃଥକ୍ ପୃଥକ୍ ରହିଲେ, ସଂସାର ବି ତ ପୃଥକ୍ ରହିଲା।''

ଉଦ୍ଧବଙ୍କର ଏପରି କଥା ଶୁଣି ଭଗବାନ ହସିବାରେ ଲାଗିଲେ। ସେ କହିଲେ, ''ଉଦ୍ଧବ! ତୁମେ ପୃଥକ୍ କୁହ ବା ଏକ, ଦୁଇଟିଯାକ କଥା ଇ ଭ୍ରମ। ତାକୁ ଏକ ବା ଅନେକ ଯାହା କହିଲେ ବି ଠିକ୍ ହେବନାହିଁ। ଏହାକୁ କାହାର ବି ଉପମା ଦିଆଯାଇ ନ ପାରେ। ତାହା ହେଉଛି ଜଗତ, ତାହା ବି ହେଉଛି ପରମାତ୍ମା।''

''ଉଦ୍ଧବ! ବସ୍ତ୍ର ସୂତାରେ ତିଆରି। ତା'ର ଧଡ଼ିରେ ବି ସୂତା, ଦେହରେ ବି ସୂତା। ଉପରେ ବି ସୂତା, ତଳେ ବି ସୂତା। ତେବେ ବି ବସ୍ତ୍ରକୁ କେହି ସୂତା କହନ୍ତି ନାହିଁ। ଅନେକ ସୂତା ବୁଣାହୋଇ ବସ୍ତ୍ରହୋଇଛି। ଏହାକୁ ରଙ୍ଗ ଦେଲେ ବସ୍ତ୍ର ରଙ୍ଗୀନ୍ ହୁଏ—ନାଲି ଦେଲେ ନାଲି ରଙ୍ଗ, ହଳଦିଆ ଦେଲେ ହଳଦିଆ ବସ୍ତ୍ର, ମୁଣ୍ଡରେ ବାନ୍ଧିଲେ ପଗଡ଼ି, ଶରୀରରେ ଧାରଣକଲେ ଲୁଗା, ଖଟରେ ବିଛାଇଲେ ଚାଦର, କାନ୍ଧରେ ପକାଇଲେ ଉତ୍ତରୀୟ, ଏହିପରି ହୋଇଥାଏ। ସ୍ତ୍ରୀମାନେ ସିଲାଇକରି ପିନ୍ଧିଲେ ସାୟା, ବ୍ଲାଉଜ, ଓଢ଼ଣୀ ଆଦି ହୋଇଯାଏ। କିନ୍ତୁ ତାହା ସୂତା ହିଁ ସୂତା। ଠିକ୍ ଏହିଭଳି ସଂସାର ସେଇ ଭଗବାନଙ୍କଦ୍ୱାରା ନିର୍ମିତ, ତାଙ୍କଠାରେ ଓତପ୍ରୋତ, ତାଙ୍କରି ଦ୍ୱାରା ପ୍ରତୀତ ହେଉଥାଏ। ଏହି ସଂସାର ଗୋଟିଏ ବୃକ୍ଷ ଭଳି। ଆଉ ପ୍ରବାହ ରୂପରେ ଏହା ସନାତନ।''

ଉଦ୍ଧବ କହିଲେ, ''ଭଗବନ୍! ଏହି ଜଗଦ୍-ବୃକ୍ଷ କିପରି ହେଲା ?''

ଭଗବାନ କହିଲେ, **''ବୃକ୍ଷ ଯେପରି କାଷ୍ଠମୟ, ଜଗତ ସେହିପରି କର୍ମମୟ। ବୃକ୍ଷରୁ କାଠକୁ କାଟିନେଲେ ସତ୍ତା ରହେନାହିଁ। ଠିକ୍ ସେହିଭଳି ସଂସାରରୁ କର୍ମ ବାହାର କରିନେଲେ, ପୃଥକ୍ କରିଦେଲେ ସଂସାର ବି ନଷ୍ଟ ହୋଇଯାଏ। କାଷ୍ଠରେ ଯେପରି ବୃକ୍ଷର ଅସ୍ତିତ୍ୱ ଥାଏ ଠିକ୍ ସେହିଭଳି କର୍ମରେ ଜଗତ୍‌ର ଅସ୍ତିତ୍ୱ ରହିଛି।''**

ଉଦ୍ଧବ ପଚାରିଲେ, ''ଭଗବନ୍! ବୃକ୍ଷ ତ ବୀଜରୁ ଉତ୍ପନ୍ନ ହୁଏ ; ଏହି ସଂସାର ବୀଜ କ'ଣ ? ଏହା କାହାଠାରୁ ଉତ୍ପନ୍ନ ହେଲା ?''

ଭଗବାନ କହିଲେ, ''ପାପ ଆଉ ପୁଣ୍ୟ, ଏହି ଦୁଇଟି ହେଉଛି ସଂସାର ଉତ୍ପନ୍ନ କରୁଥିବା ବୀଜ। ବୀଜକୁ ପଥର ଉପରେ ପକାଇଦେଲେ ତାହା ଉଧାଏ ନାହିଁ। ଏହିଭଳି ଜ୍ଞାନୀମାନଙ୍କ ଦୃଷ୍ଟିରେ ପାପ ବା ପୁଣ୍ୟ ବୋଲି କିଛି ରହେ ନାହିଁ। ଏଣୁ ସଂସାର ଏମାନଙ୍କୁ ସ୍ପର୍ଶ କରେନାହିଁ। ସେମାନେ ଗୁଣରେ ବର୍ତ୍ତମାନ ରହି ସୁଦ୍ଧା ଗୁଣାତୀତ ଭାବରେ ବିଚରଣ କରୁଥା'ନ୍ତି। ବୀଜ କେବଳ ଉର୍ବର ଭୂମିରେ ଉଧେଇ ଶାଖା, ପ୍ରଶାଖା, ପତ୍ର, ପୁଷ୍ପ ଫୁଲ, ଫଳ ଆଦି ଅନେକ ରୂପ ଧାରଣ କରେ। ଏହିଭଳି ମାୟାରେ ଏହି ଦୁଇ ବୀଜ ବଢ଼ି ବୃକ୍ଷରୂପ ଧାରଣ କରେ।''

ଉଦ୍ଧବ କହିଲେ, ''ବୀଜର ପ୍ରଥମେ, (ମୂଳ) ଅଙ୍କୁରୋଦ୍‌ଗମ୍ ହୁଏ। ଏହାପରେ ଅଙ୍କୁର ଉତ୍ପନ୍ନ ହୁଏ। ଏହି ସଂସାର ବୃକ୍ଷର ମୂଳ କ'ଣ ?''

ଭଗବାନ କହିଲେ, ''ଜୀବର ଅସଂଖ୍ୟ ବାସନା ହିଁ ହେଉଛି ଏଇ ସଂସାର ବୃକ୍ଷର ମଞ୍ଜି ବା ମୂଳ।''

ଉଦ୍ଧବ କହିଲେ, ''ବୃକ୍ଷରେ ସର୍ବପ୍ରଥମେ ଅଙ୍କୁର ଉତ୍ପନ୍ନ ହୁଏ। ତାହାହିଁ ଧୀରେ ଧୀରେ ବଡ଼ ଓ ମୋଟାହୋଇ ଗଣ୍ଡି ଶାଖା ଇତ୍ୟାଦି ହୁଏ। ଏହି ସଂସାର ବୃକ୍ଷର ଗଣ୍ଡି କିଏ ?''

ଭଗବାନ କହିଲେ, ''ସତ୍ତ୍ୱ, ରଜ ଆଉ ତମ ହେଉଛି ଏହି ସଂସାର ବୃକ୍ଷର ଗଣ୍ଡି। ଏହି ଗଣ୍ଡିର ଆଧାରରେ ବୃକ୍ଷ ବଢ଼େ। ଗଣ୍ଡିକୁ କାଟିଦେଲେ ବୃକ୍ଷ ବି କଟିଯାଏ। ଏହି ଭଳି ତିନିଗୁଣ ସମଭାବାପନ୍ନ ହୋଇଗଲେ ପ୍ରଳୟ ହୋଇଯାଏ।''

ଉଦ୍ଧବ କହିଲେ, ''ବୃକ୍ଷର ଖୁବ୍ ବଡ଼ବଡ଼ ଶାଖା ସ୍କନ୍ଧରୂପେ ହୋଇଥାଏ। ଏ ସଂସାର ବୃକ୍ଷର ସ୍କନ୍ଧ କିଏ ?''

ଭଗବାନ କହିଲେ, ''ପୃଥିବୀ, ଜଳ, ତେଜ, ବାୟୁ, ଆଉ ଆକାଶ ଏ ସମସ୍ତ ହେଉଛି ସଂସାର ବୃକ୍ଷର ସ୍କନ୍ଧ। ଏହି ସ୍କନ୍ଧ ହେତୁ ହିଁ ଏହା ବଢ଼ିଛି। ବିସ୍ତୃତ ହୋଇଛି।''

ଉଦ୍ଧବ କହିଲେ, ''ଭଗବନ୍! ବୃକ୍ଷର ଅନେକ ଶାଖା ହୋଇଥାଏ। ଏହି ସଂସାର ବୃକ୍ଷର ଶାଖା କିଏ ?''

ଭଗବାନ କହିଲେ, ''ମନ ସହିତ ଏଗାର ଇନ୍ଦ୍ରିୟ ହେଉଛନ୍ତି ଏହାର ଶାଖା। ଏହାଦ୍ୱାରା ତାହା ସଘନ ହୁଏ।''

ଉଦ୍ଧବ କହିଲେ, ''ଭଗବନ୍! ବୃକ୍ଷରେ ଗୋଟିଏ ସ୍ଥୂଳ ଓ ଗୋଟିଏ ସୂକ୍ଷ୍ମ ଓ ଆଉ ଗୋଟିଏ ଅତି ସୂକ୍ଷ୍ମ ଏହିପରି ତିନିପ୍ରକାର ବଲ୍‌କଳ ଥାଏ। ଏହି ସଂସାର ବୃକ୍ଷର ତିନୋଟି ବଲ୍‌କଳ କ'ଣ କ'ଣ ?''

ଭଗବାନ କହିଲେ, ''ବାତ, ପିତ୍ତ ଆଉ କଫ ଏହା ହିଁ ହେଉଛି ସଂସାର ବୃକ୍ଷର ବଲ୍‌କଳ। ପୂରା ଶରୀର, ବାୟୁ, ସ୍ନିଗ୍ଧତା ଓ ଉଷ୍ମ ଏଇଥିରୁ ବାହାରି ଏହାରି ସହିତ ରହିଥାଏ।''

ଉଦ୍ଧବ କହିଲେ, ''ବୃକ୍ଷରେ ଅନେକ ପତ୍ର ହୁଏ। ସଂସାର ବୃକ୍ଷର ପତ୍ର କ'ଣ ?''

ଭଗବାନ କହିଲେ, ''ଏଇ ଯେଉଁ ଚୌରାଶୀ ଲକ୍ଷ ଯୋନି ଅଛି, ଏହାହିଁ ହେଉଛି ସଂସାରବୃକ୍ଷର ପତ୍ର। ପତ୍ର ଯେପରି ପଡ଼ିଯାଏ ପୁଣି ଉତ୍ପନ୍ନ ହୁଏ, ସେହିଭଳି ଯୋନି ସମୂହ ଗୋଟିକ ପରେ ଗୋଟିଏ ବଦଳିବାରେ ଲାଗେ।''

ଉଦ୍ଧବ ପଚାରିଲେ, ''ପ୍ରଭୁ! ବୃକ୍ଷ ମୂଳରେ ରସ ହୁଏ। ଏହି ରସ ଶାଖା ପ୍ରଶାଖାକୁ ସରସତାର ସଂଚାର କରିଥାଏ। ବୃକ୍ଷରେ ଯଦି ରସ ସୃଷ୍ଟି ନ ହୁଏ ତେବେ ତାହା ଦିନେ ବୋଲି ଜିଇଁ ରହି ପାରିବ ନାହିଁ। ଏହି ସଂସାରବୃକ୍ଷର ରସ କ'ଣ ?''

ଭଗବାନ କହିଲେ, ‘‘ହେ ଉଦ୍ଧବ! ଶବ୍ଦ, ରୂପ, ରସ, ଗନ୍ଧ ଆଉ ସ୍ପର୍ଶ ଏ ସମସ୍ତ ହେଉଛି ଏହି ସଂସାରବୃକ୍ଷର ରସ। ଏହିଥିରେ ଏହା ସରସ ଶ୍ୟାମଳିମା ହୁଏ। ଯଦି ଏହି ପଞ୍ଚ ବିଷୟ ନ ହୁଏ, ସେତେବେଳେ ସଂସାର ନୀରସ ହୋଇଯାଏ। ଏହାପରେ ଏଥିରେ କିଛି ଆକର୍ଷଣ ରହେନାହିଁ। ଏହି ବିଷୟରେ ଏହା ପଲ୍ଲବିତ, ପୁଷ୍ପିତ ଆଉ ଫଳ ପରିପୂର୍ଣ୍ଣ ହୁଏ।’’

ଉଦ୍ଧବ କହିଲେ, ‘‘ପ୍ରଭୁ! ବୃକ୍ଷରେ ଫୁଲଫଳ ତ ହୁଏ। ଏହି ସଂସାରବୃକ୍ଷର ଫୁଲଫଳ ସବୁ କ’ଣ?’’

ଭଗବାନ କହିଲେ, ‘‘କର୍ମଭୋଗ ହେଉଛି ଏହି ସଂସାରବୃକ୍ଷର ଫୁଲ। ଦୁଃଖ ଓ ସୁଖ ହେଉଛି ଯଥାକ୍ରମେ କଞ୍ଚା ଓ ପାଚିଲା ଫଳ। ଏହି ସଂସାରବୃକ୍ଷ ଏକ ସାଧାରଣ ବୃକ୍ଷ ନୁହେଁ। ଏହା ଅତି ବିଶାଳ। ଏହାର ବିସ୍ତୃତି ସୂର୍ଯ୍ୟମଣ୍ଡଳ ପର୍ଯ୍ୟନ୍ତ ବ୍ୟାପ୍ତ।’’

ଉଦ୍ଧବ ପଚାରିଲେ, ‘‘ପ୍ରଭୁ! ବୃକ୍ଷରେ ପକ୍ଷୀ ତ ବସାବାନ୍ଧି ରୁହନ୍ତି। ଏହି ସଂସାର ବୃକ୍ଷରେ କୌଣସି ପକ୍ଷୀ ରୁହେ କି?’’

ଭଗବାନ କହିଲେ, ‘‘ହଁ! ଜୀବ ଆଉ ଈଶ୍ୱର ଏଇ ଦୁଇ ପକ୍ଷୀ ଏହି ସଂସାର ବୃକ୍ଷରେ ରୁହନ୍ତି। ଏ ଦୁହିଁଙ୍କ ମଧ୍ୟରୁ ଜଣେ ଫଳ ଖାଇବା ହେତୁ ବାନ୍ଧି ହୋଇଯାଏ, ଅନ୍ୟଟି ଅନଶନରେ ଉପାସ ରହୁଥିବାରୁ ବିମୁକ୍ତ ରହିଥାଏ। ଏହି ସଂସାର ବୃକ୍ଷରେ କଞ୍ଚା, ପାଚିଲା ଏପରି ଦୁଇପ୍ରକାର ଫଳ ଫଳେ। କଞ୍ଚା ଫଳ ଖଟା ନୀରସ ଓ ଅତି କଟୁ ହୋଇଥାଏ, ହେଲେ ବେଳେବେଳେ, ମଝିରେ ମଝିରେ ଟିକିଏ ଟିକିଏ ମିଠା ବି ଲାଗେ। ଏହି ମିଠା ଲୋଭରେ ଗୃହସ୍ଥରୂପୀ ଶାଗୁଣା ତାକୁ ଖାଆନ୍ତି ଆଉ ଦୁଃଖ ପାଆନ୍ତି। ଆଉ ଯେଉଁ ପାଚିଲା ପାଚିଲା ରଙ୍ଗିନ୍ ଫଳ ଥାଏ, ତାହାକୁ ରାଜହଂସ ରୂପୀ ବନବାସୀ ଯତି,- ସନ୍ୟାସୀ, ଯୋଗୀ, ଭକ୍ତଜନ ଆନନ୍ଦରସହିତ ଖାଇ ତୃପ୍ତ ହୁଅନ୍ତି। କୁହ ଉଦ୍ଧବ! ତୁମେ ଶାଗୁଣା ହେବାକୁ ଚାହୁଁଛ ନା ରାଜହଂସ।’’

ଉଦ୍ଧବ କହିଲେ, ‘‘ଯାହା ଆପଣଙ୍କ ଖୁସୀ ତାହା ହିଁ କରନ୍ତୁ। ମୁଁ କହିବାରେ କ’ଣ ଅଛି?’’

ଭାବାବେଶର ସହିତ ଭଗବାନ କହିଲେ, ‘‘ହେ ଉଦ୍ଧବ! ତୁମେ ତ ରାଜହଂସ! ତୁମେ ଏହି ମାୟାମୟ ସଂସାରରେ କେବଳ ମୋତେ ହିଁ ଦେଖ। ମୋତେ ହିଁ ଚିହ୍ନ। ମୋର ପରିଚୟ ପ୍ରତି ସଚେତନ ରୁହ। ସଦ୍‌ଗୁରୁଙ୍କ ଉପାସନା କରି ଯିଏ ଏହି ସଂସାର ରହସ୍ୟକୁ ଜାଣିପାରେ, ସେ ହିଁ କେବଳ ଏହାକୁ ଜାଣିଛି ବୋଲି କୁହାଯାଏ। ଏହି କର୍ମମୟ ସଂସାରବୃକ୍ଷର ଉତ୍ପତ୍ତି ଭୋଗ ଆଉ ମୋକ୍ଷନିମିତ୍ତ ହୋଇଥାଏ। ଅଜ୍ଞାନୀ ଲୋକମାନେ ଭୋଗରେ ଲିପ୍ତହୋଇ ଚୌରାଶୀର ଚକ୍ରରେ ଘୂରିବୁଲୁଥା’ନ୍ତି। ଜ୍ଞାନୀମାନେ ଜ୍ଞାନରୂପୀ ଖଡ୍‌ଗରେ ଏହି ସଂସାରବୃକ୍ଷକୁ ମୂଳରୁ କାଟି ଫୋପାଡ଼ି ଦେଇଥା’ନ୍ତି।

‘‘ମୋ ଭକ୍ତ ହିଁ ଖଡ୍‌ଗକୁ ଦାଢ଼ କରୁଥିବା ଯନ୍ତ୍ର। ଏହି ଯନ୍ତ୍ରରେ ଉପାସନାରୂପୀ ଅନନ୍ୟ ଭକ୍ତିଦ୍ୱାରା ବିଦ୍ୟାରୂପୀ କୁଠାର ଦାଢୁଆ କରିଦିଅ। ଏହାପରେ ଧୀର ଓ

ଅପ୍ରମତ୍ତହୋଇ ଜୀବଭାବକୁ ଉଚ୍ଛେଦ କରିଦିଅ। ନିଜର ଯଥାର୍ଥ ସ୍ୱରୂପକୁ ଚିହ୍ନ, ଏହାପରେ ବିଦ୍ୟାରୂପୀ ଅସ୍ତ୍ରକୁ ବି ତ୍ୟାଗକର। ସକଳ ପ୍ରକାର କର୍ମରୁ ମୁକ୍ତହୋଇ ନିର୍ଦ୍ୱନ୍ଦ୍ୱ, ନିର୍ଭୟ ହୋଇଯାଅ। ଗୁଣାତୀତହୋଇ କର୍ମର ବନ୍ଧନରୁ ମୁକ୍ତ ହୋଇଯାଅ।''

ଉଦ୍ଧବ କହିଲେ, ''ଭଗବନ୍! ତିନି ଗୁଣ ତ ହେଉଛି ଅନାଦି, ଆତ୍ମା ସହିତ ସଂଶ୍ଳିଷ୍ଟ, ଏହି ଗୁଣରୁ ମୁକ୍ତ କିପରି ହୋଇପାରେ?''

ଭଗବାନ କହିଲେ, ''ନା, ନା; କଥାଟା ସେୟା ନୁହେଁ। ସତ୍ତ୍ୱ, ରଜ, ତମ, ଏହା ଆତ୍ମାର ଗୁଣ ନୁହେଁ। ଏହା ତ ବୁଦ୍ଧିର ଗୁଣ। ପରମାତ୍ମା ତ ବୁଦ୍ଧିର ଊର୍ଦ୍ଧ୍ୱରେ। ତେଣୁ ଏହି ତିନିଗୁଣ ବଞ୍ଚି ଯାଇଥାନ୍ତି।''

ଉଦ୍ଧବ କହିଲେ, ''ଭଗବନ୍! ଏହି ତିନିଗୁଣ ବଞ୍ଚନ୍ତି କିପରି?''

ଭଗବାନ କହିଲେ, ''ଦେଖ ଉଦ୍ଧବ! ଏପରି ଜଣେବୋଲି କେହି ମଣିଷ ନାହାନ୍ତି ଯାହାଙ୍କ ପାଖରେ ଏହି ତିନି ଗୁଣ ନ'ଥାଏ। କାହା ପାଖରେ କୌଣସି ଗୋଟିଏ ଗୋଟିଏ ଗୁଣର ଆଧିକ୍ୟ ଥାଏ, ଆଉ କେଉଁ ଗୁଣ ନ୍ୟୂନ। ଯେଉଁମାନେ ଘୋର ତମୋଗୁଣୀ, ସେମାନଙ୍କର ସତ୍ତ୍ୱ, ରଜ ଦବିଯାଏ। ସେହିଭଳି ରଜୋଗୁଣୀଙ୍କର ସତ୍ତ୍ୱ ତମ ଦବିଯାଏ। ସାଧକମାନେ ପ୍ରଥମେ ସତ୍ତ୍ୱଗୁଣ ବୃଦ୍ଧିକରିବା ଉଚିତ। ସତ୍ତ୍ୱଗୁଣର ବୃଦ୍ଧିରେ ରଜୋଗୁଣ ଓ ତମୋଗୁଣ ସ୍ୱତଃ ଜୟ କରାଯାଇ ପାରେ। ଏହାପରେ ଶୁଦ୍ଧ-ସତ୍ତ୍ୱ ଦ୍ୱାରା ମିଶ୍ରିତ ସତ୍ତ୍ୱଗୁଣକୁ ଶାନ୍ତକରିବାକୁ ହୁଏ। ଏବେ ବିଶୁଦ୍ଧ ସତ୍ତ୍ୱ ରହେ। ଯେତେବେଳେ ବୃତ୍ତି ଶୁଦ୍ଧ-ସତ୍ତ୍ୱଗୁଣ-ପ୍ରଧାନ ହୋଇଯାଏ, ସେତେବେଳେ ତହିଁରେ ମୋର ଭକ୍ତି ଉତ୍ପନ୍ନ ହୁଏ।

ଉଦ୍ଧବ ପଚାରିଲେ, ''ସତ୍ତ୍ୱଗୁଣ କିପରି ବୃଦ୍ଧି ହୁଏ?''

ଭଗବାନ କହିଲେ, ''ସତ୍ତ୍ୱଗୁଣର ବୃଦ୍ଧି ସାତ୍ତ୍ୱିକ ବୃତ୍ତିସମୂହର ସେବନରେ ହୁଏ। ସାତ୍ତ୍ୱିକ ଆହାର ହେଉଥିବ, ସାତ୍ତ୍ୱିକ ବିହାର ହେଉଥିବ, ସାତ୍ତ୍ୱିକ ଲୋକମାନଙ୍କ ସଙ୍ଗ ହେଉଥିବ, ସାତ୍ତ୍ୱିକ ବେଶ ହେଉଥିବ, ସାତ୍ତ୍ୱିକ ପ୍ରବୃତ୍ତି ହେଉଥିବ, ଏପରି ଅଭ୍ୟାସ କରୁଥିଲେ ଭକ୍ତିରୂପୀ ମୋର ଯେଉଁ ପରମଧର୍ମ ଅଛି ସେଥିରେ ପ୍ରବୃତ୍ତି ଜାତ ହୋଇଯାଏ।''

ଉଦ୍ଧବ ପଚାରିଲେ, ''ଆପଣଙ୍କର ଭକ୍ତିରୂପୀ ଧର୍ମରେ ପ୍ରବୃତ୍ତହେବାର ଫଳ କ'ଣ?''

ଭଗବାନ କହିଲେ, ''ହେ ଉଦ୍ଧବ! ସତ୍ତ୍ୱଗୁଣର ଅଭିବୃଦ୍ଧି ଯେତେବେଳେ ହୋଇଯାଏ ସେତେବେଳେ ସେହି ସର୍ବୋତ୍ତମ ଧର୍ମରୁ ମନକ୍ରମନ ରଜୋଗୁଣ ଓ ତମୋଗୁଣ ନାଶ ହୋଇଯାଏ। ରଜ ଆଉ ତମ ନାଶ ହୋଇଯିବାପରେ ତହିଁରୁ ଉତ୍ପନ୍ନ ହେଉଥିବା କାମ, ଆସକ୍ତି, ଲୋଭ, ଅଶାନ୍ତି, ବିଷୟଲୋଲୁପତା, ପ୍ରମାଦ, ଆଳସ୍ୟ, ନିଦ୍ରା, ବ୍ୟର୍ଥଚେଷ୍ଟା ଆଦି ଅନ୍ତଃକରଣର ମୋହିନୀ ବୃତ୍ତିରାଶି ବି ଅତିଶୀଘ୍ର ନଷ୍ଟ ହୋଇଯାଏ।''

ଉଦ୍ଧବ ପଚାରିଲେ, **''ଗୁଣ ଆବିର୍ଭାବର ହେତୁ କ'ଣ? ସାତ୍ତ୍ୱିକ, ରାଜସ, ତାମସ ଗୁଣର ପ୍ରାଦୁର୍ଭାବ କିପରି ହୁଏ?**

ଭଗବାନ କହିଲେ, ''ଗୁଣର ପ୍ରାଦୁର୍ଭାବ ଅନେକ। ତେବେ ନିମ୍ନରେ ପ୍ରଦତ୍ତ ଦଶ ଗୁଣ ହେଉଛି ମୁଖ୍ୟ।

''ପ୍ରଥମ କାରଣ ହେଉଛି ଶାସ୍ତ୍ର। ତୁମେ ଯେପରି ଶାସ୍ତ୍ର ଶ୍ରବଣ, ମନନ ତଥା ନିଦିଧ୍ୟାସନ★ କରିବ ତଦନୁରୂପ ଗୁଣର ପ୍ରାଦୁର୍ଭାବ ହେବ। ବେଦରେ ତିନୋଟିଯାକ ଗୁଣ ଅଛି। ଅନେକ ଶାସ୍ତ୍ର ସତ୍ତ୍ୱଗୁଣ-ପ୍ରଧାନ ହୋଇଥିବା ବେଳେ ଅନେକ ରଜୋଗୁଣ ପ୍ରଧାନ, ତଥା ଆହୁରି ଅନେକ ତମୋଗୁଣ-ପ୍ରଧାନ ହୋଇଥାଏ। ସତ୍ତ୍ୱଗୁଣଥିବା ଶାସ୍ତ୍ର ପଢ଼ିଲେ ଆତ୍ମଜ୍ଞାନ, ପୂଜାପାଠ, ଜପତପରେ ପ୍ରବୃତ୍ତି ହୁଏ। ରଜୋଗୁଣ ଶାସ୍ତ୍ରରେ ଯଶ, ବୈଭବ, ରାଜସିକ ଆଡ଼ମ୍ବର, ଯଜ୍ଞ ନିମନ୍ତେ ପ୍ରବୃତ୍ତି ହୋଇଥାଏ; ଏବଂ ତମୋଗୁଣର ଶାସ୍ତ୍ରାଧ୍ୟୟନରେ ମାରଣ, ମୋହନ, ଉଚ୍ଚାଟନ ତଥା ଅନ୍ୟାନ୍ୟ ହିଂସା-ପ୍ରଧାନ ଯାଗ-ଯଜ୍ଞରେ ପ୍ରବୃତ୍ତି ଜାତହୁଏ।

''ଦ୍ୱିତୀୟ କାରଣ ହେଉଛି ଅନ୍ନ-ପାନ। ମଣିଷ ଯେଉଁଭଳି ଅନ୍ନ ଖାଇବ, ଯେଉଁ ପ୍ରକାର ଜଳ ପିଇବ, ତା'ର ମନ ସେହିଭଳି ହେବ। ତା'ର ବୃତ୍ତି ବି ସେହିଭଳି ହେବ। ସାତ୍ତ୍ୱିକ ଅନ୍ନ ଭୋଜନଦ୍ୱାରା ସାତ୍ତ୍ୱିକ ବୃତ୍ତି ହୁଏ; ରାଜସ, ତାମସରେ ରାଜସୀ, ତାମସୀ। ଅନ୍ନପାନ ହିଁ ପ୍ରାଣୀଙ୍କର ହେଉଛି ଜୀବନ।

''ତୃତୀୟ କାରଣ ହେଉଛି କୁଟୁମ୍ବ। ମାତା, ପିତା, ଭାଇ, ବନ୍ଧୁ ଯେଉଁ ପ୍ରକୃତିର ହୋଇଥିବେ ସେହିଭଳି ପ୍ରଭାବ ଆମ ଜୀବନଉପରେ ପଡ଼ିବ। ବେଳେବେଳେ ବିପରୀତ ପ୍ରଭାବ ପଡ଼େ, ଯେପରି ପ୍ରହ୍ଲାଦଙ୍କ ଉପରେ ତାଙ୍କ କୁଟୁମ୍ବର କୌଣସି ପ୍ରଭାବ ପଡ଼ିପାରି ନ ଥିଲା। ଏହା କିନ୍ତୁ ଏକ ଅସାଧାରଣ ବ୍ୟତିକ୍ରମ। ସାଧାରଣ ନିୟମ ହେଉଛି, କୁଟୁମ୍ବର ଲୋକମାନେ ଯେଉଁ ପ୍ରକୃତିର ହୋଇଥିବେ ସେହିଭଳି ଗୁଣର ପ୍ରାଦୁର୍ଭାବ ଅନ୍ୟଙ୍କ ଉପରେ ହୋଇଥାଏ।

''ଚତୁର୍ଥ କାରଣ ହେଉଛି 'ଦେଶ'। ଯେ'ଭଳି ଦେଶ, ସେ'ଭଳି ବେଶ। ସାତ୍ତ୍ୱିକ ଦେଶ ହୋଇଥିଲେ ଲୋକଙ୍କ ପ୍ରବୃତ୍ତି ସାତ୍ତ୍ୱିକ ହୋଇଥାଏ। ରାଜସ ତାମସ ଦେଶ ହୋଇଥିଲେ ରାଜସୀ ତାମସୀ ବୃତ୍ତି ହୋଇଥାଏ। ସେଇଥିପାଇଁ ସ୍ମୃତିକାରମାନେ ବିଦେଶ ଯାତ୍ରା ପ୍ରସଙ୍ଗରେ ବିଶେଷ ଗୁରୁତ୍ୱଦେଇ କହନ୍ତି, ସମୁଦ୍ର ପାରିହୋଇ ବିଦେଶକୁ ଯିବା ଅନୁଚିତ। ଆମ ଦେଶରେ ଅଙ୍ଗ-ବଙ୍ଗ-କଳିଙ୍ଗାଦି କୀକଟ ଦେଶ, ସେଠାକୁ ଯଦି ତୀର୍ଥଯାତ୍ରା ଛଡ଼ା ଅନ୍ୟସମୟରେ ଯାତ୍ରା କରାଯାଏ ତେବେ ପୁଣିଥରେ ସଂସ୍କାର ହେବା ଦରକାର। ଦେଶର ପ୍ରଭାବ ନ ପଡ଼ି ରହେନାହିଁ। ଉଷ୍ଣପ୍ରଧାନ ଦେଶର ଲୋକମାନଙ୍କର ଚାଲିଚଳନ, ଆଚାରବିଚାର ଯେପରି ହୋଇଥିଲେ ବି ଶୀତପ୍ରଧାନ ଦେଶକୁ ଗଲେ ସେଥିରେ ଶିଥିଳତା ଆସିଯାଏ।

''ପଞ୍ଚମ କାରଣ ହେଉଛି 'କାଳ'। ଏହା ହିଁ ମୁଖ୍ୟ କାରଣ। ବଳାବଳର କାରଣ ହେଉଛି କାଳ। ସତ୍ୟଯୁଗରେ ସମସ୍ତଙ୍କର ପ୍ରବୃତ୍ତି ଥିଲା ସାତ୍ତ୍ୱିକ। ତ୍ରେତୟାରେ ରାଜସିକ। ଦ୍ୱାପରରେ ରାଜସୀ ଓ କିଛି କିଛି ତାମସିକ। ଆଉ କଳିଯୁଗରେ ଭଲ

★ ନିରନ୍ତର ଧ୍ୟାନ।

ଭଲ ଲୋକଙ୍କ ବୃତ୍ତି ତାମସିକ ହୋଇଯାଏ। କେହି ସିଦ୍ଧ ନ ଥାନ୍ତି, ଯୋଗୀ ନ ଥାନ୍ତି, କି ସତ୍‌କର୍ମ କେହି କରନ୍ତି ନାହିଁ। ସମସ୍ତଙ୍କୁ କଳିକାଳ ଗ୍ରାସ କରିଥାଏ। ସମସ୍ତେ ବିବଶ ହୋଇ କଳିର ଅଧୀନସ୍ଥ ହୋଇଥା'ନ୍ତି। ଗରମ ଦିନରେ ଯେଉଁ ବସ୍ତ୍ର ପରିଧାନ କରିବାକୁ ଘୃଣା ଲାଗେ, ଶୀତଦିନରେ ତାହା ସତେ କେଡ଼ େଭଲ ନ ଲାଗେ! ଯେଉଁ ଅଗ୍ନିକୁ ଦେଖି ଖରାଦିନେ ମଣିଷ ଦୂରକୁ ପଳାଏ, ଶୀତଦିନେ ତାହା କେଡ଼େ ସୁଖପ୍ରଦ ନ ଲାଗେ! ଏହିପରି ଗୁଣର ପ୍ରାଦୁର୍ଭାବର ପ୍ରଧାନ କାରଣ କାଳ ହୋଇଥାଏ।

''ଷଷ୍ଠ କାରଣ ହେଉଛି 'କର୍ମ'। ଯେଉଁଭଳି କର୍ମ କରିବା ସେହିଭଳି ଗୁଣର ପ୍ରାଦୁର୍ଭାବ ହୋଇଥାଏ। ସାତ୍ତ୍ୱିକ କର୍ମକଲେ ବୃତ୍ତି ସାତ୍ତ୍ୱିକ ହୋଇଥାଏ। ରାଜସ, ତାମସ କର୍ମରେ ରାଜସୀ, ତାମସୀ। ଏଣୁ ସତ୍ତ୍ୱଗୁଣର ଅଭିବୃଦ୍ଧି ନିମନ୍ତେ କର୍ମକରିବା ଉଚିତ।

''ସପ୍ତମ କାରଣ ହେଉଛି 'ଜନ୍ମ'। ଯେଉଁଭଳି ମାତାପିତାଙ୍କ ଠାରୁ ଜନ୍ମଗ୍ରହଣ କରିବା, ଯେଉଁଭଳି ସମୟରେ ଜନ୍ମ ହେବା, ପ୍ରକୃତି ତଦନୁରୂପ ହୋଇଥାଏ। ରକ୍ତ-ବୀର୍ଯ୍ୟର ପ୍ରଭାବ ଶରୀର ଉପରେ ବହୁତ ପଡ଼ିଥାଏ। ପିତାର ବୀର୍ଯ୍ୟ ଓ ମାତାର ରକ୍ତରେ ହିଁ ଶରୀର ଗଠିତହୁଏ। ତେଣୁ ବେଳେବେଳେ ସାତ-ସାତ ପୁରୁଷର ପ୍ରଭାବ ବି ଦେଖାଦିଏ। ସାତ୍ତ୍ୱିକ ବଂଶରେ ଜନ୍ମଗ୍ରହଣ କଲେ ବୃତ୍ତି ପ୍ରାୟ ସାତ୍ତ୍ୱିକ ହୁଏ। ରାଜସ ତାମସରେ ଜନ୍ମ ଗ୍ରହଣ କଲେ ରାଜସୀ ଓ ତାମସୀ ବୃତ୍ତି ହୁଏ।

''ଅଷ୍ଟମ କାରଣ ହେଉଛି 'ଧ୍ୟାନ'। ଯେଉଁଭଳି ଲୋକକୁ ଅନବରତ ଧ୍ୟାନ କରିବା ସେହିଭଳି ବୃତ୍ତି ହୋଇଯାଏ। ଯୋଗୀଙ୍କୁ ଧ୍ୟାନକଲେ ମନ ଶୁଦ୍ଧ ହୁଏ। କାମିନୀଙ୍କୁ, ବିଷୟୀଙ୍କୁ ଧ୍ୟାନକରିବା ଫଳରେ ମନ କାମମୟ ହୁଏ। ଗର୍ଭଧାରଣ ସମୟରେ ମାତା ଯାହାଙ୍କୁ ଧ୍ୟାନକରେ, ଗର୍ଭସ୍ଥ ସନ୍ତାନଉପରେ ଏହାର ପ୍ରଭାବ ପଡ଼ିଥାଏ। ସାତ୍ତ୍ୱିକ ଧ୍ୟାନରେ ସାତ୍ତ୍ୱିକୀ ବୃତ୍ତି, ଇତର ଧ୍ୟାନରେ ଇତର ବୃତ୍ତି। ଏଣୁ ସାତ୍ତ୍ୱିକୀ ଅଭିବୃଦ୍ଧି ନିମନ୍ତେ ଆଗ୍ରହୀଥିବା ଲୋକ ସବୁବେଳେ ସାତ୍ତ୍ୱିକ ପୁରୁଷଙ୍କର, ସାତ୍ତ୍ୱିକ ବସ୍ତୁର ହିଁ ଧ୍ୟାନ କରୁଥିବା ଉଚିତ। ସାତ୍ତ୍ୱିକ ଦେବତାଙ୍କୁ ଧ୍ୟାନକଲେ ସତ୍ତ୍ୱ ବଢ଼େ, ଆଉ ଯକ୍ଷ, ରାକ୍ଷସ, ଭୂତ, ପିଶାଚ ତଥା ଅନ୍ୟ ରାଜସ-ତାମସ ଦେବତାଙ୍କୁ ଧ୍ୟାନକଲେ ଆମର ତଦ ପ୍ରଭାବରେ ଗୁଣ ବର୍ଦ୍ଧିତ ହୁଏ।

''ନବମ କାରଣ ହେଉଛି 'ମନ୍ତ୍ର'। ମନ୍ତ୍ର ଯେଉଁଭଳି ହୋଇଥାଏ ସେହିଭଳି ଗୁଣର ଅଭିବୃଦ୍ଧି ହୁଏ। ସାତ୍ତ୍ୱିକ ମନ୍ତ୍ର ଜପଦ୍ୱାରା ଭାବରେ ସାତ୍ତ୍ୱିକତା ଆସେ। ରାଜସ-ତାମସ ମନ୍ତ୍ରରେ ରଜଗୁଣ ତମୋଗୁଣ ଅଧିକ ବୃଦ୍ଧିପାଏ। ମନ୍ତ୍ରର ପ୍ରଭାବ ପରସ୍ପର ଉପରେ ପଡ଼େ। କେତେକ ଧୂର୍ତ୍ତ ଲୋକ, ଲୋକଙ୍କୁ ଠକିବା ପାଇଁ ମନ୍ତ୍ରର ବ୍ୟବସାୟ କରନ୍ତି। ସେମାନେ ଏଣୁ ତେଣୁ ପଢ଼ି ଦଶ କୋଡ଼ିଏଟି ମନ୍ତ୍ରକୁ ମୁଖସ୍ଥ କରିଥାନ୍ତି। ଆମେ ଯେତେବେଳେ ତା ପାଖରେ ପହଁଚୁ, ସେତେବେଳେ କାହାକୁ ରାମ ମନ୍ତ୍ର ତ କାହାକୁ କୃଷ୍ଣ ମନ୍ତ୍ର, କାହାକୁ ଚଣ୍ଡୀଙ୍କର ତ ଆଉକାହାକୁ କାଳୀଙ୍କର, କାହାକୁ ଭୈରବଙ୍କ ମନ୍ତ୍ର ଦିଅନ୍ତି। ଏପରି ମନ୍ତ୍ରର କୌଣସି ପ୍ରଭାବ ପଡ଼େନାହିଁ। କେବଳ ମନ୍ତ୍ର ପ୍ରଦାନକାରୀଙ୍କର ଜୀବିକା ନିର୍ବାହ ହୋଇଯାଏ। ଆଉ ଏପରି ଦାତା ଓ ଗ୍ରହୀତା ଦୁହେଁ ସିଧା ନର୍କରେ ନିପତିତ ହୋଇଥାନ୍ତି। ଏଣୁ ଅନେକ ଭାବିଚିନ୍ତି ସାତ୍ତ୍ୱିକ ଗୁରୁଙ୍କଠାରୁ ସାତ୍ତ୍ୱିକ ମନ୍ତ୍ର

ଗ୍ରହଣ କରିବା ବିଧେୟ। ରୁଦ୍ର, ଭୈରବ, ଭୂତ, ପ୍ରେତଙ୍କ ମନ୍ତ୍ର ସାତ୍ତ୍ୱିକ ବୃତ୍ତିସମ୍ପନ୍ନ ଲୋକ ଗ୍ରହଣ ନ କରିବା ଉଚିତ।

''ଦଶମ କାରଣ ହେଉଛି 'ସଂସ୍କାର'। ଜୀବନରେ ସଂସ୍କାରର ଖୁବ୍ ପ୍ରଭାବ ପଡ଼େ। ତେଣୁ ହିଁ ଷୋଡ଼ଶ ସଂସ୍କାରର ପ୍ରଭାବରେ ଦ୍ୱିଜଙ୍କୁ ଅତି ଉଚ୍ଚ ଆସନ ଦିଆହୋଇଛି। ସଂସ୍କାର ଯେଉଁଭଳି ହୋଇଥିବ, ଭାବ ସେହିଭଳି ହୋଇଥାଏ।

''ଏହିଭଳି ଗୁଣର ପ୍ରାଦୁର୍ଭାବର ଦଶ ମୁଖ୍ୟକାରଣ ହେଲା ଶାସ୍ତ୍ର, ଜଳ, କୁଟୁମ୍ବ, ଦେଶ, କାଳ, କର୍ମ, ଜନ୍ମ, ଧ୍ୟାନ, ମନ୍ତ୍ର ଆଉ ସଂସ୍କାର।''

ଉଦ୍ଧବ ପଚାରିଲେ, ''ଭଗବନ୍! ସାତ୍ତ୍ୱିକ, ରାଜସ ଆଉ ତାମସ କର୍ମର ସେପରି କିଛି ନିର୍ଦ୍ଦିଷ୍ଟ ତାଲିକା ତ ନାହିଁ। ତେଣୁ କୃପାକରି ସାଧାରଣଭାବେ ଜାଣିପାରିବା ଭଳି କିଛି ଉପଦେଶ ଦେଲେ ଭଲହୁଅନ୍ତା। ସାତ୍ତ୍ୱିକ, ରାଜସ, ତାମସ ପ୍ରସଙ୍ଗରେ ମୋଟାମୋଟି ଆମେ ଅବଗତ ହୋଇପାରନ୍ତୁ।

ଭଗବାନ କହିଲେ, ''ଦେଖ ଉଦ୍ଧବ! ସାଧାରଣଭାବରେ କହିବାକୁ ଗଲେ ଯିଏ ଜ୍ଞାନୀ, ବୟୋବୃଦ୍ଧ, ଜ୍ଞାନବୃଦ୍ଧ ହୋଇଥାନ୍ତି, ସେମାନେ ଯାହାକୁ ପ୍ରଶଂସା କରନ୍ତି, ସେମାନେ ଯାହାକୁ ସାତ୍ତ୍ୱିକ ବୋଲି କହନ୍ତି, ସେଇମାନେ ହିଁ ପ୍ରକୃତରେ ସାତ୍ତ୍ୱିକ ହୋଇଥାନ୍ତି। ସେମାନେ ଯାହାକୁ ନିନ୍ଦାକରନ୍ତି ସେମାନେ ତାମସ ଓ ଯାହାଙ୍କୁ ଉପେକ୍ଷା କରନ୍ତି ସେମାନେ ରାଜସିକ ବୋଲି ଜାଣିବାକୁ ହେବ।''

ଉଦ୍ଧବ କହିଲେ, ''ଭଗବାନ! ଋଷି-ମୁନିମାନେ ଗୁଣାତୀତକୁ ପ୍ରଶଂସା କରିଥାନ୍ତି। ସେମାନେ ତ୍ରିଗୁଣାତୀତ ହୋଇଯିବା ପାଇଁ ବାରମ୍ବାର ପ୍ରଶଂସା କରିଥାନ୍ତି।''

ଭଗବାନ କହିଲେ, ''ଆରେ ଭାଇ! ଗୁଣାତୀତ ହେବା କ'ଣ ଖେଳଘର! ଗୁଣ ତ ପିନ୍ଧିବାଭଳି ବସ୍ତ୍ର ନୁହେଁ ଯେ ତାକୁ କାଢ଼ି ପକେଇଦେବା। ଆରେ ଭାଇ! ତାହା ତ ଅନ୍ତଃକରଣରେ ଚର୍ମଭଳି ଲାଖିରହିଥାଏ। ତାକୁ ଅତି ଧୀରେଧୀରେ ଦୂରକରିବାକୁ ହୁଏ। ଯେପର୍ଯ୍ୟନ୍ତ ସ୍ଥୂଳ ସୂକ୍ଷ୍ମ ଉଭୟର ଦେହ ତଥା ସେମାନଙ୍କ କାରଣ-ଭୂତ ଗୁଣସମୂହର ଭଲରୂପେ ନିବୃତ୍ତି ହୋଇ ନ ଥାଏ, ସେପର୍ଯ୍ୟନ୍ତ ସତ୍ତ୍ୱଗୁଣର ବୃଦ୍ଧିନିମନ୍ତେ ସତତ ଯତ୍ନନେବା ନିହାତି ଆବଶ୍ୟକ। ସାତ୍ତ୍ୱିକ ଶାସ୍ତ୍ରର ଅଧ୍ୟୟନ ଅନବରତ କରୁଥିବା ଉଚିତ। ସାତ୍ତ୍ୱିକ ଲୋକଙ୍କ ସହିତ ମିଳାମିଶା, ବସାଉଠା କରୁଥିବା ଉଚିତ। ସାତ୍ତ୍ୱିକ କର୍ମ କରୁଥିବା ଉଚିତ। ସାତ୍ତ୍ୱିକ ଆହାର ବ୍ୟବହାର କରୁଥିବା ଉଚିତ। ଅନବରତ ସାତ୍ତ୍ୱିକ ସତ୍ତ୍ୱର ସେବନ କରିବାଫଳରେ ଧର୍ମର ବୃଦ୍ଧିହୁଏ, ଏହାପରେ ଜ୍ଞାନ ଉଦୟ ହୁଏ। ଜ୍ଞାନ ହେବା ପରକ୍ଷଣରେ ମଣିଷ ତ୍ରିଗୁଣାତୀତ ହେବା ଆରମ୍ଭ କରେ।''

ଉଦ୍ଧବ କହିଲେ, ''ପ୍ରଭୁ! ସତ୍ତ୍ୱ ବି ତ ଏକ ଗୁଣ। ଗୁଣଦ୍ୱାରା ସେବିତ ହୋଇ ଆମେ ଗୁଣାତୀତ ହେବୁ କିପରି?''

ଭଗବାନ କହିଲେ, ''ଦେଖ! ପାଦରେ କଣ୍ଟାଟିଏ ଗଳିଗଲେ ଆମେ ଆଉ ଏକ କଣ୍ଟା ସାହାଯ୍ୟରେ ପାଦରେ ଗଳିଥିବା କଣ୍ଟାକୁ ବାହାରକରୁ। ଏହାପରେ ବାହାରି

ଯାଇଥିବା କଣ୍ଟା ଓ ବାହାରକରିବା ପାଇଁ ବ୍ୟବହାରକରିଥିବା କଣ୍ଟା ଉଭୟକୁ ଆମେ ଫୋପାଡ଼ିଦେଉ।

"ବଣରେ ବାଉଁଶ ଘଗଡ଼ି ହୋଇ ଅଗ୍ନି ଉତ୍ପନ୍ନ ହୁଏ। ଅଗ୍ନି ଉତ୍ପନ୍ନ ହେବାପରେ ସେଇ ବାଉଁଶ ବଣକୁ ଜାଳି ଭସ୍ମ କରିପକାଏ। ସମସ୍ତ ଜଳିଯିବାପରେ ଅଗ୍ନି ଶାନ୍ତହୁଏ।"

"ଠିକ୍ ଏହିଭଳି ସତ୍ତ୍ୱଗୁଣର ବୃଦ୍ଧିରେ ରଜୋଗୁଣ ଓ ତମୋଗୁଣ ନଷ୍ଟ ହୋଇଯାଏ। ଅନବରତ ସତ୍ତ୍ୱର ସେବନଦ୍ୱାରା ଜ୍ଞାନରୂପୀ ଅଗ୍ନି ଉତ୍ପନ୍ନହୁଏ। ଏହି ଜ୍ଞାନରୂପୀ ଅଗ୍ନି ସତ୍ତ୍ୱକୁ ବି ଜାଳି ଗୁଣାତୀତ ସ୍ଥିତିକୁ ପ୍ରାପ୍ତ କରାଇଦିଏ। ନିଜଠାରୁ ଉତ୍ପନ୍ନହୋଇଥିବା ଜ୍ଞାନଦ୍ୱାରା ଗୁଣମାନଙ୍କର ସକଳ କାର୍ଯ୍ୟର ଲୟ କରାଇ ଦିଏ। କଥା ହେଉଛି, ଏହି ଦେହ ଗୁଣ ବୈଷମ୍ୟରୁ ହିଁ ଉତ୍ପନ୍ନ ହୋଇଛି। ଏଣୁ ପୂର୍ଣ୍ଣ ସତ୍ତ୍ୱର ବୃଦ୍ଧି ଦ୍ୱାରା ଯେତେବେଳେ ଜ୍ଞାନର ଅଭ୍ୟୁଦୟ ହୁଏ, ସେତେବେଳେ ତିନୋଟିଯାକ ଗୁଣ ସମାପ୍ତ ହୋଇଯାଏ। ଏଣୁ ତ୍ରିଗୁଣାତୀତ ହେବାପାଇଁ ସତ୍ତ୍ୱର ହିଁ ସେବନକରିବା ଆବଶ୍ୟକ। ବିଷୟସମୂହର ସେବନ କଦାପି କରିବା ଉଚିତ ନୁହେଁ।"

ଏପରି କଥା ଶୁଣି ଉଦ୍ଧବ କହିଲେ, "ଭଗବନ୍! ମୋ ମନରେ ଏକ ଭୟଙ୍କର ଶଙ୍କା ଜାତ ହେଉଛି। ସାଂସାରିକ ବିଷୟ ଦୁଃଖମୟ ବୋଲି ମୁଁ ସମସ୍ତଙ୍କଠାରୁ ଶୁଣିଛି। ମୂର୍ଖଙ୍କଠାରୁ ଆରମ୍ଭକରି ମହାନ୍ ମହାନ୍ ବିଦ୍ୱାନ୍‌ମାନେ ଏକସ୍ୱରରେ କାମର ନିନ୍ଦା କରିଥାନ୍ତି। କିନ୍ତୁ ଏହାକୁ ବ୍ୟବହାରରେ, କାର୍ଯ୍ୟରେ ଆଣିଥିବା ଲୋକ— ମାନୁଥିବା ଲୋକ ଅତି ବିରଳ। ବିଦ୍ୱାନମାନେ ସଭାମାନଙ୍କରେ କାମର ଏପରି ନିନ୍ଦା ରଚନାକରି ଲମ୍ବା ଲମ୍ବା ବକ୍ତୃତା ଦିଅନ୍ତି ଯେ କହିଲେ ନ ସରେ, ଶୁଣିବା ଲୋକର ରୁମ ଟାଙ୍କୋରି ଉଠେ; ସେମାନେ ନର୍କର ଭୟ ଦେଖାନ୍ତି, ଶାସ୍ତ୍ରମାନଙ୍କର ଲମ୍ବା ଲମ୍ବା ବ୍ୟାଖ୍ୟା କରନ୍ତି; ବ୍ୟଭିଚାରୀ ସ୍ତ୍ରୀ-ପୁରୁଷଙ୍କୁ ନର୍କରେ ଅକଥନୀୟ ଦଣ୍ଡପାଉଥିବା ଦୃଶ୍ୟ ସତେ ଦେଖିଥିବାଭଳି ବର୍ଣ୍ଣନା କରନ୍ତି; କିନ୍ତୁ ବାସ୍ତବ କ୍ଷେତ୍ରରେ ସେହିମାନେ ହିଁ ସର୍ବପ୍ରଥମେ କାମର ଯନ୍ତାରେ ପଡ଼ିଥିବା ଦେଖାଯାଏ। ଯେଭଳି ଶ୍ୱାନ, ମାଦିଶ୍ୱାନ ପଛରେ ପାଗଳଙ୍କପରି ଗୋଡ଼ାଉଥାଏ; ଯେଉଁଭଳି ଗଧ ମାଈଗଧ ପଛରେ ପାଗଳଙ୍କଭଳି ଉନ୍ମତ୍ତ ହେଉଥାଏ; ଯେଉଁଭଳି ବୋଦା ଛେଳି ପଛରେ ଉନ୍ମତ୍ତ ଭାବେ ଲାଗିଥାଏ; ଠିକ୍ ସେହିଭଳି ଉପଦେଶ, ବକ୍ତୃତା ଦେଉଥିବା ଲୋକମାନେ କାମିନୀଙ୍କ ଦାସ ହୋଇ ରହିଥିବା ଦେଖାଯାଏ। ଯେଉଁ ପ୍ରସଙ୍ଗକୁ ସେମାନେ ଅତି କୁତ୍ସିତ ଭାଷାରେ ନିନ୍ଦା କରୁଥାନ୍ତି ସେଇକଥାକୁ କିପରି ଭୋଗ କରିବାକୁ ବ୍ୟଗ୍ର ହେଉଥାନ୍ତି? ସଂସାର ବିଷୟରେ ଏପରି କେଉଁ ଅଦ୍ଭୁତ କଥା ଅଛି ଯେ ଦୁଃଖ ପାଉଥିଲେ ବି ଲୋକମାନେ ତାହା ତ୍ୟାଗ କରିପାରନ୍ତି ନାହିଁ, ଛାଡ଼ି ପାରନ୍ତି ନାହିଁ। ଖରାପ କରୁଥିଲେ ବି ନିଜେ ତାହାକୁ ତ୍ୟାଗ କରିପାରନ୍ତି ନାହିଁ। ଏହି ପ୍ରସଙ୍ଗରେ ଜ୍ଞାନୀ ଆଉ ମୂର୍ଖଙ୍କ ବ୍ୟବହାର ଏକାଭଳି ଦେଖାଯାଏ। ବିଷୟ ଭୋଗ କରି ଆମେ ତୃପ୍ତ ହୋଇଯାଇଛୁ, ବିଷୟ ଭୋଗ ଆମକୁ ସବୁବେଳେ ସୁଖ ହିଁ ସୁଖ ଦେଉଛି, ଏପରି କହିବା ଜଣେବୋଲି ଲୋକ ଆଜିପର୍ଯ୍ୟନ୍ତ ଦେଖାଯାଇନାହିଁ। ବିଷୟ ଭୋଗ କ୍ଷଣିକ ସୁଖ ଦିଏ ଏବଂ ପରେ, ଶେଷରେ ଏହା ଦୁଃଖ ଦେଇଥାଏ। ବିଷୟ ଭୋଗର ଅନ୍ତିମ ପରିଣାମ ଦୁଃଖବୋଲି ଜାଣିସୁଦ୍ଧା ଲୋକମାନେ ଏହା ଛାଡ଼ିପାରନ୍ତି ନାହିଁ। ଲୋକମାନେ ଏହି କ୍ଷଣଭଙ୍ଗୁର ଅନିତ୍ୟ କଥା ପଛରେ କାହିଁକି ଲାଗିରହିଥାନ୍ତି?"

ଉଦ୍ଧବଙ୍କର ଏପରି କଥା ଶୁଣି ଭଗବାନ ହସିବାରେ ଲାଗିଲେ। ସେ କହିଲେ, ''ହେ ଉଦ୍ଧବ! ଏହାହିଁ ମୋର ମାୟା। ଯାହା ନାହିଁ ତାହା ଦେଖାଯାଉଥାଏ। ଥିଲା ଭଳି ଜଣାଯାଏ। ଯାହା ବାସ୍ତବରେ ଦୁଃଖଦାୟୀ ତାହା ସୁଖପ୍ରଦାନକାରୀ ଭଳି ଜଣାଯାଏ। ଯାହା ସର୍ବଥା ଅନିତ୍ୟ ତାହାର ନିତ୍ୟତା ପ୍ରତୀୟମାନ ହେଉଥାଏ। ଅଜ୍ଞାନତା ହେତୁ ଏହା ଅନେକ ବାସନା ହୃଦୟରେ ଅନବରତ ଉତ୍ପନ୍ନ କରୁଥାଏ।

ଉଦ୍ଧବ ପଚାରିଲେ, ''ପ୍ରଭୁ! ଅନ୍ତଃକରଣରେ ବାସନା କିପରି ଓ କାହିଁକି ଉତ୍ପନ୍ନ ହୁଏ? ଏହାର କାମ କ'ଣ? ବିଷୟ ଅନ୍ତଃକରଣକୁ କିପରି ଜାବୋଡ଼ି ପକାଏ?''

ଭଗବାନ କହିଲେ, ''ଠିକ୍ ଅଛି ଉଦ୍ଧବ! ମୁଁ ତୁମକୁ ଏହି ପରମଗୂଢ଼ ରହସ୍ୟ ସମ୍ବନ୍ଧରେ ବୁଝାଉଛି, ଏହାକୁ ତୁମେ ସାବଧାନତା ସହକାରେ ଶୁଣ।''

ମହର୍ଷି ସୂତ କହୁଛନ୍ତି, ''ହେ ମୁନିଗଣ! ଭଗବାନ ଯେଉଁଭଳି ଅନ୍ତଃକରଣରେ ବାସନା ଜାଗ୍ରତ ହେବା ପ୍ରସଙ୍ଗର କ୍ରମ କହିଛନ୍ତି ତାହାର ବର୍ଣ୍ଣନା ମୁଁ ଆପଣମାନଙ୍କ ଆଗରେ କହୁଛି, ଆପଣମାନେ ଶୁଣନ୍ତୁ।''

### ଛପ୍‌ପୟ

ଗୁନ ହୀ ବନ୍ଧନ ହେତୁ ପ୍ରଥମ ରଜ ତମକୁଁ ତ୍ୟାଗେ।
ସତ୍ଵବୃଦ୍ଧିତେଂ ଭକ୍ତି ହୋହି ଶ୍ରଦ୍ଧା ହିୟ ଜାଗେ॥
ଆଗମ, ଜଲ ଅରୁ କୁଟୁମ,ଦେଶ, ସଂସ୍କାର କରମ ପୁନି।
କାଲ, ଜନମ ଅରୁ ଧ୍ୟାନ ମନ୍ତ୍ର ଯେ କାରନ ଦଶ ସୁନି॥
ତତ୍ତ୍ୱଜ୍ଞାନ ହୋବୈ ନହୀଁ, ସବୈ ତବ ତଜ ସତ୍ତ୍ୱକୁଁ।
ଜ୍ଞାନ ଅଗିନି ଅଜ୍ଞାନ ରଖି, ପ୍ରାପ୍ତ କରୈ ଏକତ୍ୱକୁଁ॥



# ବିଷୟ ବାସନାର ପ୍ରବୃତ୍ତି

**ଅହମିତ୍ୟନ୍ୟଥାବୁଦ୍ଧିଃ ପ୍ରମତ୍ତସ୍ୟ ଯଥା ହୃଦି ।**
**ଉତ୍ସର୍ପତି ରଜୋ ଘୋରଂ ତତୋ ବୈକାରିକଂ ମନଃ ।।** 

[ଶ୍ରୀଭା.୧୧ସ୍କ.୧୩ଅ.୯ ଶ୍ଳୋକ]

### ଛପ୍ପୟ

ଉଦ୍ଧବ ବୋଲେ-ପ୍ରଭୋ । ସବହିଁ ମାନେ ବିଷୟନି ଦୁଖ ।
ଫିରି ଚୌଁକି ତିନିକୁଁ ଭଜେଂ କରେଂ ତିନିମେଂ ଅନୁଭବ ସୁଖ ।।
ହଁସି ବୋଲେ ଭଗବାନ ଅହଂତା ତେଂ ମୂରଖ ଜନ ।
ଫସୈ ରଜୋଗୁନ ମାହିଁ କାମନାବଶ ହୋବୈ ମନ ।।
କବହୁଁ ବିବେକୀ ହୁ ଫଁସୈ, କିନ୍ତୁ ହୋହିଁ ଆସକ୍ତ ନହିଁ ।
ଚିତ୍ତ ସମାହିତ କରତ ହିତ, କରୈ ଧ୍ୟାନ ସଂୟମ ନିତହିଁ ।।

ଚିତ୍ତ ଯେତେବେଳେ ରଜୋଗୁଣ-ମୟ (ରଜୋଗୁଣର ରଙ୍ଗରେ ରଙ୍ଗେଇ) ହୋଇଯାଏ, ସେତେବେଳେ ଲୋଭ ବଢ଼ିଯାଏ । ରଜୋଗୁଣର ଏହା ପ୍ରଥମ ଓ ମୁଖ୍ୟ ଲକ୍ଷଣ । ଏହା ରଜୋଗୁଣକୁ ଚିହ୍ନିବାର ସହଜ ଉପାୟ । ଭଗବତ୍ ଭଜନରେ ଲୋଭ ବୃଦ୍ଧିହେବା ହେଉଛି ନିର୍ଗୁଣ ଅବସ୍ଥା । କିନ୍ତୁ ସଂସାରର ଅନ୍ୟ ଯେତେ କାର୍ଯ୍ୟ ଅଛି ସେଥିପ୍ରତି ଲୋଭବଢ଼ିବା ଅର୍ଥ ରଜୋଗୁଣ ବୃଦ୍ଧିହେଉଛି ବୋଲି ଜଣାଯାଏ ।

ଜଣେ ସାତ୍ତ୍ୱିକପ୍ରକୃତିର ସାଧକ ଥିଲେ । ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିବାକୁ ଜଣେ ପ୍ରାର୍ଥୀ ହେଲେ । ସାଧକ ତାଙ୍କୁ ଦୀକ୍ଷାଦେଇ ଶିଷ୍ୟରୂପେ ଗ୍ରହଣକଲେ । ଶିଷ୍ୟ ଜଣକ ଧନ ଓ ମନଦେଇ ସେବା ଆରମ୍ଭ କରିଦେଲା । ଧନ ଆସିବାରୁ ଆଶ୍ରମ ତିଆରି ଆରମ୍ଭ ହୋଇଗଲା । ତୃଷ୍ଣାର ତ ଅନ୍ତ ନାହିଁ । ଇଟା ପଥର କାମ ଆରମ୍ଭ ନ କଲା ପର୍ଯ୍ୟନ୍ତ ସନ୍ତୋଷ ଥାଏ । ଥରେ ଆରମ୍ଭ ହୋଇଗଲେ ଅସନ୍ତୋଷ ବଢ଼ିବା ଆରମ୍ଭ ହୋଇଯାଏ । ଧନର ଅଧିକ ଆବଶ୍ୟକତା ହୁଏ । ଅନ୍ୟକୁ କାନରେ ମନ୍ତ୍ରଦେବା ଆରମ୍ଭ ହୋଇଯାଏ । କ୍ରମେ ପରମାର୍ଥ ଲକ୍ଷ୍ୟଚ୍ୟୁତ ହୋଇଯାଏ । ଧନ ଲୋଭରେ ପାତ୍ର ଅପାତ୍ର ସମସ୍ତଙ୍କ କାନରେ ମନ୍ତ୍ରପ୍ରଦାନ କରିବାରେ ଲାଗନ୍ତି । ବସ୍ତୁତଃ ସାଧକ ତାଙ୍କ ଲକ୍ଷ୍ୟରୁ ଚ୍ୟୁତହେଲେ । ରଜୋଗୁଣ ଆସି ତାଙ୍କ ହୃଦୟରେ ବସା ବାନ୍ଧି ଦେଇଥାଏ ।

---

★ ଶ୍ରୀଭଗବାନ ଉଦ୍ଧବଙ୍କୁ କହୁଛନ୍ତି, ''ହେ ଉଦ୍ଧବ ! ପ୍ରମତ୍ତ ପୁରୁଷର ହୃଦୟରେ ଅହଂତାର ଯେଉଁ ଅନ୍ୟଥା ବୁଦ୍ଧି ଉତ୍ପନ୍ନ ହୋଇଯାଏ, ଏହି ହେତୁ ସତ୍ତ୍ୱପ୍ରଧାନ ମନ ଘୋର ରଜୋଗୁଣ ଆଡ଼କୁ ପ୍ରବୃତ୍ତ ହୋଇଯାଏ । (ଏଥିରେ ଅବଶ ହୋଇ ନ କରିବା କର୍ମ କରିପକାଏ) ।

କର୍ମରେ ପ୍ରବୃତ୍ତି ବିନା ରଜୋଗୁଣର ପ୍ରବଳତା ହୁଏନାହିଁ। ଏହା ଲୋଭର ପରିଚୟ। ଲୋଭୀ କେତେବେଳେ ବି ପରମାର୍ଥ ଦୃଷ୍ଟିରେ କିଛି କରେନାହିଁ (କୌଣସି କର୍ମ କରେନାହିଁ)। ତା'ର ସମସ୍ତ କାମ ସ୍ୱାର୍ଥବୁଦ୍ଧିରେ ଆରମ୍ଭହୁଏ। କାହାକୁ ଯଦି ଫଳଟିଏ ବି ଦିଏ ତେବେ ସେ ଭାବେ, 'ଏଥିରେ ମୋର କ'ଣ ଲାଭହେବ, ମୋର କେଉଁକାର୍ଯ୍ୟ ସିଦ୍ଧ ହେବ।' ସ୍ୱାର୍ଥ ଛାଡ଼ି ସେ କଦାପି କାହା ସହିତ ପଦୁଟିଏ କଥା ବି ହୁଏନାହିଁ। ରଜୋଗୁଣ ବୃଦ୍ଧିପାଇଲେ ବିଷୟଭୋଗ ନିମନ୍ତେ ଲାଳସାର ତରଙ୍ଗଉଠିବାରେ ଲାଗେ। ଚିତ୍ତ ଚଞ୍ଚଳ ହୋଇଯାଏ। ଧନ କିପରି କେଉଁଠୁ ଆସିବ ତା'ର ଉପାୟ ଖୋଜିବୁଲେ। 'ଲୋକମାନେ ମୋ ଆଡ଼କୁ କିପରି ଅଧିକରୁ ଅଧିକ ଆକର୍ଷିତ ହୁଅନ୍ତୁ, ମୋର ବିଳାସ ବ୍ୟସନ କିପରି ବଢ଼ୁ। ଅଧିକରୁ ଅଧିକ ଲୋକ ମୋତେ ସମ୍ମାନ କରନ୍ତୁ।' ଏପରି ସବୁବେଳେ ମନେକରେ। ପାପ କରିବାଦ୍ୱାରା ଯଦି ବି ସ୍ୱାର୍ଥ ହାସଲହେବାର ସମ୍ଭାବନା ଉଜ୍ଜ୍ୱଳଥାଏ ତେବେ ସେ ଲୁଚିଛପି ସେହି ପାପ ବି କରେ। ଗୁପ୍ତରେ ପାପ କରୁଥିବା ହେତୁ ତା'ର ଅନ୍ତରାତ୍ମା ଭର୍ତ୍ସନାକରେ, ତିରସ୍କାର କରେ। ଆଉ ଏଇଥି ଯୋଗୁଁ ସେ ସବୁବେଳେ ଅଶାନ୍ତ ବି ରହେ। ସେ ସମସ୍ତଙ୍କୁ ସନ୍ଦେହ ଦୃଷ୍ଟିରେ ଦେଖେ, କାଳେ କେହି କରିଥିବା ପାପ ଦେଖିଦେଇଥିବ, ଜାଣିଦେଇଥିବ, ଏପରି ଆଶଙ୍କିତ ଦୃଷ୍ଟିରେ ସମସ୍ତଙ୍କୁ ଦେଖେ। (ମନ୍ତ୍ର ଦୀକ୍ଷା ଦେଇଥିବାରୁ ଦୀକ୍ଷିତଙ୍କୁ ସନ୍ଦେହରେ ଅପମାନ ଦିଏ, ଆକ୍ରମଣ କରେ ଏବଂ ଏପରି ଅନ୍ୟାୟ କରୁଥିବାରୁ ବି ଚିନ୍ତିତ ରହେ।)

ସତ୍ତ୍ୱଗୁଣର ବୃଦ୍ଧିରେ ଅନ୍ତଃକରଣରେ ତଥା ଇନ୍ଦ୍ରିୟମାନଙ୍କରେ ଜ୍ୟୋତି-ସଦୃଶ ତେଜ ଉତ୍ପନ୍ନ ହେବାରେ ଲାଗେ, ଜ୍ଞାନର ସ୍ରୋତ ମାଡ଼ିଆସେ ଏବଂ ବିଷୟ ତୁଚ୍ଛ ଅବବୋଧ ହୁଏ। ସାସାଂରିକ ପ୍ରବୃତ୍ତି ହୋଇଥାଏ ରଜୋଗୁଣ ଯୋଗୁଁ। ସେତେବେଳେ ଯାଇ ବିଷୟ ଭୋଗ ଭଲଲାଗେ। ପତଙ୍ଗ ଭଳି ଜାଣି ଜାଣି ଅଗ୍ନିକୁ ଆଲିଙ୍ଗନ କରିବାକୁ ଇଚ୍ଛା ହୁଏ, ପରିଣାମରେ ଦୁଃଖ ମିଳେ।

ମହର୍ଷି ସୂତ କହୁଛନ୍ତି, ହେ ମୁନିଗଣ। ଉଦ୍ଧବଙ୍କୁ ବୁଝାଇବାକୁ ଯାଇ ଭଗବାନ କହୁଛନ୍ତି, ''ହେ ଉଦ୍ଧବ। ଶୁଣ। ମନକୁ ଯେତେବେଳେ ସତ୍ତ୍ୱଗୁଣ ଆସେ, ସେତେବେଳେ ପୁରୁଷ ଜ୍ଞାନାଭିମୁଖୀ ହୁଏ। ସକଳ ଭୂତରେ ସେଇ ଏକ ଆତ୍ମାକୁ ଅନୁଭବ କରେ। ଆମେ ମନରେ ଯାହାକୁ ଭଲପାଇବା, ସେ ମଧ୍ୟ ଆମକୁ ମନରେ ଭଲପାଇବ; କାରଣ ମନ ହେଉଛି ଏକ। ସତ୍ତ୍ୱଗୁଣ ବଢ଼ିବାଦ୍ୱାରା ସମସ୍ତେ ତାକୁ ଭଲପାଇବାରେ ଲାଗନ୍ତି। ପ୍ରେମ କରନ୍ତି। ସମସ୍ତେ ତାକୁ ଶ୍ରଦ୍ଧା କରନ୍ତି ଓ ଶ୍ରଦ୍ଧା ଭାବ ରଖନ୍ତି। ଏହି ସମୟରେ ସାଧକ ନିଜକୁ ସମ୍ଭାଳି ନେଲେ, ବଡ଼-ସାନ ସମସ୍ତଙ୍କଠାରେ ସେଇ ଆତ୍ମାକୁ ଦେଖୁଥିଲେ, ସେ (ସାଧକ) ତ୍ରିଗୁଣାତୀତ ଅବସ୍ଥା ଆଡ଼କୁ ଅଗ୍ରସର ହେଉଛି ବୋଲି ବୁଝାଯାଏ।

''କିନ୍ତୁ ହେ ଉଦ୍ଧବ। 'ମୁଁ ଈଶ୍ୱର, ମୁଁ ସିଦ୍ଧ, ମୁଁ ସମର୍ଥ, ମୁଁ ସମସ୍ତଙ୍କଠାରୁ ଅଧିକ ଜ୍ଞାନୀ', ଯଦି ଏପରି ଅଭିମାନ ତା'ର ହୋଇଯାଏ, ତେବେ ରଜୋଗୁଣ ରୂପୀ ଚୋର ତା ଭିତରେ ପ୍ରବେଶ କରିଯାଇଛି ବୋଲି ଜାଣିବ। ରଜୋଗୁଣ ରୂପୀ ଚୋର ତ୍ରିଗୁଣାତୀତ ଅବସ୍ଥା ଆଡ଼କୁ ଅଗ୍ରସର ହେଉଥିବା ସାଧକ (ଉଦାର ପୁରୁଷ) ଭିତରେ ପ୍ରବେଶ କରିବାକୁ ସବୁବେଳେ ଓର ଉଣ୍ଡୁଥାଏ। ଆଉ, ଥରେ ଯଦି ପ୍ରବେଶ

କରିଯାଏ ତେବେ ସହସା ତାହା ସତ୍ତ୍ୱଗୁଣକୁ କବଳିତ କରିପକାଏ। ସତ୍ତ୍ୱଗୁଣ ଦବିଯାଏ ଓ ରଜୋଗୁଣର ପ୍ରାବଲ୍ୟ ପ୍ରକାଶପାଇବାରେ ଲାଗେ। ମନ ସବୁବେଳେ ବିଷୟଆଡ଼କୁ ଆକର୍ଷିତ ହେବାକୁ ଚାହେଁ। ମନ ବିଷୟ ସହିତ ଲଟପଟହୋଇ ରହିବାକୁ ଭଲପାଏ। ଚିତ୍ତ ରଜୋଗୁଣର ରଙ୍ଗରେ ରଙ୍ଗେଇ ହୋଇଯିବାକ୍ଷଣି ନାନା ସଂକଳ୍ପ-ବିକଳ୍ପ କରିବାରେ ଲାଗେ; ନାନା ଉପାୟ୍ ନିର୍ଣ୍ଣୟ କରିବାରେ ଲାଗେ। ପଦ-ପ୍ରତିଷ୍ଠାର ବୃଦ୍ଧି ନିମନ୍ତେ ନାନା ବିଧାନ ଆବିଷ୍କାର କରିପକାଏ। ସେତେବେଳେ ପରମାର୍ଥରେ ସର୍ବତ୍ର ସ୍ୱାର୍ଥର ସାମ୍ରାଜ୍ୟ ହେବାରେ ଲାଗେ। ସେତେବେଳେ ଅନବରତ ଗୁଣର ଚିନ୍ତନ କରୁଥିବାରୁ ମନକୁ ଚାରିଆଡ଼େ ଦୌଡ଼ାଇବାକୁ ହୋଇଥାଏ। କାହାଦ୍ୱାରା ମୋର ଅଭିଳାଷ ପୂରଣ ହେବ, କାହାଦ୍ୱାରା ମୋର ଯଥାର୍ଥ ସିଦ୍ଧ ହେବ, ମୋର କାମନାପୂର୍ତ୍ତି ହେବ— ଏହିଭଳି କଥା ଚିନ୍ତାକରିବାରେ ଲାଗେ। ଫଳତଃ, ଆଶା କରାଯାଉ ନ ଥିବା ମଣିଷଙ୍କଠାରୁ ସେହି ମନ୍ଦମତୀ ନାନାକଥା ଆଶାକରେ, ଅଯଥା ବାଧ କରେ। ଏବଂ କାମନା କରିଥିବା ହେତୁ ପଦ-ପଦରେ ଦୁଃସହ ଅପମାନ ମଧ ସହ୍ୟକରେ (ନିର୍ଲଜ୍ଜଙ୍କ ଭଳି)। ରଜୋଗୁଣର ପ୍ରବାହ ଏଡ଼େ ପ୍ରବଳ ଯେ, ଯିଏ ଏଥିରେ ଥରେ ପଡ଼ିଯାଏ ସେ ତ୍ରିନି ପାଞ୍ଚିରୁ ଯାଏ, ଆଉ ଫେରିଆସିବା ଆଶା ଅତ୍ୟନ୍ତ କ୍ଷୀଣ ହୋଇଯାଏ। ଗୁଣ ପ୍ରବାହରେ (ଗୁଣର ସ୍ରୋତରେ ପଡ଼ି) ପତିତହୋଇ ସେ ତା'ର ଇନ୍ଦ୍ରିୟସଂଯମ କରିବାକୁ ସଂପୂର୍ଣ୍ଣ ଅସମର୍ଥ ହୋଇଯାଏ, ଅଜିତେନ୍ଦ୍ରିୟ ହୋଇଯାଏ, କର୍ତ୍ତବ୍ୟା-କର୍ତ୍ତବ୍ୟର ଜ୍ଞାନ-ବିବେକ ହରାଇ ପକାଏ। କୁତ୍ସିତ କାମନାରାଜି ହେତୁ କୃପଣ ହୋଇ ଅତି କଷ୍ଟପ୍ରଦ କର୍ମ କରିବାରେ ଲାଗେ। ଏ ସମସ୍ତର ପରିଣାମ ତ ନିଶ୍ଚିତ ଦୁଃଖପ୍ରଦ। (୧)

"ହେ ଉଦ୍ଧବ! ମୁଁ ସ୍ୱୟଂ ଅବତାର ଗ୍ରହଣକରି ଯଦି ପ୍ରବୃତ୍ତିକଲି ତେବେ ସେତେବେଳେ ଦୁଃଖ ଅଭିନୟ ହିଁ କରି ଦେଖାଇଛି। ରାମାବତାରରେ ଜାନକୀଙ୍କ ପାଇଁ କେତେ କ୍ଲେଶ ସହି ନାହିଁ! ମୋତେ ପୁଣି କ୍ଲେଶ? କ୍ଲେଶ ତ ମୋତେ ସ୍ପର୍ଶ ଇ କରେ ନାହିଁ; କିନ୍ତୁ ସେପରି ଚରିତକୁ ଦେଖାଇ ମୁଁ ପ୍ରମାଣ, ଦୃଷ୍ଟାନ୍ତ ଦେବାକୁ ଇଚ୍ଛା କରିଥିଲି ଯେ ପ୍ରବୃତ୍ତି ପଛରେ ପଡ଼ି ଈଶ୍ୱରଙ୍କୁ ବି କ୍ଲେଶ ଭୋଗକରିବାକୁ ହୋଇଥାଏ। ଆଉ ସାଧାରଣ, ସ୍ୱଳ୍ପ ବୁଦ୍ଧିଥିବା ମଣିଷଙ୍କ କଥା ନ କହିଲେ ଭଲ।

---

(୧) ଏ ଜୀବ ବହି ଅହଙ୍କାର । ବୋଲଇ ଏ ଦେହ ମୋହର ॥
ରଜୋଗୁଣରୁ ଏ ପ୍ରକାଶ । ହୁଅନ୍ତେ ବୁଦ୍ଧି କରେ ଭ୍ରଂଶ ॥
ସଂକଳ୍ପ-ବିକଳ୍ପ ଏ ବେନି । ନାନା ବିକାର ମନେ ଘେନି ॥
ବେନି ସଂଯୋଗେ ମୋହ ବଢ଼େ । ନାନା ପ୍ରକାରେ କାମ ବଢ଼େ ॥
କୁମତି ଜନଙ୍କର ମନେ । ପ୍ରକାଶେ ନାନା କୁସାଧନେ ॥
ନିରତେ କାମ ବଶ ହୋଇ । କର୍ମ କରନ୍ତି ମୋହ ବହି ॥
ଏମନ୍ତେ ବୁଦ୍ଧି ହୋଏ ଭ୍ରମ । ନ ମଣେ ହାନି ଲାଭ କର୍ମ ॥
କେବଳ ଦୁଃଖ ମାତ୍ର ସାର । ଏ କଥା ନ ବୁଝେ ପାମର ॥
[ଭାଗବତ: ଜଗନ୍ନାଥ ଦାସ:୧୧ ସ୍କ ୧୪ଅ]

ରଜୋଗୁଣ ପ୍ରତି ଯିଏ ଆକୃଷ୍ଟ ହେବ ସେ ସାଧୁ ହେଉ ଅଥବା ମହାତ୍ମା, ସିଦ୍ଧ ହେଉ ଅଥବା ସମର୍ଥ, ଈଶ୍ୱର ବି ହୁଅନ୍ତୁ ନା କାହିଁକି, କ୍ଳେଶ ଅବଶ୍ୟ ଭୋଗକରିବାକୁ ହେବ। ଏହା ଅନିବାର୍ଯ୍ୟ କଥା। ରଜୋଗୁଣ ଆଉ ତମୋଗୁଣ ଏହା ଜୀବଙ୍କୁ ଟାଣିଆଣି ସଂସାରରେ ମୁହଁମାଡ଼ି ପକାଇ ଦିଅନ୍ତି।''

ଉଦ୍ଧବ କହିଲେ, ''ତାହାହେଲେ ହେ ପ୍ରଭୁ! ଏଥିରୁ କେହି ରକ୍ଷା ପାଇପାରିବେ ନାହିଁ। କାରଣ ଏହି ଗୁଣପ୍ରବାହ ତ ଅନବରତ ଚାଲିଥାଏ। ଏପରି କେହି ନାହିଁ ଯିଏ ତିନିଗୁଣରୁ ବର୍ତ୍ତି ଯାଇଛନ୍ତି। ସେ ଯେତେ ବଡ଼ ବିବେକୀ ହୋଇଥାଉ, ରଜୋଗୁଣ ଆଉ ତମୋଗୁଣ ତାକୁ ତ ଟାଣି ଆଣି ତଳେ କଚାଡ଼ି ପକାଇବେ।''

ଭଗବାନ କହିଲେ, ''ହଁ ଉଦ୍ଧବ! ଏହା ସତ୍ୟ ଯେ ତିନିଗୁଣର ପ୍ରଭାବ ସମସ୍ତଙ୍କ ଉପରେ ପଡ଼େ। ବେଳେବେଳେ ପରମ ବିବେକୀ ପୁରୁଷ ବି ରଜ ଆଉ ତମ ଗୁଣଦ୍ୱାରା ବିକ୍ଷିପ୍ତଚିତ୍ତ ହୋଇଯାଆନ୍ତି। କିନ୍ତୁ ସେମାନଙ୍କର ବିବେକ ଚିରକାଳ ପାଇଁ ଅବରୁଦ୍ଧ ହୋଇଯାଏ ନାହିଁ, ଢାଙ୍କି ହୋଇ ରହେନାହିଁ। ବିଷୟ ସମ୍ମୁଖକୁ ଆସିଲେ କ୍ଷଣିକ ପାଇଁ ସେମାନଙ୍କର ବୁଦ୍ଧି ବିଚଳିତ ହୋଇଯାଏ ସତ, କିନ୍ତୁ ପରକ୍ଷଣରେ ନିଜର ବିବେକଦ୍ୱାରା ଚିତ୍ତକୁ ସମାହିତ କରିନିଅନ୍ତି; ଅଭିନିବିଷ୍ଟ କରିଦିଅନ୍ତି। ସେମାନେ ଏଥିରେ ନିତାନ୍ତ ଆସକ୍ତ ହୁଅନ୍ତି ନାହିଁ। ପରିଣାମ କ'ଣ ହେବ ସେମାନେ ସେଥିପାଇଁ ସହସା ସଚେତନ ହୋଇ ତହିଁରୁ ଉପରତ ହୋଇଯାଆନ୍ତି; ନିବୃତ୍ତ ହୋଇଯାଆନ୍ତି।''

ଏପରି କଥା ଶୁଣି ଉଦ୍ଧବ କହିଲେ, ''ପ୍ରଭୁ! ଏଭଳି କଥାରେ ଚିତ୍ତ ଯଦି କେତେବେଳେ ବିଚଳିତ ହୋଇଯାଏ, ମନ ବିକ୍ଷିପ୍ତ ହୋଇଯାଏ, ତେବେ କ'ଣ କରିବା ଉଚିତ ହେବ?''

ଭଗବାନ କହିଲେ, ''ଯେଉଁ ବିଷୟପ୍ରତି ମନ ଆକୃଷ୍ଟ, ଆସକ୍ତ ହୋଇଯାଏ, ସର୍ବପ୍ରଥମେ ସେଥିପ୍ରତି ଦୋଷଦୃଷ୍ଟି ସୃଷ୍ଟିକରିବା ଆବଶ୍ୟକ। ଆମର କି କି ହାନି, କ୍ଷତି ହେବ ସେଥିପ୍ରତି ଧାରଣା ଓ ବିଶ୍ୱାସ ସୃଷ୍ଟିକରିବାକୁ ହେବ। ଏହାପରେ ଅତି ସାବଧାନତାର ସହିତ ସେହି ବିଷୟର ଚିନ୍ତା ମନରୁ ଦୂର କରିବାକୁ ହେବ। ତ୍ୟାଗ କରିବାକୁ ହେବ। ମନ ସେହି ବିଷୟକୁ ଯେପରି ଆଦୌ ସ୍ପର୍ଶ କରେନାହିଁ ସେଥିପ୍ରତି ସାବଧାନତା ଅବଲମ୍ବନ କରାଇବାକୁ ହେବ। ତୃତୀୟତଃ, ଉପଯୁକ୍ତ ସମୟରେ ଆସନ କରି ପ୍ରାଣାୟାମ ଧୀରେଧୀରେ ଅଭ୍ୟାସ କରିବାକୁ ହେବ। ଏହାଦ୍ୱାରା ପ୍ରାଣଶକ୍ତିର ସଂଯମ ହୋଇଥାଏ। ଆସନ ଉପରେ ବିଜୟଲାଭ କରି ଚିତ୍ତକୁ ସେହି ବିଷୟରୁ ପୂର୍ଣ୍ଣରୂପେ ଦୂରେଇନେଇ ମୋ'ଠାରେ ନ୍ୟସ୍ତ କରିବ; ଏବଂ ଅନବରତ ଦୃଢ଼ତାର ସହିତ ଯୋଗ ଅଭ୍ୟାସ କରିବ। **ଚିତ୍ତର ସ୍ୱଭାବ ହେଉଛି ବିଷୟ ଆଡ଼କୁ ଯିବା। ଆଉ ବିଷୟର ସ୍ୱଭାବ ହେଉଛି ଚିତ୍ତକୁ ଜାବୋଡ଼ି ଧରିବା। ଯୋଗାଭ୍ୟାସରେ ଚିତ୍ତକୁ ଅତି ଧୀରେ ଧୀରେ ଘୁଞ୍ଚାଇ ନେବାକୁ, ଦୂରେଇ ନେବାକୁ ହୋଇଥାଏ। ଏହାର ନାମ ହେଉଛି ଯୋଗ।** ଏହାର ଦୀକ୍ଷା ମୋ ଠାରୁ ସନକ, ସନନ୍ଦନ,

ସନାତନ ଓ ସନତ୍‌କୁମାର ଗ୍ରହଣ କରିଥିଲେ। ସେଇ ଚାରିଭାଇଙ୍କୁ ମୁଁ ଏହି ଯୋଗ ଦୀକ୍ଷା ଶିକ୍ଷାପ୍ରଦାନ କରିଥିଲି।''(୨)

ଉଦ୍ଧବ କହିଲେ, ''ଭଗବନ୍! ମୁଁ ଆପଣଙ୍କ ସେବାରେ ତ ଅନବରତ ରହିଛି, କାହିଁ ସନକାଦିଙ୍କୁ ଆପଣ ଦୀକ୍ଷା ଦେଇଥିବା ମୁଁ ଦେଖି ନାହିଁ ତ! ହଁ, ଆପଣଙ୍କ ଆଜ୍ଞାନୁସାରେ ମୁଁ ଯେତେବେଳେ ବ୍ରଜକୁ ଯାଇଥିଲି, ସେତେବେଳେ ସମ୍ଭବତଃ ଆପଣ ସେଇ ଚାରି ଭାଇଙ୍କୁ ଦୀକ୍ଷାପ୍ରଦାନ କରିଥିବେ।''

ଭଗବାନ କହିଲେ, ''ଆରେ ଭାଇ, ଏଇ କୃଷ୍ଣାବତାରରେ ମୁଁ ସେମାନଙ୍କୁ ଦୀକ୍ଷା ଦେଇ ନାହିଁ। ବ୍ରହ୍ମଲୋକରେ ଆଉ ଏକ ଅବତାରରେ ସେମାନଙ୍କୁ ଶିକ୍ଷା ଦେଇଥିଲି।''

ଉଦ୍ଧବ ପଚାରିଲେ, ''ତେବେ ହେ ପ୍ରଭୁ! ଆପଣ କେଉଁ ରୂପରେ ସନକାଦିଙ୍କୁ ଯୋଗଶିକ୍ଷା ପ୍ରଦାନ କରିଥିଲେ। କେବେ ଓ କେଉଁଠାରେ ଦେଇଥିଲେ? ଏହା ଶୁଣିବାକୁ ମୋର ପ୍ରବଳ ଇଚ୍ଛା ହେଉଛି। ମୋତେ ଯଦି ଆପଣ ଏହାର ଅଧିକାରୀ ମନେକରୁଛନ୍ତି ତେବେ ମୋ ପ୍ରଶ୍ନର ଉତ୍ତର ଦିଅନ୍ତୁ ଏବଂ ସେହି ଯୋଗଶିକ୍ଷା କଥା ମୋତେ କହିବା ହୁଅନ୍ତୁ।'' (୩)

ଭଗବାନ କହିଲେ, ''ଉଦ୍ଧବ! ମୁଁ ସନକାଦିଙ୍କୁ ହଂସ ରୂପରେ ବ୍ରହ୍ମଲୋକରେ ଅନେକ କାଳ ପୂର୍ବେ ଯୋଗଶିକ୍ଷା ଦେଇଥିଲି। ସେହି ପରମ ତ୍ୟାଗୀ, ବିରାଗୀ, ବାଳ-ବ୍ରହ୍ମଚାରୀ ଭାଇମାନଙ୍କୁ ପ୍ରଶ୍ନର ଉତ୍ତର ଦେବାପାଇଁ ମୋତେ ପରମ ଶୁଭ୍ର ହଂସାବତାର ନେବାକୁ ପଡ଼ିଥିଲା। ସେହି ଅବତାରରେ ମୁଁ କୁମାରମାନଙ୍କୁ ଉପଦେଶ ଦେଇଥିଲି। ସେମାନେ ସେମାନଙ୍କ ପିତା ବ୍ରହ୍ମାଙ୍କୁ ପ୍ରଶ୍ନ ପଚାରିଥିଲେ, କିନ୍ତୁ ବ୍ରହ୍ମା ପୁଅମାନଙ୍କ ପ୍ରଶ୍ନର ଉତ୍ତର ଦେଇପାରି ନ ଥିଲେ। ସେତେବେଳେ ମୋତେ ହିଁ ଅବତାର ଗ୍ରହଣ କରିବାକୁ ପଡ଼ିଲା।''

---

(୨) ସାତ୍ତ୍ୱିକ ଗୁଣ ମନେ ଧରି । ସାଧିବ ଅଙ୍ଗ ଅଙ୍ଗ କରି ।।
ଅଭ୍ୟାସେ ନବଦ୍ୱାର ରୁନ୍ଧି । ମନ ପବନ ହୃଦେ ଛନ୍ଦି ।।
ଆହାର ଜିଣିବ ଆସନେ । ମନ ନିବେଶି ମୋର ଧ୍ୟାନେ ।।
ସର୍ବ ବିଷୟ ରସୁ ମନ । ଅଭ୍ୟାସେ କରିବ ବନ୍ଧନ ।।
ପୂର୍ବେ ଏ ଯୋଗ ଅଭ୍ୟାସନେ । ମୁହିଁ କହିଲି ଶିଷ୍ୟଗଣେ ।।
ସନକ ଆଦି ଚାରିଜଣ । ବିଶେଷେ ବ୍ରହ୍ମାଙ୍କ ନନ୍ଦନ ।।
[ଭାଗବତ: ଜଗନ୍ନାଥ ଦାସ.୧୧ ସ୍କ. ୧୪ଅ]

(୩) ଭୋ, ନାଥ ପ୍ରଭୁ ଭଗବାନ । ଏଣେ ସଂଶୟ ମୋର ମନ ।।
କାହିଁ ତୁ ବସି କେଉଁଠାବେ । ବ୍ରହ୍ମାର ପୁତ୍ରଙ୍କ ପ୍ରସ୍ତାବେ ।।
କି ରୂପେ ଧରି ତୁ ଶରୀର । ଯୋଗ କହିଲୁ ଦାମୋଦର ।।
ତୋହର ଦୟା ଯେବେ ମୋତେ । ସେ ଯୋଗ କହ ମୋ ଅଗ୍ରତେ ।।
[ଭାଗବତ: ଜଗନ୍ନାଥ ଦାସ.୧୧ସ୍କ ୧୪ ଅ]

ଉଦ୍ଧବ କହିଲେ, ''ପ୍ରଭୁ! ବ୍ରହ୍ମାଙ୍କୁ ତ ବେଦଗର୍ଭ କୁହାଯାଏ। ସେ ତ ହେଉଛନ୍ତି ସକଳ ଜ୍ଞାନର ଭଣ୍ଡାର। ତାଙ୍କର ଚାରିମୁଖରୁ ଚାରିବେଦର ପ୍ରାଦୁର୍ଭାବ ହୋଇଛି। ଏହିପରି ବେଦମୟ ବ୍ରହ୍ମା ବି ଯେଉଁ ପ୍ରଶ୍ନର ଉତ୍ତର ଦେଇପାରି ନଥିଲେ, ସେ ପ୍ରଶ୍ନ କ'ଣ? ଭଗବନ୍! ଆଜିକାଲିର ଉପଦେଶଦାତାମାନଙ୍କୁ ଯେ କୌଣସି ପ୍ରଶ୍ନ ପଚରାଗଲେ, ସେମାନେ ପ୍ରଶ୍ନକୁ ବୁଝନ୍ତୁ ବା ନ ବୁଝନ୍ତୁ କିଛି ନା କିଛି ତ ଉତ୍ତର ଦେଇଦିଅନ୍ତି, ଯାହା ଫଳରେ ସେମାନେ ସର୍ବଜ୍ଞ ଓ ଜ୍ଞାନୀ ବୋଲି କାହାର ସନ୍ଦେହ ରହେ ନାହିଁ। ନିଜର ପୁଅମାନଙ୍କ ପ୍ରଶ୍ନର ଉତ୍ତର ନ ଦେଇପାରିଥିବାରୁ ବ୍ରହ୍ମାଙ୍କୁ ସେତେବେଳେ ହସ୍ୟାସ୍ପଦିତ ହେବାକୁ ପଡ଼ିଥିବ ତ! ଆପଣ କୃପାକରି ମୋତେ ଏହି କଥା ନିଶ୍ଚୟ ଶୁଣାନ୍ତୁ।''

ଭଗବାନ କହିଲେ, ''ହେ ଉଦ୍ଧବ! ଯେଉଁମାନେ ଦାମ୍ଭିକ, ସେମାନେ ସତ୍ୟ ଆଉ ମିଥ୍ୟାର ବିଚାର କରନ୍ତି ନାହିଁ। ନିଜନିଜର ପଦପ୍ରତିଷ୍ଠାକୁ ରକ୍ଷାକରିବାକୁ ଯାଇ ସେମାନେ ଅସତ୍ୟ ହିଁ କହିପକାନ୍ତି। ବ୍ରହ୍ମା କିନ୍ତୁ ଏପରି ନୁହଁନ୍ତି। ସନକାଦିଙ୍କ ପ୍ରଶ୍ନ ଥିଲା ତ୍ରିଗୁଣାତୀତ। ବ୍ରହ୍ମା ହେଉଛନ୍ତି ରଜୋଗୁଣ ପ୍ରଧାନ। ତେଣୁ ସେ ଯେତେବେଳେ ଉତ୍ତର ଦେଇପାରିଲେ ନାହିଁ ସେତେବେଳେ ମୁଁ ଶୁକ୍ଳରୂପର ହଂସ ହୋଇ ପ୍ରକଟ ହେଲି। ମୋର ସେହି ଉପଦେଶ ହଂସ-ଗୀତା ନାମରେ ପ୍ରଖ୍ୟାତ। ଏବେ ମୁଁ ତୁମକୁ ହଂସଗୀତା ଶୁଣାଉଛି, ଶୁଣ।''

ମହର୍ଷି ସୂତ କହୁଛନ୍ତି, ''ହେ ମୁନିଗଣ! ମୁଁ ଆପଣମାନଙ୍କୁ ସେହି ହଂସଗୀତା ଶୁଣାଉଛି। ଆପଣମାନେ ଏହି ଗୂଢ଼ ଜ୍ଞାନମୟ ଉପାଖ୍ୟାନକୁ ପ୍ରେମପୂର୍ବକ ଶ୍ରବଣ କରନ୍ତୁ।''

### ଛପ୍‌ପୟ

ସବ ବିଷୟନିତେଂ ଖୈଚି ଚିତ ମମ ଚରନନି ଲାବୈ।
କରୈ ଯୋଗ ଅଭ୍ୟାସ ନିରନ୍ତର ଧ୍ୟାନ ଲଗାବୈ।।
ସନକାଦିକ କୂଁ ହଂସ ରୂପ ତେଂ ଶିକ୍ଷା ଦୀହ୍ନୀ।
ବେ ମେରେ ପ୍ରିୟ ଶିଷ୍ୟ ଯୋଗ ମହଁ ନିଷ୍ଠା କୀହ୍ନୀ।।
ଉଦ୍ଧବ ପୂଛେଂ ଜଗଦ୍‌ଗୁରୁ! ହଂସ ରୂପ କୈସେ ଧରୟୋ।
ସନକାଦିକ କୂଁ ଯୋଗମୟ, ଜ୍ଞାନ ଦାନ ଶୁଭ କବ କରୟୋ।।



# ହଂସଗୀତାର ଉପୋଦ୍‌ଘାତ

ସ ମାମଚିନ୍ତୟଦ୍ଦେବଃ ପ୍ରଶ୍ନପାରତିତୀର୍ଷୟା ।
ତସ୍ୟାହଂ ହଂସରୂପେଣ ସକାଶମଗମଂ ତଦା ।। 

[ଶ୍ରୀ ଭା. ୧୧ସ୍କ. ୧୩ଅ. ୧୯ ଶ୍ଳୋକ]

### ଛପ୍‌ପୟ

ପ୍ରଭୁ ବୋଲେ-ଇକବାର କୁମର ସୁତ ଅଜର୍ଜ୍ଜିନ ଆୟେ ।
ଜିଜ୍ଞାସା ତିନି କରୀ ବନ୍ଦି ପଦ ବଚନ ସୁନାୟେ ।।
ବିଷୟନି ମହଁ ଚିତ ଜାଇ ବିଷୟ ଚିତମହିଁ ଘୁସି ଜାବେଂ ।
କୈସେ କରି ତିନି ପୃଥକ୍ ମୁକ୍ତିପଦ ପ୍ରାନୀ ପାବେଂ ।।
ନିରନୟ ନହିଁ କଛୁ କରି ସକୀ, କର୍ମ ମୟୀ ଅଜ ବୁଦ୍ଧି ଜବ ।
ପ୍ରଶ୍ନ ପୟୋନିଧି ପାର ହିତ, କରୟୋ ଧ୍ୟାନ ମମ ଚରନ ତବ ।।

ମଣିଷ ଯେତେବେଳେ ସବୁଆଡୁ ଥକିଯାଏ, ତା'ର ବିଦ୍ୟାବୁଦ୍ଧି ଆଉ କିଛି କାମଦିଏ ନାହିଁ, ସେତେବେଳେ ସେ ଭଗବାନଙ୍କ ଶରଣ ଲୋଡ଼େ, ଭଗବାନଙ୍କୁ ସ୍ମରଣ କରେ । ସ୍ମରଣ କରିବା ମାତ୍ରେ ଭଗବାନ ସମସ୍ତ ବିପତ୍ତିକୁ ଦୂର କରିଦିଅନ୍ତି । ସେ ଏପରି ବୁଦ୍ଧିଯୋଗ ପ୍ରଦାନ କରନ୍ତି ଯେ ସେଥିରେ ସବୁପ୍ରକାର ସଂଶୟ ନାଶ ହୋଇଯାଏ । ଭଗବାନ ତ ହେଉଛନ୍ତି ଭକ୍ତ ବତ୍ସଳ । ସେ ତାଙ୍କର ଅନନ୍ୟ ଭକ୍ତଙ୍କଉପରେ କୃପା କରି, କେବଳ ତାଙ୍କ ପାଇଁ ହିଁ ନାନା ଅବତାର ଧାରଣ କରନ୍ତି । ଭଗବାନଙ୍କ ପାଇଁ ବଡ଼ କିଛି ନାହିଁ । ସେ ଯେତେବେଳେ ଯେପରି ଚାହିଁବେ ସେପରି ଅବତାର ଧାରଣ କରିପାରନ୍ତି । କେତେବେଳେ ସେ ଅର୍ଦ୍ଧ ନର ଅର୍ଦ୍ଧ ସିଂହ ରୂପ ଗ୍ରହଣ କରନ୍ତି, ଆଉକେତେବେଳେ ଗ୍ରୀବାହୟ– ଘୋଡ଼ାର ମୁହଁ ଆଉ ମଣିଷର ଶରୀର ବି ଧାରଣ କରିନିଅନ୍ତି ।

---

 ଭଗବାନ ଉବାଚ :

ଶୁଣ ଉଦ୍ଧବ ସାଧୁ ଧୀର । ସେ ଚାରି ବ୍ରହ୍ମାଙ୍କ କୁମର ।।
ପିତାର ପାଦେ ହସ୍ତ ଦେଇ । ଯୋଗ ପୁଚ୍ଛିଲେ ଚାରିଭାଇ ।।
ପୁତ୍ରଙ୍କ ବାକ୍ୟ ଶୁଣି କର୍ଣ୍ଣେ । ବିଧାତା ବେଦ ଅନୁମାନେ ।।
ଚିନ୍ତି ନ ପାରି ଦୁଃଖମନେ । ବସିଲା ନିଶ୍ଚଳ ଆସନେ ।।
ସମାଧି କରି ଚିନ୍ତେ ମୋତେ । ସଂଶୟ ଛାଣିବା ନିମନ୍ତେ ।।
ବ୍ରହ୍ମାର ଧ୍ୟାନ ବଳେ ମୁହିଁ । ମିଳିଲି ହଂସରୂପ ହୋଇ ।।

[ଭାଗବତ :ଜଗନ୍ନାଥ ଦାସ :୧୧ ସ୍କ. ୧୪ଅ]

ମହର୍ଷି ସୂତ କହୁଛନ୍ତି, ହେ ମୁନିଗଣ ! ଉଦ୍ଧବ ଯେତେବେଳେ ଭଗବାନଙ୍କୁ ହଂସାବତାରର କାରଣ ପଚାରିଲେ, ଭଗବାନ ତାଙ୍କୁ କହିଲେ, ''ହେ ଉଦ୍ଧବ ! ସନକାଦି ମୁନିଙ୍କୁ ମୁଁ ଯୋଗ ଉପଦେଶ କାହିଁକି ଦେଲି, କେତେବେଳେ ଦେଲି, ସେଇ ସମ୍ବନ୍ଧର କଥା ତୁମକୁ କହୁଛି, ଶୁଣ ।

''ଦିନକର କଥା । ବ୍ରହ୍ମା ତାଙ୍କ ଲୋକରେ ନିଜର ଦିବ୍ୟ ସଭାରେ ବିରାଜମାନ କରୁଥିଲେ । ମୁଖ୍ୟ ମୁଖ୍ୟ ଦେବତାମାନେ, ଅସୁରଗଣ, ଗୁହ୍ୟକ, ସିଦ୍ଧ, ଚାରଣ, ଗନ୍ଧର୍ବ, ନାଗ, ଅପସରା, କିନ୍ନର, କିଂପୁରୁଷ, ଋଷି, ମନୁଷ୍ୟ ଆଉ ପଶୁପକ୍ଷୀମାନେ ଦିବ୍ୟ ରୂପ ଧରି ତାଙ୍କର ଉପାସନା କରିବାରେ ଲାଗିଥିଲେ । ସଭା ପରିପୂର୍ଣ୍ଣ ଥିଲା । ଦିବ୍ୟ ଅପସରାମାନେ ନୃତ୍ୟ କରୁଥିଲେ, ଗନ୍ଧର୍ବମାନେ ଗାନ କରୁଥିଲେ । ଏପରି ସମୟରେ କେବଳ କୌପୀନ ପରିହିତ ସନକ, ସନାତନ, ସନନ୍ଦନ ଓ ସନତ୍‌କୁମାର, ଏଇ ଚାରିଭାଇ ସେଠାରେ ପହଞ୍ଚିଗଲେ । ଏମାନେ ପହଞ୍ଚିଯିବା କ୍ଷଣି ସଭାରେ ଉପସ୍ଥିତ ସମସ୍ତେ ଠିଆ ହୋଇଗଲେ । ଯେଉଁ ଅପସରାମାନେ ନୃତ୍ୟ କରୁଥିଲେ ; ଆଉ ଯେଉଁ ଗନ୍ଧର୍ବମାନେ ଗାନ କରୁଥିଲେ ସେମାନେ ନୀରବ ହୋଇ ଗୋଟିଏ ପାଖରେ ବସିଗଲେ । ଚାରିଜଣଯାକ କୁମାର ସେମାନଙ୍କର ପିତା ତଥା ସମସ୍ତ ଲୋକର ପିତାମହ ବ୍ରହ୍ମାଙ୍କ ପାଦପଦ୍ମରେ ପ୍ରଣାମ କଲେ । ବ୍ରହ୍ମା ଅତିସ୍ନେହରେ ସମସ୍ତଙ୍କୁ ଆଲିଙ୍ଗନ କଲେ, କୁଶଳବାର୍ତ୍ତା ପଚାରିଲେ, ଆଉ ତାଙ୍କ ପାଖରେ ବସିବାପାଇଁ ଆସନ ଦେଲେ । ପିତାଙ୍କ ଆଜ୍ଞାରେ ସମସ୍ତେ ନିର୍ଦ୍ଦିଷ୍ଟ ଆସନମାନଙ୍କରେ ବସିଯିବା ପରେ, ବ୍ରହ୍ମା ପଚାରିଲେ–''ହେ ପୁଅମାନେ ! ତୁମେ କେଉଁଠାରୁ ଆସିଲ ? ସବୁ ଭଲ ତ ? ତମମାନଙ୍କ ମୁହଁରୁ ଜଣାପଡୁଛି ଯେ ତୁମେମାନେ କିଛି ଜାଣିବା ପାଇଁ ଇଚ୍ଛାକରୁଛ । ମୋତେ କିଛି କହିବାର ଅଛି କି ?''

ଏହା ଶୁଣି କୁମାରମାନେ କହିଲେ ''ପିତୃଦେବ ! ହଁ, ଆମ ମନରେ ଏକ ଶଙ୍କା ଜାତ ହୋଇଛି । ଆମେ ଆପଣଙ୍କୁ ଗୋଟିଏ ପ୍ରଶ୍ନ ପଚାରିବାକୁ ମନକରିଛୁ ।''

ଭଗବାନ୍ ବ୍ରହ୍ମା କହିଲେ, ''ନିଃସଂକୋଚ ଭାବେ ପଚାର । ତୁମେମାନେ ଯାହା ଜାଣିବା ପାଇଁ ଇଚ୍ଛାକରୁଛ ପଚାର, ମୁଁ ତୁମକୁ କହିବି ।''

କୁମାରମାନେ କହିଲେ, ''ପିତୃଦେବ ! ଚିତ୍ତର ସ୍ୱଭାବ ହେଉଛି ସ୍ୱତଃ ବିଷୟ ଆଡ଼କୁ ଚାଲିଯିବା । ଆଉ ବିଷୟର ସ୍ୱଭାବ ହେଉଛି ତାହା ବାସନା ରୂପରେ ଚିତ୍ତରେ ପ୍ରବେଶ କରିବା । ଆପଣ ଓ ଅନ୍ୟମାନେ ସବୁବେଳେ କୁହନ୍ତି, ଯେପର୍ଯ୍ୟନ୍ତ ଚିତ୍ତ ନିର୍ବିଷୟ ନ ହୋଇଛି, ଯେପର୍ଯ୍ୟନ୍ତ ମନକୁ ଗୁଣଠାରୁ ପୃଥକ୍‌କରି ଗୁଣାତୀତ ନ କରାଯାଇଛି ସେପର୍ଯ୍ୟନ୍ତ ଏହି ସଂସାର ସାଗରରୁ କେହି ପାରି ହୋଇପାରନ୍ତି ନାହିଁ । ଯେଉଁ ବ୍ୟକ୍ତିମାନେ ମୁକ୍ତିପଦ ପାଇଁ ଇଚ୍ଛା କରନ୍ତି ସେମାନେ ବିଷୟରୁ ଚିତ୍ତକୁ ଦୂର କିପରି କରିପାରିବେ । ଉଭୟଙ୍କ ସହ ଆକର୍ଷଣ ତ ଅଛି । ଯଦି ଗୋଟିକର ଥାଆନ୍ତା ତେବେ ହୁଏତ ପୃଥକ୍ କରିବା ସମ୍ଭବ ହୋଇପାରନ୍ତା ।''

ଭଗବାନ କହୁଛନ୍ତି, ''ହେ ଉଦ୍ଧବ ! ଏହି ପ୍ରଶ୍ନ ଥିଲା ଅତି ରହସ୍ୟମୟ ଓ ଗମ୍ଭୀର । ଏହା ଥିଲା ଯୋଗର ପରାକାଷ୍ଠା ସମ୍ପର୍କୀୟ ପ୍ରଶ୍ନ । ଯୋଗର ସମ୍ବନ୍ଧ ଚିତ୍ତ ବୃତ୍ତିରାଶିର ନିରୋଧରେ ହିଁ ଥାଏ । ସେପରି କେହି ସାଧାରଣ ପ୍ରଶ୍ନକର୍ତ୍ତା ହୋଇଥିଲେ

ଅଥବା ଯାତ୍ରୁସ୍ୟାତ୍ରୁ କଥା କହିପାରୁଥିବା ବକ୍ତା ହୋଇଥିଲେ ମିଛସତ ମିଶାମିଶି କରି କହି କଥାଟା ଏଡ଼ାଇ ଦେଇଥାନ୍ତା। କିନ୍ତୁ ଏଠାରେ ତ ସେପରି କଥା ନାହିଁ। ପ୍ରଶ୍ନକର୍ତ୍ତା ତ ମାୟାତୀତ ବ୍ରହ୍ମଚାରୀ କୁମାର ଆଉ ସେମାନେ ପ୍ରଶ୍ନ କରିଥିଲେ ସଂପୂର୍ଣ୍ଣ ଭୁବନଅଧୀଶ୍ୱର ଦେବାଧିଦେବ ଭୂତଭାବନ ଭଗବାନ ବ୍ରହ୍ମାଙ୍କୁ। ଏପରି କ୍ଷେତ୍ରରେ ଅବହେଳନାର ପ୍ରଶ୍ନ ଇ ଉଠିପାରେନା। ବ୍ରହ୍ମା ତ ଆଉ ଏଣୁତେଣୁ କହିବେ ନାହିଁ। କହିଲେ ବି ତାଙ୍କୁ ସନକାଦି କୁମାରମାନେ ଛାଡ଼ିବେ ନାହିଁ। ପ୍ରଶ୍ନ ଥିଲା ଅତି ଗୂଢ଼। ବ୍ରହ୍ମା ଚିନ୍ତା କରିବାରେ ଲାଗିଲେ। ପରିପୂର୍ଣ୍ଣ ସଭାସ୍ଥଳୀ। ଯଥାର୍ଥ ଉତ୍ତର ଦେଇ ନ ପାରିଲେ ସମସ୍ତେ ହସିବେ। ସମସ୍ତେ ପରିହାସ କରି କହିବେ— 'ବେଦଗର୍ଭ ସର୍ବଜ୍ଞ ଲୋକପିତାମହ ନିଜ ପୁଅମାନଙ୍କର ପ୍ରଶ୍ନର ଉତ୍ତର ଦେଇପାରିଲେ ନାହିଁ।' କୁମାରମାନେ ପ୍ରଶ୍ନ କଲେ ନାହିଁ ଯେ ବ୍ରହ୍ମାଙ୍କୁ ଅଗାଧ ପ୍ରଶ୍ନ ସାଗରରେ ଉବୁଟୁବୁ କରିଦେଲେ। ବ୍ରହ୍ମା ତାଙ୍କର ସମସ୍ତ ଜ୍ଞାନଗାରିମା ଲଗାଇ ଉତ୍ତର ଖୋଜିବାରେ ଲାଗିଲେ। ହେଲେ ତାଙ୍କୁ ଯଥାର୍ଥ ଉତ୍ତର ମିଳିଲା ନାହିଁ।''

ଉଦ୍ଧବ କହିଲେ, ''ପ୍ରଭୁ! ସକଳ ଲୋକସ୍ରଷ୍ଟା ବ୍ରହ୍ମାଙ୍କ ପାଇଁ କ'ଣ ସେ ପ୍ରଶ୍ନ ଏତେ କଠିନ ଥିଲା ?''

ଭଗବାନ କହିଲେ, ''ଉଦ୍ଧବ! ବ୍ରହ୍ମା, ବିଷ୍ଣୁ, ମହେଶ ଏମାନେ ସବୁ ମୋର ହିଁ ରୂପ। ସେମାନଙ୍କ ଓ ମୋ ଭିତରେ କିଛି ଅନ୍ତର ନାହିଁ। ତେବେ ବି ସୃଷ୍ଟି କରିବାକୁ ଇଚ୍ଛାକରି ମୁଁ ଯେତେବେଳେ ମାୟାକୁ ଆଶ୍ରୟ କରି ଗୁଣାନୁସାରେ ନିଜ ରୂପକୁ ନିର୍ମାଣ କରେ, ସେତେବେଳେ ରଜୋଗୁଣମୟ ମୋ ରୂପ ବ୍ରହ୍ମା ହୁଏ। ବ୍ରହ୍ମା ସୃଷ୍ଟି କରନ୍ତି। ରଜୋଗୁଣ ବିନା କର୍ମ ହୋଇପାରେ ନାହିଁ। ତେଣୁ ବ୍ରହ୍ମାଙ୍କର ବୁଦ୍ଧି ବିଶେଷ ଭାବରେ କର୍ମରେ ହିଁ ଲାଗିରହିଥାଏ। ତାଙ୍କର ସବୁବେଳେ ସୃଷ୍ଟି-ବୃଦ୍ଧିର ଚିନ୍ତା ରହିଥାଏ। ପ୍ରଥମ ପ୍ରଶ୍ନ ହେଉଛି ବିଶୁଦ୍ଧ ସତ୍ତ୍ୱମୟ। ତେଣୁ ତା'ର ଉତ୍ତର ମୁଁ ବିଶୁଦ୍ଧ ସତ୍ତ୍ୱମୟ, ପରମ ଶୁଭ୍ର ରୂପରେ ହିଁ ଦେଇପାରେ। ବ୍ରହ୍ମା ତ୍ରୈଗୁଣ୍ୟ ବିଷୟ ଜାଣନ୍ତି। କାରଣ ବେଦ ହେଉଛି ତ୍ରୈଗୁଣ୍ୟ ବିଷୟ। ତ୍ରୈଗୁଣ୍ୟ ତ ହେଉଛି ମୁଁ। ତେଣୁ ବ୍ରହ୍ମାଙ୍କର ଏହି ପ୍ରଶ୍ନର ଉତ୍ତର ମନେପଡ଼ିଲା ନାହିଁ।

ଉଦ୍ଧବ କହିଲେ, ''ତା ହେଲେ ପ୍ରଭୁ! କ'ଣ ପୁଣି ହେଲା? ବ୍ରହ୍ମା କ'ଣ ଆଉ ଅସ୍ତିତ୍ୱ ହରାଇପକାଇଲେ କି?''

ତତ୍‌କ୍ଷଣାତ୍ ଭଗବାନ କହିଲେ, ''ନା ନା, ଅସ୍ତିତ୍ୱ ହରାଇବେ କାହିଁକି? ମୋ ଭକ୍ତର କେବେ ବିଳୟ ହୋଇପାରେ! ଭକ୍ତଙ୍କ ଉପରେ ଯେତେବେଳେ କୌଣସି ସଂକଟ ଆସେ, ସେମାନଙ୍କ ସାମର୍ଥ୍ୟ ବାହାରର ପ୍ରଶ୍ନ ଯଦି ଉପସ୍ଥାପିତ ହୁଏ, ସେତେବେଳେ ସେମାନେ ମୋତେ ସ୍ମରଣ କରନ୍ତି। ସେମାନେ ସ୍ମରଣ କରିବାକ୍ଷଣି ତତ୍‌କାଳ ମୁଁ ସେଠାରେ ପ୍ରକଟ ହୁଏ ଓ ଦୁଃଖ ଦୂରକରେ। ପ୍ରଶ୍ନର ଉତ୍ତର ନ ଦେଇପାରି ବ୍ରହ୍ମା ଯେତେବେଳେ ମୋତେ ସ୍ମରଣକଲେ ମୁଁ ସହସା ହଂସରୂପ ଧାରଣକରି ତାଙ୍କ ସମ୍ମୁଖରେ ପ୍ରକଟ ହୋଇଗଲି।

"ମୋତେ ଦେଖି ସନକାଦି କୁମାରମାନେ, ବ୍ରହ୍ମା ଓ ଉପସ୍ଥିତ ସଭାସଦ୍‌ଗଣ ଠିଆ ହୋଇଗଲେ। ସେମାନେ ବ୍ରହ୍ମାଙ୍କୁ ଆଗରେ ରଖି ସମସ୍ତେ ମୋତେ ଶ୍ରଦ୍ଧାପୂର୍ବକ ପ୍ରଣାମ କଲେ। ପାଦ୍ୟାର୍ଘ୍ୟ ପ୍ରଦାନ କରି ମୋତେ ପୂଜା କଲେ ଆଉ ସୁନ୍ଦର ଆସନରେ ବସାଇଲେ।"

ଉଦ୍ଧବ ପଚାରିଲେ, "ପ୍ରଭୁ! ଲୋକପିତାମହ ବ୍ରହ୍ମା ଗୋଟିଏ ପକ୍ଷୀକୁ ଦେଖି କାହିଁକି ଠିଆ ହୋଇଗଲେ? ଆପଣ ତ ଆପଣଙ୍କ ସ୍ୱରୂପ ଧାରଣକରି ପ୍ରକଟ ହୋଇ ନ ଥିଲେ। ପକ୍ଷୀରୂପରେ ଯାଇଥିଲେ। ପକ୍ଷୀଙ୍କ ପାଦତଳେ କେହି ପ୍ରଣାମ ତ କରନ୍ତି ନାହିଁ। ତାହାହେଲେ ବ୍ରହ୍ମା କ'ଣ ଆପଣଙ୍କୁ ଚିହ୍ନିଦେଲେ?"

ଭଗବାନ କହିଲେ, "ନା, ବ୍ରହ୍ମା ମୋତେ ଚିହ୍ନିପାରି ନ ଥିଲେ। କିନ୍ତୁ ମୁଁ ଯେତେପ୍ରକାର ପଶୁପକ୍ଷୀ ରୂପ ଧାରଣକଲେ ବି ମୋ ତେଜ ତ ଆଉ ଲୁଚିଯିବ ନାହିଁ। ଦେଖ, ମୁଁ ଯେତେବେଳେ ବାଳକ ରୂପରେ କଂସର ସଭାସ୍ଥଳୀକୁ ଯାଇଥିଲି ସେତେବେଳେ ମୋତେ ଦେଖି ସମସ୍ତେ ଠିଆ ହୋଇଯାଇଥିଲେ। ରାମ ରୂପରେ ମହର୍ଷି ବିଶ୍ୱାମିତ୍ରଙ୍କ ସହିତ ମୁଁ ଯେତେବେଳେ ମିଥିଳାକୁ ଯାଇଥିଲି, ମୁଁ ଯିବାପୂର୍ବରୁ ହିଁ ମୋ ତେଜରେ ଅଭିଭୂତ ହୋଇ ସକଳ ମୁନିଋଷି, ରାଜା ମହାରାଜା ଠିଆ ହୋଇପଡ଼ିଥିଲେ। ଯଦିଓ ମୁଁ ସେତେବେଳେ ହଂସ ରୂପରେ ଯାଇଥିଲି, ମୋ ତେଜ ଦେଖି ବ୍ରହ୍ମା, ବ୍ରହ୍ମଚାରୀ କୁମାରଗଣ ଓ ଅନ୍ୟାନ୍ୟ ଦେବତାମାନେ ବୁଝିଯାଇଥିଲେ ଯେ କୌଣସି ଅସାଧାରଣ ପ୍ରାଣୀ ଆସିଛନ୍ତି। ତେଣୁ ସେମାନେ ମୋର ଆଦର କଲେ, ଶ୍ରଦ୍ଧାର ସହିତ ଚରଣ ବନ୍ଦନା କଲେ।"

ଉଦ୍ଧବ ପଚାରିଲେ, "ଆଚ୍ଛା, ତାହାହେଲେ ଠିକ୍ ଅଛି। ଏବେ କୁହନ୍ତୁ ସନକାଦି ଋଷିମାନେ ଆପଣଙ୍କୁ କି ପ୍ରକାର ପ୍ରଶ୍ନ ପଚାରିଲେ! ବ୍ରହ୍ମାଙ୍କୁ ସେମାନେ ଯେଉଁ ପ୍ରଶ୍ନ ପଚାରିଥିଲେ ଆପଣଙ୍କୁ କ'ଣ ସେଇ ପ୍ରଶ୍ନ ପଚାରିଲେ କି?"

ଭଗବାନ କହିଲେ, "ମୋର ପରିଚୟ ନ ଜାଣି ସେମାନେ ମୋତେ ପ୍ରଶ୍ନ କିପରି ପଚାରି ଥାଆନ୍ତେ? ପ୍ରଣାମ କରିବାପରେ ସେମାନେ ମୋ'ଠାରୁ ମୋର ପରିଚୟ ଚାହିଁଲେ। ସେଇ ମୁନିମାନେ ମୋତେ ପଚାରିଲେ, 'ହେ ହଂସ ଦେବତା! ଆପଣ କିଏ?' ଏଥର ତାଙ୍କ ସହିତ କଥାବାର୍ତ୍ତା କରିବାର ସୁଯୋଗ ମୋତେ ମିଳିଗଲା। ଏହାର ଉତ୍ତର ଦେଉଦେଉ, ମୁଁ, ସେମାନେ ବ୍ରହ୍ମାଙ୍କୁ ପଚାରିଥିବା ପ୍ରଶ୍ନର ଉତ୍ତର ମଧ୍ୟ ଦେବା ଆରମ୍ଭ କରିଦେଲି।"

ଉଦ୍ଧବ ପଚାରିଲେ, "ପ୍ରଭୁ! ଆପଣଙ୍କୁ ପରିଚୟ ଦେବା ନିମନ୍ତେ ସେମାନେ ପ୍ରଶ୍ନ କଲେ। ଆପଣ ଏହି ଉତ୍ତରମାଧ୍ୟମରେ ସେମାନଙ୍କର ଗୂଢ଼ ପ୍ରଶ୍ନର ଉତ୍ତର ପ୍ରଦାନକଲେ କିପରି? ଆପଣ ପ୍ରଥମେ ସେମାନଙ୍କୁ ପରିଚୟ ଦେଇଥିବେ, ଏହାପରେ ସେମାନେ ଆପଣଙ୍କୁ ପୁଣି ପ୍ରଶ୍ନ କରିଥିବେ। ଏହାପରେ ଆପଣ ଉତ୍ତର ଦେଇଥିବେ। ସେମାନେ କିନ୍ତୁ ପ୍ରଶ୍ନ ଗୋଟିଏ କରିଥିବା ବେଳେ ଆପଣ ଉତ୍ତର ଅନ୍ୟ ସବୁ କଥାର ଦେଲେ କିପରି?"

ଉଦ୍ଧବଙ୍କଠାରୁ ଏପରି କଥା ଶୁଣି ଭଗବାନ ହସି ହସି କହିଲେ, "ଅନ୍ୟ ବୋଲି କିଛି ନାହିଁ। ସବୁ ହେଉଛି ଏକ। ଗୋଟିଏ ମିଶ୍ରି ଖଣ୍ଡରୁ ଯେଉଁ ପାଖରୁ ଭାଙ୍ଗି ଖାଇବ ତାହା ମିଠା ହିଁ ଲାଗିବ। ପକ୍ଷୀ ଯେଉଁଠାରେ ଉଡୁ, ସେ ଆକାଶରେ ହିଁ ଉଡ଼ିବ। କାରଣ ଆତ୍ମା ବ୍ୟତୀତ ଅନ୍ୟକୌଣସି ପ୍ରସଙ୍ଗରେ ପ୍ରଶ୍ନ କରାଯାଇ ହୁଏନା। ଆତ୍ମା ସମ୍ବନ୍ଧୀୟ ମୁନିମାନେ ଯାହା ପ୍ରଶ୍ନ କରିଥିଲେ, ମୁଁ ଉତ୍ତରରେ ସେମାନଙ୍କୁ ଯାହା ଯାହା କହିଥିଲି ସେ ସମସ୍ତ କଥା କହୁଛି ତୁମେ ପ୍ରେମପୂର୍ବକ ଶ୍ରବଣକର।"

ମହର୍ଷି ସୂତ କହୁଛନ୍ତି—"ହେ ମୁନିଗଣ! ଏବେ ଆପଣମାନେ ହଂସଗୀତା-ଜ୍ଞାନ ଧ୍ୟାନର ସହିତ ଶ୍ରବଣ କରନ୍ତୁ।"

### ଛପ୍ପୟ

ତବଇ ମୈ ବନେ ହଂସ କୁମାରିନି କେ ଢିଂଗ ଆୟୋ।
କରି ଆଗେ ଅଜ ସବନି ଚରନ ମେରେ ସିରେ ନାୟୋ॥
ପୂଛେଁ—"କୋ ହୋ ଆପ?" କହୀ ହଁସିକେଂ ହୌ ବାନୀ।
କା କୂଁ କରି ଉଦ୍ଦେଶ ପ୍ରଶ୍ନ କୀହ୍ନୋ ମୁନି ଜ୍ଞାନୀ॥
ଆତ୍ମା ଅଦ୍ୱୟ ଏକ ହୈ, ବନହିଁ ନ ତାମେଂ ପ୍ରଶ୍ନ ଯହ।
ପଞ୍ଚଭୂତ କେ ଦେହ ସବ, ପ୍ରଶ୍ନ ନ ଜାମେଂ ଉଠହି କହ॥



# ହଂସ-ଗୀତା

**ମାନସା ବଚସା ଦୃଷ୍ଟ୍ୟା ଗୃହ୍ୟତେଽନ୍ୟୈରପୀନ୍ଦ୍ରିୟୈଃ ।**
**ଅହମେବ ନ ମତ୍ତୋଽନ୍ୟଦିତ ବୁଧ୍ୟଧ୍ୱମଞ୍ଜସା ।।** ★

[ଶ୍ରୀ ଭା.୧୧ ସ୍କ.୧୩ ଅ. ୨୪ ଶ୍ଳୋକ]

**ଛପ୍ପୟ**

ଜୋ ସୋଚୋ ଜୋ ଲଖୌ ସୁନୋ ସୋ ମୈଂ ହୀ ସବ ହୂଁ।
ପ୍ରଥମହୁ ମୈଂ ହୀ ରହ୍ୟୋ ରହୌଂଗୋ ମୈଂ ହୀ ଅବହୂଁ।।
ବିଷୟନି ଚିତ ଅନୁସରେ ବିଷୟ ହୂ ପ୍ରବିଶେଂ ତାମେଂ।
ଜୀବ ଉପାଧୀ ଉଭୟ ନହୀଂ ତେ ରୂପ କହାବେଂ।।
ସେବେ ବିଷୟନିକୂଁ ସତତ, ଚିତ ହୋହି ଆବିଷ୍ଟ ତହଁ।
ବନୈ ବାସନା ଚିତକୀ, ଜୀବ ବ୍ରହ୍ମ ଦ୍ୱୈ ପୃଥକ କହଁ।।

ସଂସାରର ବନ୍ଧନ ଅଜ୍ଞାନ ହେତୁ ହୋଇଥାଏ । ଅସତ୍‌ରେ ସତ୍‌ର ଭ୍ରମ ହୋଇଯାଇଛି । ବିସ୍ତୃତ ଅହଂ ସାଢ଼େ ତିନିହାତର ଶରୀରରେ ସୀମିତ କରିଦେଇଛି । ଏଇଥି ଯୋଗୁଁ ଜନ୍ମ-ମରଣ ଚକ୍ର ଦୁଃଖ ହୁଏ । ଆଉ ସଂସାର-ଚକ୍ରରେ ଭ୍ରମଣ କରିବାକୁ ପଡ଼େ । ଯିଏ ଏହି କ୍ଷୁଦ୍ର ଅହଂକୁ ମହାନ୍ ଅହଂରେ ମିଶାଇ ଦେଇପାରେ, ଯିଏ ବ୍ୟଷ୍ଟିଜ୍ଞାନକୁ ସମଷ୍ଟିରେ ଏକାକାର କରିଦିଏ, ତାକୁ ଆଉ ମୋହ ହୁଏ ନାହିଁ, ମୋହ ଗ୍ରାସ କରିପାରେ ନାହିଁ । ସେ ସଂସାର ବନ୍ଧନରୁ ଚିରକାଳ ପାଇଁ ମୁକ୍ତ ହୋଇଯାଏ । ଏଣୁ ଯିଏ ବ୍ୟଷ୍ଟି-ସମଷ୍ଟିର ଭେଦକୁ ଦୂରକରି କ୍ଷୁଦ୍ର 'ସ୍ୱ' କୁ ମହାନ୍ 'ସ୍ୱ' ସହିତ ଏକାକାରକରି ନିର୍ଦ୍ୱନ୍ଦ୍ୱ ହୋଇଯାଏ, ସେ ହିଁ ସୁଖୀ ହୋଇପାରେ ।

ମହର୍ଷି ସୂତ କହୁଛନ୍ତି, "ହେ ମୁନିଗଣ ! ଉଦ୍ଧବଙ୍କୁ ଭଗବାନ ଶ୍ରୀକୃଷ୍ଣଚନ୍ଦ୍ର କହିଲେ, 'ହେ ଉଦ୍ଧବ ! ବ୍ରହ୍ମାଙ୍କର ସଭାରେ ମୁଁ ଯେତେବେଳେ ହଂସ ରୂପରେ ଉପସ୍ଥିତ ହେଲି, ଆଉ ତେଜସ୍ୱୀ ହଂସର ତେଜରେ ପ୍ରଭାବିତ ହୋଇ ବ୍ରହ୍ମା ଓ ମୁନିକୁମାରମାନେ ମୋତେ ପ୍ରଣାମ କଲେ, ସେତେବେଳେ ମୋର ପରିଚୟ ଜାଣିବା ଉଦ୍ଦେଶ୍ୟରେ ମୁନିକୁମାରମାନେ ମୋତେ ପଚାରିଲେ, 'ଆପଣ କିଏ ?'

---

★ ଭଗବାନ ଉବାଚ :

ହୃଦୟେ ଯାହା ପରମାଣି । ଯେ କିଛି ଶୁଣି ମୁଖେ ଭଣି ।।
ଇନ୍ଦ୍ରି-ଗୋଚରେ ମନ ବୁଦ୍ଧି । ଯେ ଭୋଗ ବିଷୟ ପ୍ରସିଦ୍ଧି ।।
ଏ ସର୍ବ ମୋହର ଆଯତ୍ତ । ମୋ ବିନୁ କିଛି ନୋହେ ସତ୍ୟ ।।
ମୁଁ ସର୍ବ ବିଷୟ ଗୋଚର । ମୋ ତହୁଁ ଆତ୍ମା ନୋହେ ପର ।।

[ଭାଗବତ : ଜଗନ୍ନାଥ ଦାସ : ୧୧ ସ୍କନ୍ଧ ୧୪ ଅ.]

ଭଗବାନ ହଂସ କହିଲେ, ''କିଏ ବୋଲି ପଚାରିବାରେ କି ତାତ୍ପର୍ଯ୍ୟ ଅଛି ?''

କୁମାରମାନେ କହିଲେ, ''ଆମେ ଆପଣଙ୍କ ପରିଚୟ ଜାଣିବାକୁ ଇଚ୍ଛାକରିଛୁ।''

ଭଗବାନ ହଂସ କହିଲେ, ''ପରିଚୟ ତ ଅପରିଚିତକୁ କୁହାଯାଏ।''

ମୋର ଏପରି କଥା ଶୁଣି ଯେତେବେଳେ କୁମାରମାନେ ମୋତେ କହିଲେ, ''ଆମ ପାଇଁ ଆପଣ ତ ଅପରିଚିତ।''

ହଂସ କହିଲେ, ''ଆପଣ' କହିବାର ଅଭିପ୍ରାୟ କ'ଣ ? ଯଦି ଶରୀରକୁ 'ଆପଣ' ବୋଲି କହୁଥାଅ ତେବେ ଶରୀର ତ ଅପରିଚିତ ନୁହେଁ। ଯେପରି ପୃଥିବୀ, ବାୟୁ, ଜଳ, ତେଜ, ଆଉ ଆକାଶଦ୍ୱାରା ନିର୍ମିତ ରସ, ରକ୍ତ, ମେଦ, ମଜ୍ଜା, ଅସ୍ଥି ଆଉ ଶୁକ୍ର ଥିବା ଆପଣଙ୍କ ଶରୀର, ଠିକ୍ ସେହିଭଳି ମଧ୍ୟ ମୋର। ସବୁ ଶରୀର ଏକା ଭଳି। ଶରୀରର ପୁଣି ପରିଚୟ କ'ଣ ? ରକ୍ତ ବଦଳରେ ମୋ ଶରୀରରେ ଦୁଗ୍ଧ ଥିଲେ ଅଥବା ପଞ୍ଚଭୂତ ଛଡ଼ା ଅନ୍ୟକୌଣସି ବସ୍ତୁରେ ହୋଇଥିଲେ, ତେବେ ପରିଚୟ ଦିଆଯାଇ ପାରନ୍ତା ; ପରିଚୟ ଦେବାର ଯଥାର୍ଥତା ଥାଆନ୍ତା।''

କୁମାରମାନେ କହିଲେ, ''ଶରୀର ତ ସମସ୍ତଙ୍କର ଏକା ହୋଇଥାଏ। ସବୁ ପଞ୍ଚଭୂତରେ ନିର୍ମିତ ହୋଇଥିବାରୁ ଅଭିନ୍ନ ହୋଇଥାଏ। ତେବେ ବି ସମସ୍ତଙ୍କର ଅଭିମାନୀ ଆତ୍ମା ହୋଇଥାଏ ଭିନ୍ନ ଭିନ୍ନ।''

ହଂସ ଭଗବାନ କହିଲେ, ''ଆତ୍ମାରେ ତ ଭିନ୍ନତା ହିଁ ନ ଥାଏ। ଆତ୍ମା ବସ୍ତୁ ତ ସଦାକାଳେ ଏକ ହୋଇଥାଏ। ସଜାତୀୟ, ବିଜାତୀୟ ଅଥବା ସ୍ୱଗତ ଏ ପ୍ରକାର ଭେଦଭାବରହିତ ହୋଇଥାଏ। ଆତ୍ମା ଯେତେବେଳେ ଏକ, ସେପରି ସ୍ଥଳରେ ଆପଣମାନଙ୍କ ପ୍ରଶ୍ନ 'ଆପଣ କିଏ'ର ପ୍ରଶ୍ନ ହିଁ ଉଠୁନାହିଁ। ଯେତେବେଳେ ଆତ୍ମାରେ ଦ୍ୱିତ୍ୱ ନାହିଁ, ସେତେବେଳେ ମୁଁ କାହାର ଆଶ୍ରୟନେଇ ଆପଣଙ୍କର ଏହି ପ୍ରଶ୍ନର ଉତ୍ତର ଦେବି ? ଆତ୍ମାର କୌଣସି ନିର୍ଦ୍ଦିଷ୍ଟ ଜାତି ନ ଥିବାରୁ ମୁଁ ଅମୁକ ଜାତିର ବୋଲି ସେ କହିପାରେ ନାହିଁ। ଆତ୍ମାର ଗୁଣ ନ ଥିବାରୁ ତାହା ନିର୍ଗୁଣ। ତେଣୁ ମୁଁ ଅମୁକ ଗୁଣବିଶିଷ୍ଟ ବୋଲି କହିପାରୁ ନାହିଁ। ଆତ୍ମାରେ ସାଧାରଣ ଓ ବିଶେଷ ବ୍ୟକ୍ତିତ୍ୱ ବୋଲି କିଛି ନ ଥାଏ, ଏଣୁ ମୁଁ ଅମୁକ ବ୍ୟକ୍ତି ବୋଲି ମଧ୍ୟ କହିପାରୁ ନାହିଁ। ଯେତେବେଳେ ଦେହରେ ମୋ'ର ତୋ'ର ଭେଦଭାବ ନାହିଁ, ସବୁ ଏକା ପ୍ରକାର ବସ୍ତୁରେ ନିର୍ମିତ, ଆଉ ଆତ୍ମା ବି ଏକ, ତେଣୁ ଆପଣମାନଙ୍କ ପ୍ରଶ୍ନ ବାଣୀରେ ଆରମ୍ଭ ମାତ୍ର ଏବଂ ତେଣୁ ବ୍ୟର୍ଥ ଆଡ଼ମ୍ବର ମାତ୍ର।''

କୁମାରମାନେ କହିଲେ, ''ଆପଣ ଦେହରୂପରେ ଯଦି ଆପଣଙ୍କ ପରିଚୟ ଦେବାକୁ ଚାହୁଁ ନାହାନ୍ତି, ଆଉ ଆତ୍ମା ରୂପରେ ବି କିଛି କହୁନାହାନ୍ତି, ତେବେ ସୁଦ୍ଧା ଆପଣ ତ କେହି ଜଣେ ନିଶ୍ଚୟ ?''

ସେତେବେଳେ ହଂସରୂପରେ ମୁଁ କହିଲି, ''ମନରେ ଯାହା ମନନ କରାଯାଏ, ତାହା ମୁଁ ; ବାଣୀ ଦ୍ୱାରା ଯାହା କିଛି କୁହାଯାଏ, ତାହା ସବୁ ମୁଁ ; ଦୃଷ୍ଟିଦ୍ୱାରା ଯାହା ଦୃଶ୍ୟମାନ ହୁଏ, ସେ ସମସ୍ତ ହେଉଛି ମୁଁ ; ଘ୍ରାଣ ଦ୍ୱାରା ଯାହା ଆଘ୍ରାଣ

କରାଯାଏ, ତାହା ସବୁ ମୁଁ; ରସନା ଦ୍ୱାରା ଯାହା କିଛି ସ୍ୱାଦ ଚଖାଯାଏ, ସେ ସମସ୍ତ ହେଉଛି ମୁଁ; କାନ ଦ୍ୱାରା ଯାହା ସବୁ ଶୁଣାଯାଏ, ତାହା ସବୁ ମୁଁ; ସ୍ପର୍ଶେନ୍ଦ୍ରିୟ ଦ୍ୱାରା ଯାହା ସ୍ପର୍ଶ କରାଯାଏ, ତାହା ସବୁ ମୁଁ। କେତେ କହିବି, ସବୁ ହେଉଛି ମୁଁ ହିଁ ମୁଁ। ମୋ ଛଡ଼ା ଅନ୍ୟ କିଛି ନୁହେଁ।

କୁମାରମାନେ କହିଲେ, "ପ୍ରଭୁ! ଏଥର ଆମେ ବୁଝିଗଲୁ, ଆପଣ ହେଉଛନ୍ତି ସାକ୍ଷାତ୍ ଭଗବାନ। ହଂସ ରୂପରେ ଆପଣ ଆମ ସମ୍ମୁଖରେ ପ୍ରକଟ ହୋଇଛନ୍ତି। ଆମ ଉପରେ ଆପଣ କିପରି କୃପା କରିବା ହେଲେ କୁହନ୍ତୁ?"

ସେତେବେଳେ ମୁଁ କହିଲି, "ତୁମେମାନେ ବ୍ରହ୍ମାଙ୍କୁ ଯେଉଁ ପ୍ରଶ୍ନ ପଚାରିଥିଲ ତାର ଉତ୍ତର ଦେବାପାଇଁ ମୁଁ ହଂସ ରୂପରେ ତୁମମାନଙ୍କ ପାଖକୁ ଆସିଛି।"

କୁମାରମାନେ କହିଲେ, "ଆପଣ ପରବ୍ରହ୍ମ, ଆପଣ ହିଁ ଆମ ପ୍ରଶ୍ନର ଉତ୍ତର ଦିଅନ୍ତୁ। ଚିତ୍ତ ସ୍ୱଭାବ ଦ୍ୱାରା ବିଷୟକୁ ଯାଏ ଆଉ ବାସନାରୂପରେ ବିଷୟ ଚିତ୍ତରେ ପ୍ରବେଶ କରେ। ସେପରି ସ୍ଥଳରେ ଏହି ଦ୍ୱୟକୁ ପୃଥକ୍ କରି ସଂସାର ସାଗରରୁ ପ୍ରାଣୀ ପାରି କିପରି ହୋଇପାରିବେ?"

ମୁଁ କହିଲି, "ହେ ପୁଅମାନେ। ତୁମ କଥା ଠିକ୍! ଏ କଥା ସତ୍ୟ ଯେ ଚିତ୍ତ ବିଷୟକୁ ଅନୁସରଣ କରେ। ଯେଉଁଯେଉଁ ଇନ୍ଦ୍ରିୟର ଯେଉଁଯେଉଁ ବିଷୟ ଅଛି ସେହି ବିଷୟରେ ଚିତ୍ତ ସେମାନଙ୍କ ଦ୍ୱାରା ପଶିଯାଏ। ଠିକ୍ ସେହିଭଳି ବିଷୟ ବି ଚିତ୍ତରେ ପ୍ରବେଶ କରେ। କିନ୍ତୁ ଏହା ପରସ୍ପର ସହିତ ସଂଶ୍ଳିଷ୍ଟହୋଇ ସୁଦ୍ଧା ଜୀବର ସ୍ୱରୂପ ନୁହଁନ୍ତି।"

ସନକାଦି ମୁନିମାନେ ପଚାରିଲେ, "ତାହା ହେଲେ ବି କ'ଣ ହେଲା ଭଗବନ୍! ଚିତ୍ତ ଯଦି ବିଷୟ ବାସନା ପୂର୍ଣ୍ଣ ହୁଏ, ସେତେବେଳେ ପୁରୁଷ ବି ସେୟା ହୋଇଯାଏ।"

ହଂସ ଭଗବାନ କହିଲେ, "ଦେଖ! ମୁଁ ଚିତ୍ତ ଆଉ ବିଷୟ ଏ ଦ୍ୱୟଠାରୁ ପୃଥକ୍। ମୋ ଠାରେ ଏ ଦୁହେଁ ନାହାନ୍ତି। ସେତେବେଳେ ମୋ ସ୍ୱରୂପଭୂତ ଜୀବଙ୍କର ଏପରି ସ୍ୱରୂପ ଆଉ ସ୍ୱଭାବ କିପରି ହୋଇ ପାରନ୍ତା, ତାହାକୁ ବିଷୟ ସ୍ପର୍ଶ କରିବ କିପରି?"

ସନକାଦିମାନେ ପଚାରିଲେ, "ଜୀବର ସ୍ୱରୂପ ଆଉ ସ୍ୱଭାବ ଯଦି ନାହିଁ, ତେବେ ଏହା ବିଷୟ ସମୂହ ଦ୍ୱାରା ବନ୍ଧା ହେଉଛି କିପରି?"

ହଂସ ଭଗବାନ କହିଲେ, "ବିଷୟସମୂହରେ ଫସି ଯିବା, ଚିତ୍ତର ଅଧୀନ ହୋଇଯିବା, ଏହା ତ ଜୀବର ସ୍ୱରୂପ ନୁହେଁ। କିନ୍ତୁ ଉପାଧି ନିଶ୍ଚୟ। ଯେପରି ଘଟର ସ୍ୱରୂପ ମୃତ୍ତିକା, କିନ୍ତୁ ନାମ ରୂପ ଏହାର ଉପାଧିମାତ୍ର। ତାହା ମୃତ୍ତିକାକୁ ସ୍ପର୍ଶ ଇ କରିପାରେ ନାହିଁ।"

ସନକାଦିମାନେ ପଚାରିଲେ, "ତାହାହେଲେ ଭଗବନ୍! ବିଷୟରେ ଏତେ ଅଧିକ ଆକର୍ଷଣ ଥାଏ କାହିଁକି?"

ହଂସ ଭଗବାନ କହିଲେ, ''ଏ ସବୁ ମିଥ୍ୟାଭିନିବେଶରୁ ହିଁ ହୋଇଥାଏ। ଅନବରତ ବିଷୟ ସେବନ କରୁଥିବା ହେତୁ ତହିଁରେ ଆବିଷ୍ଟ ହୋଇଯାଏ। ଲୌହର ସ୍ୱଭାବ ବା ସ୍ୱରୂପ ନାଲି କି ଉଷ୍ଣ ନୁହେଁ। କିନ୍ତୁ ଅନବରତ ଅଗ୍ନିରେ ତପ୍ତ ହେବାରୁ ତାହା ନାଲି ଓ ଉଷ୍ଣ ହୋଇଯାଏ। ଅଗ୍ନିରୁ ପୃଥକ୍ କରିଦେଲେ ତାହା ତା'ର ପୂର୍ବ ଅବସ୍ଥା ଫେରିପାଏ। ଜଳର ସ୍ୱଭାବ ଗରମ ନୁହେଁ। କିନ୍ତୁ ପାତ୍ରରେ ପାଣି ରଖି କିଛି ସମୟ ଗରମ କଲେ ତାହା ଗରମ ହୋଇଯାଏ। ଅଗ୍ନିରୁ ପୃଥକ୍ କରିଦେଲେ ତାହା ପୁଣି ଶୀତଳ ହୋଇଯାଏ, ଅଥବା ତା'ର ପୂର୍ବ ଅବସ୍ଥାକୁ ଚାଲିଆସେ। ଗୋଟିଏ ସୁଗନ୍ଧିଯୁକ୍ତ ସ୍ୱାଦିଷ୍ଟ ଲଡୁ ଅଛି। ଏହାକୁ ଆଖି ଦେଖିଲା, ନାକ ଶୁଂଘିଲା। ଇନ୍ଦ୍ରିୟମାନେ ସ୍ପର୍ଶକଲେ। ଏହାପରେ ଏହାକୁ ଖାଇବା ପାଇଁ ଚିତ୍ତ କଲେ। ଖାଇବା ଦ୍ୱାରା ଖୁବ୍ ମିଠା ଲାଗିଲା। ଏହା ପରେ ପୁଣି ଦେଖିଲା ଓ ପୁଣି ଥରେ ଖାଇଲା। ଏଥର ତା' ଚିତ୍ତରେ ଇଚ୍ଛା ଉତ୍ପନ୍ନ ହେବାରେ ଲାଗିଲା। ଲଡୁ ନ ଥିଲେ ଇଚ୍ଛା ହୋଇ ନ ଥାନ୍ତା, ମାତ୍ର ଏବେ ତାହା ବାସନାରୂପରେ ଚିତ୍ତରେ ପ୍ରବେଶ କରିଗଲା। ଏଣୁ ଲଡୁ ନ ଥିଲେ ବି ଚିତ୍ତରେ ତାହାର ଅଭିବ୍ୟକ୍ତି ହେଉଥାଏ।''

ସନକାଦିମାନେ କହିଲେ, ''ତାହାହେଲେ ଏହି ବାସନା ନିବୃତ୍ତ କିପରି ହେବ ?''

ହଂସ ଭଗବାନ ହସି ହସି କହିଲେ, ''ଆରେ ଭାଇ! ଲାଗିଥିଲେ ତ ନିବୃତ୍ତ ହେବ! ଏହା ତ ଏକପ୍ରକାର ମିଥ୍ୟାଭିନିବେଶ ମାତ୍ର। ଏ ସଂକ୍ରାନ୍ତରେ ଗୋଟିଏ ଦୃଷ୍ଟାନ୍ତ କହୁଛି ଶୁଣ।

''ଗୋଟିଏ ସିଂହ ଛୁଆ ଥିଲା। କୌଣସି କାରଣରୁ ମା'ଠାରୁ ସେ ଅଲଗା ହୋଇଗଲା। ଗୋଟିଏ ଗଧିଆ ତାକୁ ପାଳିବାରେ ଲାଗିଲା। ସିଂହଛୁଆ ଗଧିଆ ସାଂଗରେ ସବୁବେଳେ ରହି ରହି ନିଜକୁ ଗଧିଆ ବୋଲି ଭାବିବାରେ ଲାଗିଲା। ପ୍ରକୃତରେ କିନ୍ତୁ ସେ ତ ଗଧିଆ ନ ଥିଲା। ହେଲେ ସଂଗ ହେତୁ ତା'ର ଏପରି ଭ୍ରମ ହୋଇଥିଲା। ଦିନେ ଗୋଟିଏ ସିଂହ ଆସିଲା। ସିଂହକୁ ଦେଖି ଗଧିଆମାନେ ଦୌଡ଼ି ପଳାଇଲେ। ସେହି ଛୁଆ-ସିଂହ ବି ଦୌଡ଼ିବାରେ ଲାଗିଲା। ସିଂହ ଏହି ଦୃଶ୍ୟ ଦେଖି ଭାବିଲା—'ଏଇ ଛୁଆ ତ ସିଂହ ଛୁଆ, ମୋ ସ୍ୱରୂପ ତା'ର ଅଛି। ଇଏ ପୁଣି ମୋତେ ଡରିଲା କାହିଁକି ?

ସିଂହ ଝାମ୍ପ ମାରି ତାକୁ ଧରିପକାଇଲା, ଆଉ କହିଲା—''ମୋତେ ତୁ ଡରୁଛୁ କାହିଁକିରେ ?''

ସିଂହ ଛୁଆ କହିଲା, 'ମୁଁ ହେଉଛି ଗଧିଆ। ମୋର ସାଥିମାନେ ଦୌଡ଼ିଲେ, ତେଣୁ ମୁଁ ଦୌଡ଼ିଲି।'

ସିଂହ କହିଲା— ସେମାନେ ସମସ୍ତେ ତ ମୋତେ ଡରିବା କଥା। କିନ୍ତୁ ତୁ ତ ମୋ ସ୍ୱରୂପବିଶିଷ୍ଟ। ତୁ ତ ସିଂହ। ତୁ ପାଣିରେ ତୋ ପ୍ରତିବିମ୍ବ ଦେଖ।'

ସିଂହଛୁଆ ଏହାଶୁଣି ପାଣିରେ ତା' ରୂପ ଦେଖିଲା। ସିଂହ ମୁହଁସହିତ ତା ମୁହଁକୁ ମିଳାଇଲା। ସେ ଜାଣିଗଲା ଯେ ସେ ହେଉଛି ସିଂହ। ସେ ଯେ ଗଧିଆ ନୁହେଁ ଏହି ଭ୍ରମ ସହସା ତା'ର ଦୂର ହୋଇଗଲା। ବାସ୍ତବରେ ସେ ତ କଦାପି

ଗଧିଆ ନ ଥିଲା। ତେଣୁ ସିଂହକୁ ଡରିବାର କୌଣସି କାରଣ ନ ଥିଲା। ତେବେ ବି ନିଜକୁ ଗଧିଆବୋଲି ଭାବି ସେ କ୍ଲେଶ ପାଉଥିଲା। ଠିକ୍ ଏହିଭଳି ଜୀବ ଯେ ପର୍ଯ୍ୟନ୍ତ ନିଜକୁ ବିଷୟାସକ୍ତ ଚିତ୍ତର ସ୍ୱରୂପବୋଲି ମନେକରୁଥାଏ, ସେ ପର୍ଯ୍ୟନ୍ତ ତାକୁ ପୁନଃପୁନଃ ଜନ୍ମ, ପୁନଃପୁନଃ ମରଣର ଚକ୍ରରେ ଘୂରିବାକୁ ହେଉଥାଏ। ତା'ର ସଂସାର-ସାଗରରୁ ଉଦ୍ଧାର ହୋଇପାରେ ନାହିଁ। ଯେତେବେଳେ ନିଜର ଶୁଦ୍ଧ ସ୍ୱରୂପକୁ ମୋର ହିଁ ରୂପବୋଲି ସେ ଜାଣିପାରିବ, ବୁଝିପାରିବ, ସେତେବେଳେ ତା'ର ନା ଚିତ୍ତ ତାକୁ ବିଗାଡ଼ି ପାରିବ ନା ବିଷୟ। ଚିତ୍ତକୁ ବିଷୟ ଆସୁ ଅଥବା ବିଷୟ ବାସନାରୂପରେ ଚିତ୍ତରେ ପ୍ରବେଶକରୁ, ତା'ର ହର୍ଷ କି ଶୋକ କିଛି ହେବ ନାହିଁ। ଏଣୁ ଚିତ୍ତ ଆଉ ବିଷୟ, ଉଭୟର ଉପାଧି ତ୍ୟାଗକରି ନିଜକୁ ନିରୁପାଧିକ ଅନୁଭବ କରିବା ଉଚିତ। ଏହା ହିଁ ହେଉଛି ସଂସାର ସାଗରରୁ ପାରିହେବାର ଉପାୟ।''

ସନକାଦିମାନେ କହିଲେ, ''ଭଗବନ୍! ଜୀବ ଯେତେବେଳେ ଶୁଏ, ଜାଗ୍ରତ ହୁଏ, ସ୍ୱପ୍ନ ଦେଖେ, ଆଉ ନିଜର ସୁଖଦୁଃଖକୁ ଅନୁଭବ କରେ, ଜନ୍ମ ହୁଏ, ମରେ, ସେତିକିବେଳେ ତାକୁ ଆମେ ଚିତ୍ତ ଆଉ ବିଷୟଠାରୁ ପୃଥକ୍ ବୋଲି ଭାବିବୁ କିପରି?''

ଏହାଶୁଣି ହଂସ ଭଗବାନ କହିଲେ, ''ହେ ମୁନିମାନେ! ଶୋଇବା, ଜାଗ୍ରତ ରହିବା, ସ୍ୱପ୍ନ ଦେଖିବା, ତଥା ନିଜର ଦୁଃଖ ସୁଖ ଅନୁଭବ କରିବା, ଏହା ଜୀବର କାମ ନୁହେଁ। ଏହା ତ ତିନିଗୁଣର ବିଷମତା ହୋଇଥିବା ହେତୁ ବୁଦ୍ଧିର ବୃତ୍ତିରାଶି। ଜୀବମାନଙ୍କର ନିର୍ଣ୍ଣୟ ଅଥବା ନିର୍ଣ୍ଣୟ କରାଇପାରୁଥିବା ବୁଦ୍ଧି ଏହାଠାରୁ ପୃଥକ୍।''

ସନକାଦିମାନେ କହିଲେ, ''ବୁଦ୍ଧିର ବୃତ୍ତିରାଶି ହେଉପଛେ, ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି ଏ ସମସ୍ତର ଅନୁଭୂତି ଜୀବର ହିଁ ହୋଇଥାଏ ତ! ଉପାଧି ହେଉପଛେ, ଜନ୍ମ ମୃତ୍ୟୁ ତ ହୁଏ ନା!''

ହଂସ ଭଗବାନ କହିଲେ, ''ଜୀବଙ୍କୁ ଗୁଣବୃତ୍ତି ପ୍ରଦାନକରୁଥିବା ଏହି ସଂସାର ବନ୍ଧନକୁ ମୋତେ ସାକ୍ଷୀ ରୂପେ ତୁରୀୟରେ ସ୍ଥିତହୋଇ ତ୍ୟାଗ କର। ଏହା ଦୃଢ଼ରୂପେ ଜାଣ ଯେ ମୁଁ ଜାଗ୍ରତର ଅଭିମାନୀ ନୁହଁ, ସ୍ୱପ୍ନର ନୁହଁ, ସୁଷୁପ୍ତିର ନୁହଁ— ମୁଁ ଏହି ତିନିଙ୍କଠାରୁ ବିଲକ୍ଷଣ। 'ମାନିଲେ ଦିଅଁ, ନ ମାନିଲେ ପଥର'— ନିଜକୁ ଯେତେବେଳେ ବଦ୍ଧ ବୋଲି ମାନିନେଇଛି, ସେତେବେଳେ ସଂସାର ବନ୍ଧନ ଅଛି। ଯେତେବେଳେ ଏହି ବିଷୟରୁ ଉର୍ଦ୍ଧ୍ୱକୁ ଉଠି ନିଜର ଶୁଦ୍ଧସ୍ୱରୂପର ଜ୍ଞାନ ହୋଇଯିବ, ଚିତ୍ତ ଆଉ ଗୁଣର ପରସ୍ପର ସମ୍ବନ୍ଧର ତ୍ୟାଗ ହୋଇଯିବ; ସେତେବେଳେ ଚିତ୍ତ ଆଉ ବିଷୟର ସମ୍ବନ୍ଧ ତ ଆଉ ବାସ୍ତବିକ ନୁହେଁ, କଳ୍ପିତ, ନିଜକୁ ତହିଁରୁ ପୃଥକ୍ ଜାଣ। ଏହାପରେ ତହିଁରେ କିଛି ଆକର୍ଷଣ ଆଉ ରହେନାହିଁ। ଯାହାର ଆତ୍ମକଲ୍ୟାଣ ନିମିତ୍ତ ଇଚ୍ଛା ଥାଏ ତାକୁ ଅହଂକାରଜନିତ ବନ୍ଧନବୋଲି ଭାବି ଦୁଃଖ ଭୋଗକରିବା ହେଉଛି ସଂସୃତିର ହେତୁ। ଆତ୍ମା ନିମନ୍ତେ ତାହା ଅନର୍ଥର କାରଣ ହୋଇଥାଏ। ଏଣୁ ତିନି ଅବସ୍ଥାର ଅଭିମାନ ତ୍ୟାଗକରି ମୋର ତୁରୀୟ ଆତ୍ମାରେ ଅବସ୍ଥିତ ହୋଇଯାଅ। ସେତେବେଳେ ଏ ସମସ୍ତ ସାଂସାରିକ ଚିନ୍ତା ସ୍ୱତଃ ଦୂର ହୋଇଯିବ। ଯେପର୍ଯ୍ୟନ୍ତ ସଂଭେଦ ଭାବ ଥାଏ ସେ ପର୍ଯ୍ୟନ୍ତ ବନ୍ଧନ ରହିଥାଏ।''

ସନକାଦି ଋଷିମାନେ ପଚାରିଲେ, ''ଏହି ଭେଦ ବୁଦ୍ଧି କିପରି ଦୂର ହେବ ?''

ହଂସ ଭଗବାନ କହିଲେ, ''ଦୂର ହେବାର ଉପାୟ ହେଉଛି, ଚିନ୍ତାରେ, ବିବେକର ସହିତ, ବିମର୍ଷରେ, ତର୍କ-ବିତର୍କରେ ଅନେକ ପ୍ରକାର ଯୁକ୍ତିରେ ଏହା ଦୃଢ଼ରୂପେ ଅବବୋଧ କରିବା ଆବଶ୍ୟକ ଯେ ବାସ୍ତବରେ 'ମୁଁ' କିଏ। ଯେ ପର୍ଯ୍ୟନ୍ତ ବିଷୟରେ ହେଉଥିବ, ସେ ପର୍ଯ୍ୟନ୍ତ ଚୌରାଅଶୀ ଯୋନିରେ ଭ୍ରମଣ କରୁଥିବ।''

ସନକାଦିମାନେ କହିଲେ, ''ଭଗବନ୍! ଏହି ପ୍ରାଣୀ ଏ ସବୁ କଥା ଜାଣି ସୁଦ୍ଧା ବିଷୟ ପ୍ରତି ଆସକ୍ତ କାହିଁକି ହୁଏ ?''

ହଂସ ଭଗବାନ୍ କହିଲେ, ''ଭ୍ରମବଶ ଏପରି ହୁଏ। ସ୍ୱପ୍ନାବସ୍ଥାରେ କେହି ପୁରୁଷ ନ ଥାନ୍ତି କି ଛୁରିକା ନ ଥାଏ। ତେବେ ବି ସ୍ୱପ୍ନରେ କେହି ଛୁରୀ ଭୁସି ଦେଉଥାଏ। ସେତେବେଳେ ଆମକୁ ଯଥାର୍ଥ ରୂପରେ କେହି ଛୁରୀ ଭୁସି ଦେଉଥିବା ତ ଜଣାଯାଏ। ମିଥ୍ୟା ହେଲେ ବି ସ୍ୱପ୍ନରେ ଏହା ସତ୍ୟ ଭଳି ଜଣାଯାଏ— ପ୍ରତୀତ ହୁଏ। ସେତେବେଳେ ଆମେ ଶେଯରେ ଶୋଇ ସ୍ୱପ୍ନରେ ଏହା ଦେଖୁଛେ ବୋଲି ଜାଣିପାରୁନା। ସେତେବେଳେ ପ୍ରତ୍ୟକ୍ଷ ଦେଖୁ ଯେ ଆମେ ଗୋଟିଏ ଉପବନରେ ହସି ହସି ବୁଲୁଛେ, ଅଥବା ଅନ୍ୟ କୌଣସି କାମ କରୁଛେ, ଏହି ସମୟରେ କେହି ଜଣେ ଆସି ଆମକୁ ଛୁରିକା ଆଘାତ କଲା। ଏହିଭଳି ପୁରୁଷ, ଛୁରିକା ଆଘାତ ଏ ସବୁ ମିଥ୍ୟା ହୋଇଥିଲେ ବି ସତ୍ୟ ଦେଖାଯାଏ। ସେହିଭଳି ଅଜ୍ଞାନରେ ଶୋଇ ରହି ବି ସଂସାରୀ ଲୋକେ ନିଜକୁ ନିଜେ ଜାଗ୍ରତ ଥିବାଭଳି ମନେକରନ୍ତି ଓ ବିଷୟ ହେତୁ ଦୁଃଖ ଭୋଗ କରୁଥା'ନ୍ତି। ଠିକ୍ ଏହିଭଳି ଏକ ଆତ୍ମା ସତ୍ୟ, ଆଉ ଯାହା ସବୁ ଦେଖାଯାଏ, ଅନୁଭବ କରାଯାଉଥିବା ପଦାର୍ଥ ଅଛି ଏ ସମସ୍ତ ସ୍ୱପ୍ନରେ ଦେଖଥିବା ପଦାର୍ଥ ଭଳି ମିଥ୍ୟା। ଏହାର ଥାଏ ଅତ୍ୟନ୍ତାଭାବ। ଏ ସମସ୍ତ ମୋ ମାୟା ଯୋଗୁଁ ଦେଖାଯାଏ ଯେ ଇଏ ହେଉଛନ୍ତି ଦେବଦତ୍ତ, ଇଏ ଯଜ୍ଞଦତ୍ତ, ଏହା ଅଶ୍ୱ, ଇଏ ଯଜମାନ। ଏହା ହେଉଛି ଯଜ୍ଞ, ଏ ସମସ୍ତ ହେଉଛି ଯଜ୍ଞରୁ ପ୍ରାପ୍ତ ସକଳ ଗତି, ଏହା ଶୁଭ କର୍ମ, ଏହା ଅଶୁଭ କର୍ମ। ଏ ସମସ୍ତ ହେଉଛି ସ୍ୱପ୍ନରେ ଦେଖିଥିବା ପଦାର୍ଥ ଭଳି। ଜାଗ୍ରତ ହୋଇଯିବାପରେ ସେ ସମସ୍ତ ପଦାର୍ଥ ଯେପରି ଆଉ ରହି ନ ଥାଏ, କି ସେମାନଙ୍କଠାରୁ ପ୍ରାପ୍ତ ହୋଇଥିବା ସୁଖ ଦୁଃଖ ବି ନ ଥାଏ। ସେହି ସୁଖ ଦୁଃଖକୁ ଆମେ ଯେପରି ସତ୍ୟ ବୋଲି ବୁଝିଥିଲେ, ସେହିଭଳି ଜ୍ଞାନ ହୋଇଯିବା ପରେ ନା ଚିତ୍ତ ରହେ ନା ବିଷୟ— ଏ ସମସ୍ତ ବିଲୀନ ହୋଇଯାଏ।''

ସନକାଦିମାନେ କହିଲେ, ''ଭଗବନ୍! ଏହି ସଂସାର ଆମକୁ ଅନବରତ ଦେଖୁଥିବାରୁ ତାହା ସତ୍ୟ ବୋଲି ପ୍ରତୀତ ହେଉଛି। ଏହାକୁ ମିଥ୍ୟାବୋଲି ମାନିବାକୁ ଆମେ ମନେ ମନେ ବହୁତ ଇଚ୍ଛାକରୁଛୁ। କିନ୍ତୁ ଆଠ ପ୍ରହରଯାକ ଆମ ମନ ଟିକିଏ ବୋଲି ଏହା ମିଥ୍ୟା କହିବାକୁ ଆଦୌ ରାଜି ହେଉନାହିଁ। ଆମେ ଏହାକୁ ସବୁବେଳେ ମିଥ୍ୟା ବୋଲି କିପରି ମନକୁ ବୁଝାଇ ପାରିବୁ ? ଆମେ କିପରି ଏଥିରୁ ନିଜକୁ ଆତ୍ମରୂପ ଭାବି ପୃଥକ୍ କରିବୁ ?''

ମହର୍ଷି ସୂତ କହୁଛନ୍ତି, ''ହେ ମୁନିଗଣ! ସନକାଦିମାନେ ହଂସ ଭଗବାନଙ୍କୁ ଯେତେବେଳେ ସଂସାର ଭ୍ରମ ନିବାରଣ ପ୍ରଶ୍ନ ପଚାରିଲେ, ସେ ଯେଉଁଭଳି ଉତ୍ତର ଦେଇଥିଲେ ତାହାର ବର୍ଣ୍ଣନା ଭଗବାନ ଶ୍ରୀକୃଷ୍ଣଚନ୍ଦ୍ର ଯେଉଁଭଳି ଉଦ୍ଧବଙ୍କୁ କହିଥିଲେ ତାହା ମୁଁ ତୁମମାନଙ୍କୁ ଶୁଣାଉଛି। ତୁମେମାନେ ଏହି ଗୂଢ଼ ଜ୍ଞାନମୟ ଉପଦେଶକୁ ଶ୍ରଦ୍ଧା ଭକ୍ତି ସହକାରେ ଶ୍ରବଣ କର।''

### ଛପ୍ପୟ

ଦୋଉ ଜୀବ ଉପାଧି ଶୁଦ୍ଧ ନିଜ ରୂପ ନିହାରୌ।
ବୁଦ୍ଧି ଅବସ୍ଥା ତୀନି ଆତମା ଇନ ତେଁ ନ୍ୟାରୌ॥
ମୁକ୍ତ ତୁରୀୟ ମହଁ ପହୁଁଚି ଜଗତ ବନ୍ଧନ ନହିଁ ଲାଗୈ।
ଚିତ୍ତ ବିଷୟ, ନସି ଜାୟଁ ଅହଂତା ଅପନୀ ତ୍ୟାଗୈଂ॥
ଭେଦ ବୁଦ୍ଧି ଜବ ତକ ନହୀଂ, ନସୈ ନ ତବ ତକ ବୁଦ୍ଧି ହୌ।
ଜଗ ପ୍ରପଞ୍ଚ ମିଥ୍ୟା ଅସତ୍, ବ୍ରହ୍ମ ସତ୍ୟ ଶିବ ଶୁଦ୍ଧ ହୌ॥

●

# ଭ୍ରମ ନିବାରଣର ଉପାୟ

ଏବଂ ବିମୃଶ୍ୟ ଗୁଣତୋ ମନସସ୍ତ୍ର୍ୟବସ୍ଥା
ମନ୍ମାୟୟା ମୟି କୃତା ଇତି ନିଶ୍ଚିତାର୍ଥାଃ।
ସଂଛିଦ୍ୟ ହାର୍ଦମନୁମାନସଦୁକ୍ତିତୀକ୍ଷ୍ଣ-
ଜ୍ଞାନାସିନା ଭଜତ ମାଖିଲସଂଶୟାଧିମ୍॥ ★

[ଶ୍ରୀ.ଭା: ୧୧ସ୍କ. ୧୩ଅ. ୩୩ ଶ୍ଳୋକ]

---



ଜାଗ୍ରତ ସ୍ୱପନ ସୁଷୁପ୍ତି । ଗୁଣରୁଁ ତିନି ବୁଦ୍ଧି ବୃତ୍ତି ॥
ସର୍ବ ଶରୀରେ ଜୀବରୂପେ । ଏ ଜୀବ ବସଇ ପ୍ରତ୍ୟକ୍ଷ ॥
ଯେ ପ୍ରାଣୀ ଜାଗ୍ରତ ଦେହଗତେ । ଇନ୍ଦ୍ରିୟଭୋଗେ ନାନାମତେ ॥
କରଇ ଅନୁକ୍ଷଣେ ପ୍ରୀତି । ଜଗ୍ରତେ ସ୍ୱପ୍ନେ ତା ଭ୍ରାନ୍ତି ॥
ଆତ୍ମା ତାହା ନୁହେଁ ତେଣେ । ଏ ସର୍ବ ଉପାଧି ତ୍ରିଗୁଣେ ॥
ସାଧୁଙ୍କ ମୁଖାମୃତ ବାଣୀ । ଜ୍ଞାନ ଖଡ୍ଗ କରେ ଘେନି ॥
ଗୁରୁବଚନ ଅଭ୍ୟାସେ । ଚିତ୍ତ ବନ୍ଧିମା କାଟ ବଶେ ॥
ସର୍ବ ସଂଶୟମନୁ ତେଜ । କେବଳ ଭାବେ ମୋତେ ଭଜ ॥

[ଭାଗବତ : ଜଗନ୍ନାଥ ଦାସ : ୧୧ ସ୍କ ୧୪ ଅ]

## ଛପ୍ପୟ

ସର୍ବ ନିୟାମକ ନିତ୍ୟ ନିରଞ୍ଜନ ଆତ୍ମା ସଦ୍‌ଚିତ।
ଜାଗ୍ରତ ସ୍ୱପ୍ନ ସୁଷୁପ୍ତି ସବହିଁ ମାୟାମହଁ କଳ୍ପିତ॥
ଜ୍ଞାନ ଖଡ୍‌ଗକୁଁ ଧାରି ତୀକ୍ଷ୍ଣ ଯୁକ୍ତି ନିତେଂ କରି କରି।
ଅହଂକାରକୁଁ କାଟି ମୋଇ ଭଜି ଜଗକୁଁ ପରିହରି॥
ନଶ୍ୱର ଦୃଶ୍ୟ ପ୍ରପଞ୍ଚ ଜିହ, ଭାସେ ନାନା ରୂପମହଁ।
ଦୀଶୈ ମାୟାମୟ ଦ୍ୱିବିଧି, ମିଥ୍ୟାସ୍ୱପ୍ନ ସ୍ୱରୂପମହଁ॥

ଅନ୍ଧାରରେ ଆମର ଯଦି ଭୂତର ଭ୍ରମ ହୋଇଯାଏ ତେବେ ମନ ଭୂତର ସର୍ବାଙ୍ଗକୁ ସ୍ୱତଃ କଳ୍ପନାକରିବାରେ ଲାଗେ। ଭୂତର ଲମ୍ବାଲମ୍ବା ଦାଢ଼ି ନ ଥିଲେ ବି ଆମକୁ ତାହା ଦେଖାଯାଏ। ଭୂତର ଲମ୍ବାଲମ୍ବା ଗୋଡ଼ ଉପରକୁ ଟେକିହୋଇ ନୃତ୍ୟକରିବା ଭଳି ଆମକୁ ଲାଗେ। ତା'ର ବିକୃତ ମୁଖ ଅନ୍ଧାରରେ ଆମଆଡ଼କୁ ମାଡ଼ିଆସୁଥିବା ଭଳି ଆମକୁ ଦେଖାଯାଏ। ଠିକ୍ ସେତିକିବେଳେ କେହି ଯଦି ଆଲୋକ ଧରି ସେଠାକୁ ଚାଲିଆସେ ତେବେ ଆମେ ନା ଭୂତକୁ ଦେଖୁ ନା ଭୂତର ଛାୟାକୁ। ଆଲୋକକୁ ଦେଖି ଭୂତ ପଳାଇଯାଇ ଥାଇପାରେ, କଥାଟା ସେଠାରେ ନାହିଁ; ଭୂତ ତ ସେଠାରେ ବିଲକୁଲ ନ ଥିଲା। ତାହାଥିଲା ମିଥ୍ୟା, ଭ୍ରମ। ଠିକ୍ ସେହିଭଳି ପ୍ରପଞ୍ଚରେ ଯେଉଁ ଦ୍ୱୈତ ଦେଖାଯାଏ, ତାହା ଜ୍ଞାନ ହୋଇଯିବାପରେ ନଷ୍ଟ ହୋଇଯାଏ। ସେଥିରେ କିଛି କଥା ନାହିଁ। ଦ୍ୱୈତର ଅସ୍ତିତ୍ୱ ହିଁ ନାହିଁ। ଭ୍ରମବଶତଃ ସେପରି ପ୍ରତୀତ ହେଉଥାଏ। ଜ୍ଞାନ ହୋଇଯିବାପରେ ସେପରି ପ୍ରତୀତ ଆଉ ହୁଏନାହିଁ।

ମହର୍ଷି ସୂତ କହୁଛନ୍ତି, ହେ ମୁନିଗଣ! ଭ୍ରମ ନିବାରଣର ଉପାୟ କହିବାକୁ ଯାଇ ହଂସ ଭଗବାନ ସନକାଦି ମୁନିକୁମାରଙ୍କୁ କହିଲେ, "ହେ କୁମାରଗଣ! ଆତ୍ମାରେ ଦ୍ୱୈତ ନାହିଁ। ବିଶ୍ୱ, ତୈଜସ ଆଉ ପ୍ରାଜ୍ଞ ଏ ସମସ୍ତ ହେଉଛି ଏକ ଆତ୍ମାର ସଂଜ୍ଞାସମୂହ। ଜାଗ୍ରତ ଅବସ୍ଥାରେ ତାହା ସମସ୍ତ ଇନ୍ଦ୍ରିୟଙ୍କ ଦ୍ୱାରା ବାହାରର କ୍ଷଣିକ ପଦାର୍ଥଗୁଡ଼ିକୁ ଉପଭୋଗ କରେ। ଯାହାର ଏହି କଥାରେ ଅଭିମାନ ନ ଥାଏ ଯେ ମୁଁ ଜାଗ୍ରତ ଅବସ୍ଥାରେ ନାନା କାର୍ଯ୍ୟ କରୁଛି, ଅନେକ କଥା ଦେଖୁଛି, ଏତେ ଦୂର ବାଟ ମୁଁ ଚାଲିପାରୁଛି ତାହା; ଏବଂ ସ୍ୱପ୍ନରେ ମୁଁ ଯେଉଁ ବାସନାମୟ ଜଗତର ନାନା ବିଷୟକୁ ହୃଦୟରେ ଅନୁଭବ କରୁଛି, ଭୋଗକରୁଛି, ଆଉ ସେ ସବୁ ଭୋଗ କରିବାଦ୍ୱାରା ସୁଖୀ, ଦୁଃଖୀ ହେଉଛି, ତାହା ସବୁ; ତଥା ଯେଉଁ ସୁଷୁପ୍ତି ଅବସ୍ଥାରେ ମୁଁ ମନ ଆଉ ଇନ୍ଦ୍ରିୟଗୁଡ଼ିକର ଲୟ ହୋଇଯିବା ପରେ ସାକ୍ଷୀରୂପରେ ଯିଏ ରହିଥାଏ ତାହା– ଏସବୁ ଏକ ହିଁ ହୋଇଥାଏ। ଏକ, ଗୋଟିକର ଅବସ୍ଥା ଭେଦରେ ତିନୋଟି ନାମ ହୋଇଥାଏ। ଏହାକୁ ଏହିପରି ବୁଝିବାକୁ ହେବ।

ଜଣେ ଶେଠ। ତା'ର ଗୋଟିଏ ଛୋଟିଆ ମନ୍ଦିର ଅଛି। ମନ୍ଦିରରେ ଜଣେ ପୂଜାରୀକୁ ରଖିଛି। ସେ ଭଗବାନଙ୍କୁ ଭୋଗ ଦିଏ। ସେ ହିଁ ଭଗବାନଙ୍କ ପାଖରେ ପୁରାଣ ପାଠ କରେ। ଯେତେବେଳେ ସେ ଭୋଜନ ପ୍ରସ୍ତୁତକରେ ସେତେବେଳେ ତାକୁ ପୂଜାରୀ ବୋଲି ଲୋକ ଡାକନ୍ତି। ଯେତେବେଳେ ପୂଜାକରେ ତାକୁ ପୂଜକ ବୋଲି କୁହନ୍ତି। ପୁରାଣ କଥା ଶୁଣାଉଥିବା ବେଳେ ତାକୁ ପଣ୍ଡିତ ବୋଲି କୁହନ୍ତି। ପୂଜାରୀ,

ପୂଜକ ଓ ପଣ୍ଡିତ ଏହି ତିନି ଜଣ ହେଉଛନ୍ତି ସେଇ ଏକ ବ୍ୟକ୍ତି। କିନ୍ତୁ ଅବସ୍ଥା ଭେଦରେ ଏପରି ତାକର ପ୍ରଭେଦ ହୋଇଥାଏ। ଆତ୍ମା ହେଉଛି ଏକ। ବାସ୍ତବରେ ମୁଁ ଏହି ତିନିର ଊର୍ଦ୍ଧ୍ୱରେ ଥିବା ତୁରୀୟ।''

ସନକାଦି ମୁନିମାନେ ପଚାରିଲେ, ''ଭଗବନ! ଜାଗ୍ରତ ଅବସ୍ଥାରେ ତ ତାହା ଇନ୍ଦ୍ରିୟଙ୍କର ନିୟାମକ ହୋଇଥାଏ। ସ୍ୱପ୍ନାବସ୍ଥାରେ ବାସନାମୟ ବିଷୟର ଯାହା ଅନୁଭୂତ ହୁଏ ତା'ର ସାକ୍ଷୀ ରୂପେ ରହେ। କିନ୍ତୁ ସୁଷୁପ୍ତି ଅବସ୍ଥାରେ ତ ସମସ୍ତ ଇନ୍ଦ୍ରିୟ ଆଉ ମନ ବିଲୀନ ହୋଇଯାଏ, ସେତେବେଳେ ଆତ୍ମା ସାକ୍ଷୀରୂପରେ ରହେ କିପରି? କେଉଁ ବସ୍ତୁକୁ ଅନୁଭବ କରେ। ଏଇ କଥା ଆମ ବୁଦ୍ଧିରେ ପ୍ରବେଶ କରୁନାହିଁ।''

ହଂସ ଭଗବାନ କହିଲେ, ''ମୁଁ ଶୋଇଯାଇଛି' ଏ ଭଳି କାହାକୁ ପ୍ରତୀତ ହେଉଛି? ଶୋଇବା ପରେ ଯିଏ ଉଠେ ଆଉ କହେ 'ଆଜି ତ ଖୁବ୍ ଗାଢ଼ ନିଦ ହେଲା, ଗୋଟିଏ ବୋଲି ସ୍ୱପ୍ନ ଦେଖିଲି ନାହିଁ। ଶେଯରେ ପଡ଼ୁପଡ଼ୁ ଯେଉଁ କଡ଼ ମାଡ଼ି ଶୋଇଲି ସେଇ କଡ଼ରେ ଉଠିଲି।' ଯେତେବେଳେ ନିଦ୍ରାରେ ସବୁ ଲୀନ ହୋଇଯାଇଥିଲା ସେତେବେଳେ ସୁଖନିଦ୍ରା ଆସିଲା—ଏହା କିଏ ଅନୁଭବ କଲା? ସୁଖ ଅନୁଭବ କଲା, ଏଥିରୁ ପ୍ରତୀତ ହେଉଛି ସମସ୍ତେ ଶୋଇଯିବାପରେ ବି ଶୋଇବା ସୁଖକୁ ଅନୁଭବ କରିପାରୁଥିବା କେହି ଜାଗ୍ରତ ବି ରହିଛି। ଯିଏ ଜାଗ୍ରତ ରହିଛି ସେ ହିଁ ଆତ୍ମା। ତାହା ତିନି ଅବସ୍ଥାରେ ସ୍ମୃତି ସହିତ ଯୁକ୍ତ ହୋଇଥିବା ହେତୁ ସେଇ ତିନିଙ୍କର ସାକ୍ଷୀ ତଥା ଇନ୍ଦ୍ରିୟ ଆଉ ମନର ହେଉଛି ନିୟାମକ।''

ସନକାଦି ମୁନିମାନେ ପଚାରିଲେ, ''ତେବେ ସେହି ଆତ୍ମାର ଅନୁଭବ କିପରି ହେବ?''

ହଂସ ଭଗବାନ କହିଲେ, ''ସମସ୍ତ ସଂଶୟର ଆଶ୍ରୟ ରୂପ ହେଉଛି ଏଇ ଅହଂକାର। ଏଣୁ ସୂକ୍ଷ୍ମବୁଦ୍ଧିରେ ବିଚାରକଲେ ଜାଗ୍ରତ, ସ୍ୱପ୍ନ ଆଉ ସୁଷୁପ୍ତି ଏହି ତିନି ଅବସ୍ଥା ହେଉଛି। ଆତ୍ମା ତ ସବୁବେଳେ ଜାଗ୍ରତ। ସଦା ଏକରସ। ମନର ଏହି ଅବସ୍ଥା ସବୁ ମୋ ମାୟାର ଗୁଣଦ୍ୱାରା ମୁଁ ପରମାତ୍ମାରେ ହିଁ କଳ୍ପିତ ହୋଇଛି। ଏହାକୁ ଅନୁମାନ କରାଯାଉ। ଯେପରି 'ମୋ ଆଖିକୁ କାଟିବାରେ ଲାଗୁଛି, ମୋ କାନକୁ ଭଲ ଶୁଣାଯାଉ ନାହିଁ।' ଏଥିରୁ ପ୍ରତୀତ ହେଉଛି ଯେ ଆଖି, କାନ, ନାକ ଏହା ସବୁ ପୃଥକ୍। ଆଉ ଯିଏ ମୋ'ର କହୁଛି, ସେ ବି ପୃଥକ୍। କହନ୍ତି, 'ଆଜି ତ ମୋ ମନ ବିଚଳିତ ହୋଇଗଲା।' 'ସେଠାକୁ ଯିବା ପରେ ମୋ'ର ମନହେଲା ଏଇ କାମରେ ମୁଁ ଅତ୍ୟଧିକ ଦାନ ଦିଅନ୍ତି କି।' ଏ ସବୁ ବାକ୍ୟରୁ ପ୍ରତୀତ ହେଉଛି' ମନ ହେଉଛି ପୃଥକ୍, ଆଉ ଏହାର ନିୟାମକ ମନଠାରୁ ବିଲକ୍ଷଣ। ପୁଣି କୁହନ୍ତି, 'ଆପଣ ଏଇକଥାକୁ ବାରମ୍ବାର କହୁଛନ୍ତି, କିନ୍ତୁ ମୋ ମଗଜରେ ଏହା ପ୍ରବେଶ କରୁନାହିଁ।' ଏଥିରୁ ସ୍ପଷ୍ଟ ଜଣାଯାଉଛି ଯେ, ମୋ'ର କହିବା ଲୋକ ହେଉଛି ଅନ୍ୟ, ଆଉ ବୁଦ୍ଧି ହେଉଛି ଅନ୍ୟ। ଶାସ୍ତ୍ରରେ ବି ବାରମ୍ବାର ଉଲ୍ଲେଖ ଅଛି, 'ଅରେ! ଆତ୍ମାକୁ ହିଁ ଦେଖ, ତାକୁ ହିଁ ମନନ କର।' ଏ ଭଳି ଅନୁମାନ ତଥା ଋଷିମାନଙ୍କର ବାକ୍ୟ ସାହାଯ୍ୟରେ ଜ୍ଞାନରୂପୀ ଖଡ଼୍‌ଗକୁ ଧାରୁଆ କରିଦେବା ଆବଶ୍ୟକ। ସେଇ ତୀକ୍ଷ୍ଣ

ଖଡ଼୍‌ଗଦ୍ୱାରା ଏ ସମସ୍ତ ସଂଶୟର ଆଶ୍ରୟରୂପ ଅହଂକାରକୁ କାଟି, ନିଜ ହୃଦୟରେ ବିରାଜମାନ, ମୋତେ, ସଚ୍ଚିଦାନନ୍ଦଘନ ଆତ୍ମରୂପର ଭଜନ କର।''

ସନକାଦିମାନେ କହିଲେ, ''ଭଗବନ୍! ଆପଣ ଏହି ସଂସାରକୁ ଅସତ୍ ବୋଲି କହୁଛନ୍ତି। କିନ୍ତୁ ଏହା ତ ସବୁବେଳେ ଆମ ମୁଣ୍ଡଉପରେ ଜମି ବସିଛି। ଏହାର ନିବାରଣ କିପରି କରିବା ?''

ହଂସ ଭଗବାନ କହିଲେ, ''ଆରେ ଭାଇ! ଏଥିରେ କରିବାର କ'ଣ ଅଛି! ଭ୍ରାନ୍ତରୂପ ଏହି ସଂସାରକୁ କେବଳ ମନର ବିଳାସ ବୋଲି ଜାଣ। ଏହା କେବଳ ଦେଖାଯାଉଥାଏ, ଏଥିରେ ସାର ବୋଲି କିଛି ନାହିଁ। ଇନ୍ଦ୍ରଧନୁ ଭଳି, ଜଳର ନୀଳିମା, ଆକାଶର ଛାୟା, ମୃଗ ମରୀଚିକା ଆଦି ଦେଖା ତ ଯାଏ; କିନ୍ତୁ ସେ ସବୁ କିଛି ନ ଥାଏ। ଯାହା ସବୁ ଦେଖାଯାଏ ତାହା ନାଶବାନ୍। ଦେଖ, ପିଲାମାନେ ଗୋଟିଏ ମାଟିପାତ୍ରରେ ଅଙ୍ଗାର ଖଣ୍ଡେ ରଖି, ନିଆଁଖଣ୍ଡେ ତହିଁରେ ରଖି ଅତି ବେଗରେ ଘୂରାନ୍ତି। ବେଗରେ ଘୂରାଇବାରୁ ଗୋଲାକାର ଅଗ୍ନିପିଣ୍ଡର ଚକ୍ର ଭଳି ସ୍ପଷ୍ଟ ଦେଖାଯାଏ। ସମସ୍ତେ ତାକୁ ଦେଖୁଥା'ନ୍ତି। ପ୍ରକୃତରେ ତା' ଗୋଲାକାର ନୁହେଁ, ଭ୍ରମ ମାତ୍ର। ଆଖିରେ ଆଙ୍ଗୁଠି ଗେଂଜି ଦୁଇଟି ଚନ୍ଦ୍ରକୁ ଦେଖନ୍ତି। କିନ୍ତୁ ଦୁଇଟି ଚନ୍ଦ୍ର ଗୋଟିଏ ଆକାଶରେ ଥାଏ କି? ପାଣି ଉପରେ ପାଣିଫୋଟକା ଥାଏ। ତାହା ପାଣିଠାରୁ ଭିନ୍ନ ନୁହେଁ। ଜଳର ଚଞ୍ଚଳ ତରଙ୍ଗ, ଜଳ ଉପରେ ସ୍ପଷ୍ଟ ତରଙ୍ଗ ଦେଖାଯାଏ। କିନ୍ତୁ ତାହା ଜଳ ଭିନ୍ନ ଅନ୍ୟ କିଛି ନୁହେଁ। ଠିକ୍ ସେହିଭଳି ଏହା ଅତ୍ୟନ୍ତ ଚଞ୍ଚଳ କ୍ଷଣଭଙ୍ଗୁର ନାଶବାନ। ଜଗତ୍ ସେଇ ଏକା ବିଜ୍ଞାନରେ ନାନା ରୂପରେ ଦୃଶ୍ୟ ହୁଏ। ସେଇ ବିଜ୍ଞାନରେ ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି ଏହି ତିନି ପ୍ରକାରର ବିକଳ୍ପ ମାୟାମୟ ହିଁ ଅଟେ। ସ୍ୱପ୍ନରୂପ ଅଟେ। ଏହା ଦୂର କରିବାର ଉପାୟ ହେଉଛି ସେସବୁ ଆଡୁ ଆଖି ବନ୍ଦ କରିଦେବା। ବିଷୟପ୍ରତି ଯେଉଁ ତୃଷ୍ଣା ଅଛି, ତହିଁରୁ ରହିତ ହୋଇଯାଅ। ଯଦି ଏହି ଜଗତରୁ ଦୃଷ୍ଟି ଦୂରକରିଦେଇ ଦୃଷ୍ଟିକୁ ଅନ୍ତର ମଧ୍ୟକୁ ନେଇ ପାରିବ, ମୌନ ରହି ଆତ୍ମତତ୍ତ୍ୱକୁ ହିଁ ଅନୁଭବ କରିବ, ତେବେ ତୁମକୁ ଅମୃତତ୍ତ୍ୱ ପ୍ରାପ୍ତ ହୋଇପାରିବ। ଏଥର ତୁମେ ଏ ଆଡ଼େ ଧ୍ୟାନ ଦିଅନାହିଁ। ନିଜାନନ୍ଦରେ ପରିପୂର୍ଣ୍ଣ ରହି ତଥା ନିଶ୍ଚେଷ୍ଟ ହୋଇ ଆତ୍ମାନନ୍ଦ ସୁଖ ଅନୁଭବ କର।''

ସନକାଦିମାନେ କହିଲେ, ''ପ୍ରଭୁ! ଏ ସବୁ କଥା ତ ସତ୍ୟ। କିନ୍ତୁ ଭୋକ ଯେତେବେଳେ ଲାଗେ, ଶୋଷ ଯେତେବେଳେ ଲାଗେ, ସେତେବେଳେ ସବୁ ଜ୍ଞାନ ଭୁଲି ହୋଇଯାଏ। ସେତେବେଳେ ଏହି ଅସତ୍ୟ ସଂସାର ସତ୍ ପ୍ରତୀତ ହେବାରେ ଲାଗେ।''

ଭଗବାନ ହସି ହସି କହିଲେ, ''ଆରେ ଭାଇ! କ୍ଷୁଧା ପିପାସା ଆଦି ତ ଆତ୍ମାର ଧର୍ମ ନୁହେଁ। ଭୋକ ଶୋଷ ସମୟରେ ସଂସାର ବିଷୟରେ ମନେ ଯଦି ପଡ଼ିଯାଏ ତେବେ ସେପରି କିଛି କ୍ଷତି ନାହିଁ। ସ୍ୱପ୍ନ ସମାପ୍ତ ହେବାପରେ ଜାଗ୍ରତ ହେଲେ ସ୍ୱପ୍ନରେ ଦେଖିଥିବା ସିଂହ କଥା ଯଦି ମନେପଡ଼ିଯାଏ ତେବେ ତାହା କ୍ଳେଶ ତ ଦିଏ ନାହିଁ। ଭୟ ତ ଦିଏ ନାହିଁ। ଏହିଭଳି ଯଦି ଥରେ ଜ୍ଞାନ ପରିପୂର୍ଣ୍ଣ ହୋଇଗଲା ଏହା ଦୃଢ଼ରୂପେ ଜାଣି ହୋଇଗଲା ଯେ ସଂସାର କିଛି ବସ୍ତୁ ନୁହେଁ, ତେବେ ତାହା

ପ୍ରତୀତ ହେଉଥାଉ ପଛେ, ଏହା ଭ୍ରମ ଉତ୍ପନ୍ନ କରିପାରେ ନାହିଁ। ସେପରି ଦେଖିବାକୁ ଗଲେ ଯେ ପର୍ଯ୍ୟନ୍ତ ଦେହ ଥାଏ, ସେ ପର୍ଯ୍ୟନ୍ତ ସଂସାର ବି ଥାଏ। ସେ ଯେତେ ବଡ଼ ଜ୍ଞାନୀ ହୋଇଥାଆନ୍ତୁ ପଛେ, ଦେହପାତ ପର୍ଯ୍ୟନ୍ତ ଏହି ସଂସାର ପ୍ରତୀତ ହେଉଥାଏ।''

ସନକାଦିମାନେ ପଚାରିଲେ, ''ପ୍ରଭୁ! ଯେଉଁମାନଙ୍କର ସଂସାରର ମିଥ୍ୟାତ୍ୱର ପରିପୂର୍ଣ୍ଣ ଜ୍ଞାନ ହୋଇଗଲା, ସେମାନଙ୍କର ସ୍ଥିତି କିପରି ହୋଇଥାଏ ? ସେମାନେ ସଂସାରରେ କିପରି ବ୍ୟବହାର କରନ୍ତି ?''

ମହର୍ଷି ସୂତ କହୁଛନ୍ତି, ''ହେ ମୁନିଗଣ! ହଂସ ଭଗବାନ ସନକାଦିଙ୍କୁ ଜ୍ଞାନୀଙ୍କର ସ୍ଥିତି ଯେପରି ହୋଇଥାଏ କହିଥିଲେ, ତାହା ବର୍ଣ୍ଣନା କରୁଛି।''

**ଛପ୍ପୟ**

ନିତ୍ୟାନନ୍ଦମହଁ ପୂର୍ଣ୍ଣ ମୌନ ଗହି ତୃଷ୍ଣା ତ୍ୟାଗୌ।
ସ୍ୱପ୍ନ ଜଗତମହଁ ପରେ ମୋହ ନିଦ୍ରାତେଂ ଜାଗୌ॥
ସ୍ୱପ୍ନ ପଦାରଥ ଯାଦ ହୋହି ଜାଗ୍ରତ ମହଁ ଜବଈ।
କରେଂ ନ କଛୁ ଅନର୍ଥ ବିଜ୍ଞ ସମଝେଁ ତ୍ୟୋଂ ସବଈ॥
ମଦିରାତେଂ ଉନମତ୍ତ ନର, ମୋରୀମହଁ ଗିର ଜାତୁ ହୈ।
ନଙ୍ଗୋ ହ୍ୱଙ୍କ ହସି ପରୈ, ସୁଧ୍‌ବୁଧ୍ ସକଲ ଭୁଲାତ ହୈ॥



# ହଂସଗୀତାର ସମାପ୍ତି

**ମୟୈତଦୁକ୍ତଂ ବୋ ବିପ୍ରା ଗୁହ୍ୟଂ ଯତ୍ ସାଂଖ୍ୟଯୋଗୟୋଃ।**
**ଜାନୀତ ମାଽଗତଂ ଯଜ୍ଞଂ ଯୁଷ୍ମଦ୍‌ଧର୍ମବିବକ୍ଷୟା॥ ★**

[ଶ୍ରୀ ଭା. ୧୧ସ୍କ. ୧୩ଅ. ୩୮ଶ୍ଳୋକ]

---

★ ଶୁଣ ହେ ସନକାଦି ଜନ । ତୁମ୍ଭେ ଯେ ବ୍ରହ୍ମାଙ୍କ ନନ୍ଦନ ॥
ପରମ ସାଂଖ୍ୟ ଯୋଗ ମାର୍ଗେ । ଭାବେ କହିଲି ତୁମ୍ଭ ଆଗେ ॥
ସର୍ବ ଆଶ୍ରୟ ଯେଣୁ ମୁହିଁ । ଯଜ୍ଞେ ସକଳ ହବି ଖାଇ ॥
ଏଣୁ ମୁଁ ସର୍ବ ଯଜ୍ଞ ପତି । ମୁଁ ସାଂଖ୍ୟରୂପେ ସତ୍ୟବ୍ରତୀ ॥
ପରମ ଯୋଗ ତୁମ୍ଭ ଆଗେ । ମୁହିଁ କହିଲି ଅନୁରାଗେ ॥
ଏ ଯୋଗ ଶୁଣି ଚିତ୍ତେ ଧଇ । ସଂସାର ପର୍ଯ୍ୟଟନେ କର ॥

[ଭାଗବତ ; ଜଗନ୍ନାଥ ଦାସ : ୧୧ ସ୍କ. ୧୪ ଅ]

## ଛପ୍ପୟ

ଯୋଂ ହୀ ଜ୍ଞାନୀ କରେଂ କର୍ମ ଦୀବେଂ ଅମୃତ ରସ।
ତନମହଁ ନହିଁ ଆସକ୍ତ ହୋହିଁ ତନ କାଜ ଦୈବବଶ॥
ଦ୍ୱିଜଗନ! ମୋକୁଁ ପରମ ପୁରୁଷ ପରମେଶ୍ୱର ମାନୌ।
ସାଂଖ୍ୟ, ସତ୍ୟ, ଶ୍ରୀ, କୀର୍ତି ପରମଗତି ସବକୀ ଜାନୌ॥
ସବ ମୁନି ମିଲି ପୂଜା କରୀ, ହଂସ ତହାଁତେଂ ଉଡ଼ି ଗୟେ।
ସୁନ୍ୟୋ ହଂସ ଗୀତା ବିମଲ, ଅଜ ମୁନି ଗନ ପ୍ରମୁଦିତ ଭୟେ॥

ରାତିରେ ଶୁଖିଲା 'ବରଡ଼ା ଆମ ମନରେ ସେ ପର୍ଯ୍ୟନ୍ତ ଭୟ ଉପୁନ୍ନ କରୁଥାଏ, ଯେ ପର୍ଯ୍ୟନ୍ତ ଆମେ ତା' ବିଷୟରେ ଯଥାର୍ଥ ରୂପରେ ଜାଣି ନ ଥାଉ। ଆମେ ଯେତେବେଳେ ପ୍ରକୃତ କଥା ଜାଣିନେଉ, ଅନ୍ଧାରରେ ଯାହା ଆମକୁ ଚୋର ବା ଭୂତବୋଲି ଜଣା ପଡୁଥିଲା, ତାହା ଆଉକିଛି ନୁହେଁ, ଶୁଖିଲା ବରଡ଼ାମାତ୍ର, ଆମର ସବୁ ପ୍ରକାର ଭୟଭ୍ରାନ୍ତି ଦୂର ହୋଇଯାଏ। ଭୟ ଦୂର ହୋଇଯିବା ଅର୍ଥ ନୁହେଁ ଯେ ଶୁଖିଲା ବରଡ଼ା ସେଠାରୁ ଚାଲିଗଲା, କଥାହେଉଛି ବରଡ଼ା ଯେପରି ଥିଲା ସେପରି ଥାଏ, ତାହା ସେପରି ଥିଲେ ବି ଆମର ଭୟ ଆଉ ନ ଥାଏ।

ସ୍ୱପ୍ନାବସ୍ଥାରେ ଜଣେ କଳ୍ପିତ ହତ୍ୟାକାରୀ ଦୃଶ୍ୟ ହୁଏ, ତା' ହାତରେ ଗୋଟିଏ ଖଡ୍‌ଗ ଦେଖାଯାଏ। ଖଡ୍‌ଗଦ୍ୱାରା ସେ ଆମ କର୍ଣ୍ଣକୁ ଆଘାତ କରୁଥିବା ଦେଖାଯାଏ। ଏ ସମସ୍ତ କଳ୍ପିତ ବସ୍ତୁ। ତେବେ ବି ଆମକୁ ଡର ଲାଗେ। ଆମେ ଚିତ୍କାର କରି ଉଠୁ। କଷ୍ଟ ପାଉ। ସହସା ଉଠିପଡୁ। ନିଦ ଭାଙ୍ଗିଯିବା ପରେ ବି ସେଇ କଳ୍ପିତ ହତ୍ୟାକାରୀ, ଖଡ୍‌ଗ, କର୍ଣ୍ଣକୁ ଆଘାତ, ମନେପଡ଼େ— ଏ ସମସ୍ତ ବି କଳ୍ପନା ଶକ୍ତି (କାରଣ ବାସ୍ତବରେ, ପ୍ରତ୍ୟକ୍ଷରେ ସେପରି କେହି ନ ଥା'ନ୍ତି), କିନ୍ତୁ ଆମକୁ ଆଉ ଡର ଲାଗେ ନାହିଁ। କାରଣ ଏବେ ଆମେ ନିଦରୁ ଉଠିଯାଇଛେ। ଚେତା ହୋଇଯାଇଛେ, ଜାଗ୍ରତ ହୋଇଯାଇଛେ। ଆମର କେବଳ ମନେପଡ଼ିଯାଉଛି। ଆମେ ସେତେବେଳେ ଜାଣୁଛେ ଯେ ଏ ସମସ୍ତ ସ୍ୱପ୍ନର କଳ୍ପିତ ବସ୍ତୁ, ଆଉ ତେଣୁ ମିଥ୍ୟା। ଏଥିରେ ଭୟ କରିବାର କିଛି ନାହିଁ।

ଠିକ୍ ଏହିଭଳି ଜ୍ଞାନୀଙ୍କର ଶଂଘ ଉଠି ନ ଥାଏ। କି ସେମାନଙ୍କର ଦୃଷ୍ଟି ସମ୍ମୁଖରେ ଦେବଦତ୍ତ, ମାତା, ପିତା, ଭାଇ, ବନ୍ଧୁ, ଘର, ପରିବାର, ପଞ୍ଚଭୂତ, ଘରଦ୍ୱାର ତଥା ସମ୍ପୂର୍ଣ୍ଣ ପଞ୍ଚଭୌତିକ ପଦାର୍ଥ ବିଲୀନ ହୋଇଯାଆନ୍ତି। ଏ ସମସ୍ତ ଯଥାସମ୍ଭବ ଥାଇ ସୁଦ୍ଧା, ଆଖିଆଗରେ ଦେଖୁଥିଲେ ବି, ଏ ସମସ୍ତକୁ ମିଥ୍ୟା ବୋଲି ଅବବୋଧ କରିଥା'ନ୍ତି। ଏଣୁ ସେମାନଙ୍କୁ କୌଣସି ଘଟଣା ନା ଅପୂର୍ବ (ବିଲକ୍ଷଣ) ଜଣାପଡ଼େ, ନା ସେହି କାରଣରେ କିଛି ସୁଖଦୁଃଖ ଜଣାପଡ଼େ।

ମହର୍ଷି ସୂତ କହୁଛନ୍ତି, ''ହେ ମୁନିଗଣ! ହଂସ ଭଗବାନଙ୍କଠାରୁ ଯେତେବେଳେ ସନକାଦି ଋଷିମାନେ ଜ୍ଞାନୀର ସ୍ଥିତି ସମ୍ବନ୍ଧରେ ପ୍ରଶ୍ନକଲେ ସେତେବେଳେ ହଂସ ଭଗବାନ କହିଥିଲେ— 'ହେ ମୁନିଗଣ! ତୁମେମାନେ ପୁଣି ମୋତେ ଜ୍ଞାନୀର ସ୍ଥିତି ସଂପର୍କରେ ପଚାରୁଛ! ତୁମେମାନେ ମର୍ତ୍ତ୍ୟଲୋକକୁ ଯାଅ, ଜ୍ଞାନୀମାନଙ୍କର ପ୍ରତ୍ୟକ୍ଷ ସ୍ଥିତି ଦେଖିଆସ।

ଶରୀର ଧାରଣକରି ସୁଦ୍ଧା ଶରୀରର ଅଭିମାନ ଠାରୁ ପୃଥକ୍ ରହିଥା'ନ୍ତି। ଜ୍ଞାନୀଙ୍କ କଥା ଛାଡ଼। ତୁମେ କେବେ ସୁରାପାୟୀଙ୍କୁ ଦେଖିଛ?''

ମୁନିମାନେ କହିଲେ, ''ହଁ ପ୍ରଭୁ! ଅନେକ ସୁରାପାନ କରି ଉନ୍ମତ୍ତ ପ୍ରଳାପ କରୁଥିବା ତଥା ରାସ୍ତାରେ ପଡ଼ିଥିବା ଦେଖିଛୁ।''

ହଂସ ଭଗବାନ୍ କହିଲେ, ''ତୁମେ ସେମାନଙ୍କୁ ଦେଖି ଜ୍ଞାନୀଙ୍କ ସ୍ଥିତି ସମ୍ବନ୍ଧରେ ଅନୁମାନ କର। ସୁରାପାନ କରିବା ପୂର୍ବରୁ ସେହି ଲୋକର ସ୍ଥିତି କିପରି ଥିଲା। ଦୂରରେ କୌଣସି ଦୁର୍ଗନ୍ଧଯୁକ୍ତ ଦ୍ରବ୍ୟ ଦେଖିଲେ ସେମାନେ ନାକ ବନ୍ଦକରି ବାଟକାଟି ପଳାଉଥା'ନ୍ତି। ଭୁଲରେ ବି କାହାର ଗଙ୍ଗାଜଳର ଛିଟିକା ପଡ଼ିଗଲେ କ୍ରୋଧରେ ତମତମ୍ ହୋଇଯାଆନ୍ତି। ସେପରି ଲୋକ ସୁରାପାନକରି ଉନ୍ମତ୍ତ ହୋଇଯାଏ। ଶରୀର ତ ସେୟା ଥାଏ ନା! ସେତେବେଳେ ଯେକୌଣସି ଭୋଜନ ଖୋଇଦେଲେ ସେ ଖାଇଦିଏ। ମୁହଁରେ ପାଣି ଗିଲାସ ଲଗାଇଦେଲେ ସେ ତାହା ପିଇଦିଏ। ତା'ର ସେତେବେଳେ କୌଣସି ବାଛ ବିଚାର ନ ଥାଏ। ପୂର୍ବେ ଧୋତି ଯଦି ଆଣ୍ଠୁ ଉପରକୁ ଉଠିଯାଏ ସେ ଲଜ୍ଜିତ ହୋଇଯାଉଥିଲା। ଏବେ ଫୁଙ୍ଗୁଳା ପଡ଼ିରହିଥିଲେ ବି ତା'ର କିଛି ଚିନ୍ତା ନ ଥାଏ। ନର୍ଦ୍ଦମାରେ ପଡ଼ିଯାଇଥାଏ, ଆଉ ନର୍ଦ୍ଦମାର ମଇଳା ଜଳ ତା'ର ମେଲା ହୋଇ ରହିଥିବା ପାଟିରେ ପଶିଯାଉଥାଏ, ତେବେ ବି ସେ ହସୁଥାଏ। କହୁଥିଲା ବେଳେ ଅସଙ୍ଗତ ପ୍ରଳାପ ଇ କରୁଥାଏ। ଦେହରେ ଲୁଗା ଥାଉ ବା ନ ଥାଉ, ଆଗରେ ଭଉଣୀ ଥାଉ ଅଥବା ଭାଇ, ତା'ର ଭେଦଭାବ କିଛି ନ ଥାଏ। ଠିକ୍ ଏହିଭଳି ସିଦ୍ଧ ପୁରୁଷ ଯେତେବେଳେ ଜ୍ଞାନାମୃତ ପାନ କରିଦେଇଥା'ନ୍ତି, ସଂସାର ଯେପରିଥିଲା ସେପରି ଥାଏ, କିନ୍ତୁ ତାଙ୍କ ଦୃଷ୍ଟିରେ ଏହା ସର୍ବଦା ମିଥ୍ୟ ପ୍ରତୀତ ହେଉଥାଏ। ଶରୀର ପ୍ରତି ତା'ର କୌଣସି ଆସକ୍ତି ରହି ନ ଥାଏ। ଜୀବନଯାକ ଧରି ଶରୀରର ଯେଉଁ କାର୍ଯ୍ୟ କରିଛି, ଜ୍ଞାନ ହୋଇଯିବା ପରେ ତାହା ସ୍ୱଭାବବଶ ହୋଇଯାଏ। ଶରୀର ଠିଆ ହୋଇଗଲା, ଚାଲିଲା, ବସିଲା, ଶୋଇଗଲା, ମଳମୂତ୍ର ପରିତ୍ୟାଗ କରିଦେଲା— ଜ୍ଞାନୀର ମୁଖ୍ୟ ମନ ଏଇସବୁ କାମଆଡ଼କୁ ଯାଏନାହିଁ। ଏ ସବୁ ଦୈବବଶ ହେଉଥାଏ।''

ସନକାଦି ମୁନିମାନେ ପଚାରିଲେ, ''ଭଗବନ୍! ଶରୀରରେ ଯେ ପର୍ଯ୍ୟନ୍ତ ପ୍ରାଣ ଥାଏ ସୁଖ-ଦୁଃଖ ତ ହେଉଥିବା ଉଚିତ। ଯଦି ତାକୁ କିଏ ପ୍ରହାର କଲା ତେବେ ସେହି ଜ୍ଞାନୀକୁ କ'ଣ କଷ୍ଟ ଅନୁଭବ ହେବନାହିଁ?''

ଏହାଶୁଣି ହଂସ ଭଗବାନ୍ କହିଲେ, ''ଆରେ ଭାଇ! କଷ୍ଟ କେତେବେଳେ ହୁଏ? ଯେ ପର୍ଯ୍ୟନ୍ତ ଏହି ପାଞ୍ଚଭୌତିକ ଶରୀର ପ୍ରତି ଆସକ୍ତି ଥାଏ ସେ ପର୍ଯ୍ୟନ୍ତ କଷ୍ଟ ହେଉଥାଏ। ଆଉ ସେ ପର୍ଯ୍ୟନ୍ତ ଏହି ଶରୀରକୁ ସେ ଆତ୍ମା ବୋଲି ଜାଣିଥାଏ। ଯେତେବେଳେ ସେ **ଆତ୍ମା ନିତ୍ୟ, ଶୁଦ୍ଧ, ମୁକ୍ତ ଆଉ ଶରୀର ଅନିତ୍ୟ ଏବଂ ପଞ୍ଚଭୂତର ବନ୍ଧନରେ ଅଛି, ଏହା ଭିନ୍ନଧର୍ମୀ ବୋଲି ଜାଣିଯାଏ, ସେତେବେଳେ ତା' ଦେହ ପ୍ରତି ଆସକ୍ତି କାହିଁକି ହେବ ଯେ?** ଜାଗ୍ରତ ହୋଇ ଉଠିବା ପରେ ଯେତେବେଳେ ସ୍ୱପ୍ନରେ ଦେଖିଥିବା ସିଂହ ମିଥ୍ୟା ବୋଲି ଜାଣିଦେଲା, ଜାଗ୍ରତ ହେବାପରେ ଯେତେ ସ୍ପଷ୍ଟ ଭାବରେ ସ୍ୱପ୍ନ କଥା ମନେପଡ଼ିଲେ ବି, ତାକୁ ସାମାନ୍ୟ ମାତ୍ର ଭୟ ହୁଏ କି? ଜ୍ଞାନୀମାନେ ଶରୀରର ମମତା ଛାଡ଼ି ନିଜର ବାସ୍ତବିକ ରୂପର ଜ୍ଞାନପ୍ରାପ୍ତ

ହୋଇଥା'ନ୍ତି। ଏହାପରେ ଦେହର ସୁଖଦୁଃଖରେ ସେମାନେ ସୁଖୀ ବା ଦୁଃଖୀ ହେବେ କାହିଁକି? ଦେହ ରହିଲେ ଉତ୍ତମ, ନ ରହିଲେ ବି ଉତ୍ତମ। କେହି ଫୁଲ ପିନ୍ଧାଇଲେ ହର୍ଷ ହୁଏ ନାହିଁ, ବିଷ୍ଠା ଫୋପାଡ଼ିଲେ ବି ବିଷାଦିତ ହେବାର କିଛି ନ ଥାଏ।''

ମୁନିମାନେ କହିଲେ, ''ହେ ଭଗବନ୍! ଏପରି ସ୍ଥିତିରେ ଶରୀର ନ ରହିବା ହିଁ ଉତ୍ତମ। 'ଅହଂତା' ଯୋଗୁଁ ଶରୀର ରହିଥାଏ। ଏହି ଶରୀରରେ ଅହଂତା ନ ରହିଲେ ଶରୀର ଧାରଣ କରିବାର ଆଉ କି ଆବଶ୍ୟକତା ଅଛି?''

ହଂସ ଭଗବାନ୍ କହିଲେ, ''ନା! ହେ ମୁନିଗଣ! କଥାଟା ସେୟା ନୁହେଁ। **ଶରୀର ହେଉଛି କର୍ମାଧୀନ। ସଂଚିତ, ପ୍ରାରବ୍ଧ ଓ କ୍ରିୟମାଣ ଏପରି ତିନି ପ୍ରକାରର କର୍ମ ଅଛି। ଜନ୍ମଜନ୍ମାନ୍ତର ଧରି ଏକତ୍ରିତ ହୋଇଥିବା କର୍ମକୁ ସଂଚିତ-କର୍ମ କୁହାଯାଏ।** ଏହି କର୍ମରୁ ଗୋଟିଏ ଜନ୍ମ ଭୋଗକରିବା ନିମନ୍ତେ କର୍ମ ଦେଇ ଯେଉଁ ଶରୀର ହୁଏ ତାହାକୁ ପ୍ରାରବ୍ଧ-କର୍ମ କହନ୍ତି। ଆଉ, ଆମେ ଯେଉଁ କର୍ମ କରୁ ଏହାକୁ କ୍ରିୟମାଣ କର୍ମ କୁହାଯାଏ। ଏହା ଯାଇ ସଂଚିତ କର୍ମରେ ମିଶେ। ଯେପରି କେହି ଅନେକ ଦିନ ପର୍ଯ୍ୟନ୍ତ ଧନ ଏକତ୍ରିତ କଲା, ତା ପାଖରେ ଯେଉଁ ପୈତୃକ ଧନ ଥିଲା ତାହା ସହିତ ଏହାକୁ ମିଶାଇ ଦେଲା। ଏ ସବୁ ଏକାଠିକରି ଜଣେ ମହାଜନ ପାଖରେ ରଖିଦେଲା। ମହାଜନ ଏହାକୁ ଋଣ ବ୍ୟବସାୟ କଲା। ତହିଁରୁ ଯାହା ଲାଭମିଳିଲା ସେଇ ଲାଭାଂଶକୁ ବି ସେ ମହାଜନ ପାଖରେ ରଖିଲା। ମହାଜନ ପାଖରେ ସେ ଯେତେ ଧନ ଏକତ୍ରିତ କଲା ତାହା ହେଉଛି ସେହି ଲୋକର ସଂଚିତ ଧନ। ସେଥିରୁ ଯେଉଁ ସୁଧ ମିଳେ ତାହା ପ୍ରାରବ୍ଧ। ବ୍ୟବସାୟରେ ତହିଁରୁ ଯେଉଁ ଲାଭହୁଏ ଓ ସେ ସବୁ ନେଇ ମହାଜନ ପାଖରେ ଏକତ୍ରିକୃତ କରୁଥାଏ, ତାହା ହେଉଛି କ୍ରିୟମାଣ। ଦୈବଯୋଗରେ ମହାଜନ ଦେବାଳିଆ ହୋଇଗଲା। ଏହି ଲୋକର ବି ସବୁ ଧନ ନଷ୍ଟ ହୋଇଗଲା। ଯିଏ ସବୁଦିନ ଜମା କରୁଥାଏ, ତାହା ବି ନଷ୍ଟହେଲା ଓ ପୁରୁଣା ମୂଳଧନ ବି ଗଲା। କିନ୍ତୁ ତହିଁରୁ ଆଜି ଯେଉଁ ସୁଧ ମିଳିଥିଲା, ତାହା କିନ୍ତୁ ତା ପାଖରେ ରହିଗଲା। ଯେ ପର୍ଯ୍ୟନ୍ତ ସେହି ସୁଧ ରହୁଥିବ ସେ ପର୍ଯ୍ୟନ୍ତ ସେ ଖାଇବାକୁ ପାଉଥିବ। ସମାପ୍ତ ହୋଇଗଲେ ନିର୍ଦ୍ଧନ ହୋଇଯାଏ। ଏପରି ଜ୍ଞାନ ହୋଇଯିବା ପରେ ସଂଚିତ ଓ କ୍ରିୟମାଣ କର୍ମ ତ ନଷ୍ଟ ହୋଇଯାଏ, କିନ୍ତୁ ପ୍ରାରବ୍ଧ କର୍ମର ନାଶ ନ ହେବା ପର୍ଯ୍ୟନ୍ତ ତାହା ଭୋଗ କରିବାକୁ ହେଉଥାଏ। ତେଣୁ, ଯେ ପର୍ଯ୍ୟନ୍ତ ଦେହାରମ୍ଭର ପ୍ରାରବ୍ଧ କର୍ମ ବାକି ରହିଥାଏ, ସେ ପର୍ଯ୍ୟନ୍ତ ଜ୍ଞାନୀର ଶରୀର ଜୀବିତ ରହେ। ଅନ୍ୟଲୋକଙ୍କଭଳି ତା ଶରୀରର କ୍ରିୟା ହେଉଥାଏ, କିନ୍ତୁ ପାର୍ଥକ୍ୟ ଏତିକି ଯେ ତାକୁ ସମାଧିର ସୁଖ ମିଳିଯାଇଥାଏ, ସେ ସମାଧିସ୍ଥ ହୋଇ ଆତ୍ମାର ସାକ୍ଷାତ୍‌କାର କରିସାରିଥାଏ। ଏବେ ଏହି ଦୃଶ୍ୟ ପ୍ରପଞ୍ଚଟିରେ ରହିସୁଦ୍ଧା ଏଥିରେ ତା'ର ଆସକ୍ତି ନ ଥାଏ। କାରଣ ଛଏ ଏହାର ଯଥାର୍ଥ ରୂପକୁ ଜାଣିସାରିଥା'ନ୍ତି। ଯିଏ ବ୍ରହ୍ମାନନ୍ଦ ସୁଖ୍ ଅନୁଭବ କରିସାରିଛି ସେ ଏହି ମଳମୂତ୍ରପରିପୂର୍ଣ୍ଣ ଶରୀରରେ ସୁଖାନୁଭବ କିପରି କରନ୍ତା! ସେ ତ ସ୍ୱପ୍ନରେ ଦେଖିଥିବା ପଦାର୍ଥ ସଦୃଶ ସକଳ ଇନ୍ଦ୍ରିୟଜନ୍ୟ ବିଷୟକୁ ମିଥ୍ୟାବୋଲି ଜାଣିସାରିଥାଏ। ତା'ର ନା ଶରୀରପ୍ରତି ମମତା ଥାଏ ନା ତା'ର ପାଳନପୋଷଣ ପାଇଁ, ବା ପୁଷ୍ଟ କରିବା ପାଇଁ ଚିନ୍ତା।''

ସନକାଦିମାନେ କହିଲେ, "ଭଗବନ୍! ଏଥର ଆମେ ବୁଝିଗଲୁ। ଆପଣ ଆମ ପ୍ରତି ଯଥେଷ୍ଟ ଅନୁଗ୍ରହ କଲେ। ଆମର ପିତୃଦେବ ଆମ ପ୍ରଶ୍ନ ଶୁଣି ନୀରବ ହୋଇଯାଇଥିଲେ।"

ଭଗବାନ କହିଲେ, "ସେଥିରେ କିଛି କଥା ନାହିଁ। ତୁମର ପିତୃଦେବ ଉତ୍ତର ନ ଦେଲେ ନାହିଁ, ତୁମର ପିତାଙ୍କ ପିତା ତ ଯଥାର୍ଥ ଉତ୍ତର ଦେଲେ। ଆତ୍ମାଠାରୁ ଉତ୍ପନ୍ନ ହୋଇଥିବା ହେତୁ ପୁତ୍ର ଆଉ ପିତାମଧ୍ୟରେ କିଛି ପାର୍ଥକ୍ୟ ନ ଥାଏ। ପିତା ହିଁ ପୁତ୍ରହୋଇ ପୁଣି ପ୍ରକଟ ହୋଇଯାଏ। ତୁମେମାନେ ମୋତେ ତୁମ ପିତାଙ୍କ ପିତାରୂପେ ଗ୍ରହଣକର। ପୁଅମାନେ। ମୁଁ ହିଁ ଯୋଗର ଅନ୍ତିମ ଲକ୍ଷ୍ୟ। ସାଂଖ୍ୟମାନେ ଯାହାକୁ ପରମତତ୍ତ୍ୱ କୁହନ୍ତି, ତାହା ହେଉଛି ମୁଁ। ସତ୍ତ୍ୱ ଆଉ ଋତଂ ବୋଲି ଯାହାକୁ କୁହନ୍ତି, ସତ୍ୟସ୍ୱରୂପ, ତାହା ହେଉଛି ମୁଁ। ଯାହାର ତେଜ ସଂସାରରେ ବ୍ୟାପ୍ତ, ଯାହାଙ୍କର ଅପାଂଶ ତେଜ ପାଇ ବ୍ରହ୍ମାଦିଦେବ ତେଜସ୍ୱୀ କୁହନ୍ତି, ସେ ସମସ୍ତ ତେଜର ଏକମାତ୍ର ଆଳୟ, ନିଦାନ, ମୁଁ ହିଁ ଅଟେ। ମୁଁ ହିଁ ସମସ୍ତ ତେଜସ୍ୱୀଙ୍କର ମଧ୍ୟରେ ଶ୍ରେଷ୍ଠ। ଶ୍ରୀ ହେଉଛି ମୋ'ର ହିଁ ସ୍ୱରୂପ। ଯେଉଁ କୀର୍ତ୍ତିପାଇଁ ସାଂସାରିକ ଲୋକ ଲାଳାୟିତ ରହିଥାନ୍ତି, ସେହି କୀର୍ତ୍ତି ମୋ ବ୍ୟତୀତ ଆଉକିଛି ନୁହେଁ। ତପସ୍ୱୀମାନେ ଇନ୍ଦ୍ରିୟ ଆଉ ମନକୁ ବଶକରିବା ପାଇଁ ଶମ ଓ ଦମ କରନ୍ତି, ସେ ସମସ୍ତ ମଧ୍ୟ ମୁଁ। କେତେ କହିବି, ସବୁ ହେଉଛି ମୁଁ ଏବଂ ମୋ ଛଡ଼ା କିଛି ଏ ସଂସାରରେ ନାହିଁ। ଯେତେ ସାଧନ ଅଛି ସେ ସମସ୍ତର ପରମଗତି ହେଉଛି ମୁଁ। ଶାସ୍ତ୍ରକାରମାନେ ଯେଉଁକଥା ବାରମ୍ବାର କୁହନ୍ତି ଯେ, ସକଳ ଭୂତରେ ସମବୁଦ୍ଧି କର, କୌଣସିଥିରେ ବିଷମ ବୁଦ୍ଧି କରନାହିଁ— ଏହି ସମତା କେଉଁଥିରେ କରାଯିବ? କେବଳ ମୋ ଠାରେ। ଅର୍ଥାତ୍ ମୋତେ ହିଁ ସମସ୍ତଙ୍କଠାରେ ଦେଖ। ଅଥବା ମୁଁ ହିଁ ସବୁବୋଲି ଜାଣ। ଶାସ୍ତ୍ର ବାରମ୍ବାର କହେ— ଦୃଢ଼ ଅସଙ୍ଗ ଶସ୍ତ୍ରରେ ମୋହକୁ କାଟିପକାଅ, ଆଉ ସେହି ଅସଙ୍ଗତା ମୋତେ ହିଁ ଭଜେ। ଅର୍ଥାତ୍ ଏକମାତ୍ର ମୋ ସହିତ ସଙ୍ଗକର। ମୁଁ ସକଳ ଗୁଣରହିତ ନିର୍ଗୁଣ ଅଟେ। କୌଣସି ବସ୍ତୁ ମୋ'ପାଇଁ ଅପୂର୍ବ ନୁହେଁ। ଧନ ଅଥବା କୌଣସି ସାମଗ୍ରୀ ମୋର ଅଭାବ ନାହିଁ। ପରମପ୍ରେମାସ୍ପଦ ହେଉଛି ମୁଁ। ସମସ୍ତଙ୍କ ଠାରେ ଆତ୍ମାରୂପରେ ମୁଁ ହିଁ କ୍ରୀଡ଼ା କରୁଥାଏ। ମୋ ବ୍ୟତୀତ ନା କେହି ଉତ୍ପନ୍ନହୁଏ ନା କାହାର ଅସ୍ତିତ୍ୱଅଛି। ପ୍ରଳୟ କଥା ଆଉ କ'ଣ କହିବି? ଏହି ଯେଉଁ ସବୁ ବିଭିନ୍ନପ୍ରକାର ଭାବ ଅଛି, ଦୃଶ୍ୟ ଦେଖାଯାଏ, ନାନା ବାଦ-ବିବାଦ ଦେଖାଯାଏ ସେ ସମସ୍ତ କଳ୍ପିତ, ମିଥ୍ୟା, ଅସତ୍, ଅଜାତ, ଅସମ୍ଭବ। ସମସ୍ତଙ୍କର ଏକମାତ୍ର ଆଶ୍ରୟ ମୋ'ରିଠାରେ ବୋଲି ଜାଣ। ନା ଚିତ୍ତବୋଲି କିଛି ଅଛି, ନା ବିଷୟ। ଏ ସମସ୍ତ ହେଉଛି ଗନ୍ଧର୍ବ ନଗର, ମୃଗତୃଷ୍ଣା ସଦୃଶ; କିଛି ନ ଥାଇ ସବୁଥିଲା ଭଳି ପ୍ରତୀତ ହେଉଥାଏ।"

ସନକାଦି ମୁନିମାନେ ହଂସ ଭଗବାନଙ୍କ ପାଦତଳେ ପ୍ରଣାମକଲେ ଆଉ କହିଲେ, "ଭଗବନ୍! ଆପଣଙ୍କ କୃପାପ୍ରାପ୍ତହୋଇ ଆମର ସନ୍ଦେହ ଦୂର ହୋଇଯାଇଛି, ଆମର ମୋହ ଦୂର ହୋଇଗଲା। ଏବେ ଆମେ ସୁଖ କ'ଣ, ଦୁଃଖ କ'ଣ, ଭଲ କ'ଣ, ମନ୍ଦ କ'ଣ; ଉତ୍ତମ କ'ଣ, ଅଧମ କ'ଣ ଜାଣିଗଲୁ। ସବୁ ହେଉଛି ମିଥ୍ୟା କଳ୍ପନା, ମାୟା। ଆତ୍ମରୂପ କେବଳ ଆପଣ ହିଁ ସତ୍ୟ। ସେଇ 'ଆତ୍ମା' ଅହଂ ରୂପରେ ସର୍ବତ୍ର ବ୍ୟକ୍ତହେଉଥାଏ। ତାହା ହେଉଛି ମୁଁ।"

ମୁଁ ହସି ହସି କହିଲି, ''ହଁରେ ପୁଅମାନେ, ସବୁ ହେଉଛ ତୁମେ। 'ଅହଂ' ଆଉ 'ତ୍ୱଂ' ମଧ୍ୟରେ କିଛି ପାର୍ଥକ୍ୟ ନାହିଁ। ଏଥିବରେ ଯିଏ ଭେଦଭାବ ଦେଖେ, ଏହା ପୃଥକପୃଥକ ଦୁଇଟିବୋଲି ଯିଏ କହେ ସେ ହିଁ ଅନୁତାପ କରେ, କାନ୍ଦେ, ତାକୁ ହିଁ ଭୟ ହୁଏ।''

ଭଗବାନ ଶ୍ରୀକୃଷ୍ଣଚନ୍ଦ୍ର ଉଦ୍ଧବଙ୍କୁ ଉପଦେଶଦେଇ କହୁଛନ୍ତି, ''ହେ ଉଦ୍ଧବ ! ହଂସରୂପରେ ମୁଁ ଯେତେବେଳେ ସନକାଦିଙ୍କର ସମସ୍ତ ସନ୍ଦେହ ମୋଚନ କରିଦେଲି, ସେମାନଙ୍କ ପ୍ରଶ୍ନର ଯଥାର୍ଥ ଉତ୍ତର ଦେଇଦେଲି, ସେମାନେ ବଡ଼ ପ୍ରସନ୍ନ ହୋଇଗଲେ। ସେମାନେ ଅତି ଶ୍ରଦ୍ଧାଭକ୍ତିରେ ପୂଜାକଲେ। ନାନାବିଧ ସ୍ତୋତ୍ର ପାଠକରି ମୋର ସ୍ତୁତି କଲେ। ସେମାନଙ୍କ ପୂଜା ଗ୍ରହଣକଲି। ମୁଁ ସେଇ ମୁହୂର୍ତ୍ତରେ ମୋ ପକ୍ଷକୁ ଫଡ଼ଫଡ଼ କରି ସେଠାରୁ ଅନ୍ତର୍ହିତ ହୋଇଗଲି। ସେହିଠାରେ ଅଦୃଶ୍ୟ ହୋଇ ମୋ ନିଜ ଧାମକୁ ଚାଲିଗଲି। ତୁମକୁ ମୁଁ ଅତି ଗୂଢ଼ଜ୍ଞାନମୟ ଏହି ହଂସ-ଗୀତା ଶୁଣାଇଲି। ଏବେ ତୁମେ ଆଉ କ'ଣ ଶୁଣିବାକୁ ଚାହୁଁଛ କୁହ।''

ଉଦ୍ଧବ ପଚାରିଲେ, ''ଭଗବନ୍ ! ଆପଣ ପକ୍ଷୀ ରୂପ କାହିଁକି ଧରିଲେ ?''

ଭଗବାନ ହସିହସି କହିଲେ, ''ଦୁଇ ପକ୍ଷ ଏକ ରକମର କାମ କରନ୍ତି। ଦୁଇ ପକ୍ଷ ସାହାଯ୍ୟରେ ମୁଁ ଉଡ଼ିଯାଇପାରେ। ତେଣୁ ପକ୍ଷୀ ହୋଇଥିଲି।''

ଉଦ୍ଧବ କହିଲେ, ''ଭଗବନ୍ ! ମଣିଷଙ୍କୁ ଗୋଟିଏ ପକ୍ଷୀ ଉପଦେଶଦେବାଟା ମୋତେ କାହିଁକି ପସନ୍ଦ ଲାଗୁନାହିଁ। ଆପଣ ଯଦି ଉପଦେଶ ଦେବାର ଥିଲା ତେବେ ମୁନିମାନଙ୍କୁ ମୁନି ବେଶରେ ହେଲେ ଉପଦେଶ ଦେଇଥାଆନ୍ତେ !''

ହସିହସି ଭଗବାନ କହିଲେ, ''ଆରେ ଭାଇ ! ମୋତେ ଯିଏ ଯେପରି ଭଜନ କରେ ମୁଁ ତାକୁ ସେଇରୂପରେ ଦେଖାଦିଏ। ଏଇ ଜ୍ଞାନୀଲୋକଗୁଡ଼ାକ ଶୁଷ୍କ ପ୍ରକୃତିର ହୋଇଥାନ୍ତି। ଏମାନଙ୍କଠାରେ ଟିକିଏବୋଲି ସରସତା ତ ନ ଥାଏ, ପୁଣି ଏମାନେ ତର୍କପ୍ରଧାନ ହୋଇଥାନ୍ତି। ଏମାନେ ବି ସୁନ୍ଦର ସ୍ୱରୂପର ଉପାସକ ହୁଅନ୍ତି ନାହିଁ। ଏମାନେ କୁହନ୍ତି, କୁକୁର ଓ କୁକୁରର ମାଂସ ଆହାରକରୁଥିବା ଲୋକ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ। ଏମାନେ ନିର୍ଗୁଣକୁ ଧ୍ୟାନ କରନ୍ତି। ଅଜପା ଗାୟତ୍ରୀ ହେଉଛି ନିର୍ଗୁଣ। ଶ୍ୱାସ ହଂ-କାରରେ ବାହାରକୁ ଆସେ ଆଉ ସ-କାରରେ ଭିତରକୁ ପ୍ରବେଶ କରେ। ଏହିଭଳି ଜୀବ 'ହଂସ' ଏହି ପରମମନ୍ତ୍ର ଅନବରତ ଜପ କରୁଥାଏ। ମୋତେ ତ ନିର୍ଗୁଣର ଉପଦେଶ ଦେବାକୁ ଥିଲା। 'ହଂସ'ର ସ୍ମରଣ ହୋଇଗଲା। ତେଣୁ ମୁଁ ସହସା ହଂସ ହୋଇଗଲି। ଏମାନଙ୍କର ମନରେ ଭେଦଭାବ ବୋଲି କିଛି ତ ନ ଥିଲା, ଏଇଟା ହଂସ, ଏଇଟା ମଣିଷ, ସେଇ ପକ୍ଷୀଠାରୁ ଜ୍ଞାନ ଗ୍ରହଣକରିବା ଉଚିତ ନୁହେଁ ବୋଲି ସେମାନେ ଭାବୁ ନ ଥିଲେ। ତେଣୁ ମୁଁ ହଂସରୂପରେ ଯାଇଥିଲି। ଦ୍ୱିତୀୟରେ, ସେଇ ମୁନିମାନେ ସମସ୍ତେ ଥିଲେ ସାତ୍ତ୍ୱିକ। ସତ୍ତ୍ୱର ସ୍ୱରୂପ ଶୁଭ୍ର। ତେଣୁ ଶ୍ୱେତ ହଂସରୂପରେ ଯାଇଥିଲି। ଅସୁରମାନେ ତାମସୀ ହୋଇଥାନ୍ତି। ସେମାନଙ୍କ ପାଇଁ ବରାହ ହୋଇଯାଇଥିଲି। ଦୈତ୍ୟ ଭୟଙ୍କର ହୋଇଥାନ୍ତି। ତେଣୁ ମୁଁ ଭୟଙ୍କର ନୃସିଂହ ରୂପ ଧାରଣ କରିଥିଲି।''

ଉଦ୍ଧବ କହିଲେ, ''ଭଗବନ୍! ଆପଣଙ୍କର ମତ୍ସ, କଚ୍ଛ, ହଂସ, ନୃସିଂହ ଆଦି ରୂପକୁ ଦୂରରୁ ଦଣ୍ଡବତ। ଏସବୁ ଆପଣଙ୍କର ରୂପ। ଏଣୁ ଆମେ ଅଶ୍ରଦ୍ଧା ଅଥବା ଉପେକ୍ଷା ତ କରୁ ନାହୁଁ, କିନ୍ତୁ ଆମକୁ ଆପଣଙ୍କର ଏହି ତ୍ରିଭୁବନ ବିମୋହକ ଶ୍ୟାମସୁନ୍ଦର ସ୍ୱରୂପ ଖୁବ୍ ପ୍ରିୟ ଲାଗୁଛି।

''ହେ ପ୍ରଭୁ! ଜ୍ଞାନର ଏହି ବାତୁଲୀ ଆମର କର୍ଣ୍ଣତଳକୁ ତ ଯାଇପାରୁନାହିଁ; ଜଗତ ମିଥ୍ୟା, ଜଗତ ମିଥ୍ୟା ବୋଲି କହିକହି ଜଗତର ହିଁ ଆମର ଧ୍ୟାନ ରହୁଛି। ରାଗରେ ହେଉ ଅଥବା ଦ୍ୱେଷରେ ହେଉ, ଯାହାର ଚିନ୍ତା କରାଯାଏ ; ଗ୍ରହଣ କରିବା ଇଚ୍ଛାରେ ସ୍ମରଣ କରାହେଉ ଅଥବା ଭୁଲିଯିବା ଇଚ୍ଛାରେ ସ୍ମରଣ କରାହେଉ, ସ୍ମରଣ ତ କରୁଛେ ନା' ବରଂ ଭୁଲିଯିବା ଇଚ୍ଛାରେ ସ୍ମରଣକଲେ ଭଲ ମନେରହେ। କାହାକୁ ଯଦି କହିବା— ଅମୁକ ମନ୍ତ୍ର ଜପକର, କିନ୍ତୁ ମାଙ୍କଡ଼ ଯେପରି ମନକୁ ନ ଆସେ, ଆସିଲେ ସବୁ ନଷ୍ଟ ହୋଇଯିବ। ଏହି କଥା ଯଦି ନ କହିଥାନ୍ତେ, ତେବେ ମାଙ୍କଡ଼ ମନେ ହୁଏତ ପଡ଼ନ୍ତାନାହିଁ, କହିଦେବାଦ୍ୱାରା ନିଶ୍ଚୟ ମନେପଡ଼ି ଯାଏ। ଏଣୁ ଆମେ ଭାବୁଛୁ, ସଂସାର ମିଥ୍ୟାହେଉ ଅଥବା ସତ୍ୟ, ସେଥିରେ ଆମର କି ପ୍ରୟୋଜନ। ମିଥ୍ୟାର ଏତେ ଚର୍ଚ୍ଚା କରିବା କି ଦରକାର। ମିଥ୍ୟା ତ ମିଥ୍ୟା। ସତ୍ୟ ହୋଇଥିଲେ ବି ତାହା ଆପଣଙ୍କର ଚରଣାରବିନ୍ଦରେ କୌଣସି ଏକ କୋଣରେ ପଡ଼ିଥାଏ। ଆମେ ତ କେବଳ ଆପଣଙ୍କ ପାଦକୁ ଚାହୁଁଛୁ। ଆପଣ ବି ଅନେକଥର କହିଛନ୍ତି, 'ତୁମ ମନକୁ ମୋ ମନ ସହିତ ମିଶାଇ ଦିଅ। ତୁମେ ଅନ୍ୟ ସମସ୍ତଙ୍କର ଭକ୍ତି ଛାଡ଼ି ମୋତେ ହିଁ କେବଳ ଭକ୍ତି କର। ଯଦି ଯାଗଯଜ୍ଞ କରିବାକୁ ଇଚ୍ଛା ହେଉଛି ତେବେ ମୋ ଉଦ୍ଦେଶ୍ୟରେ କର। ପ୍ରଣାମ କରିବାକୁ ଇଚ୍ଛା ଯଦି ହେଉଛି ତେବେ ମୋ ପାଦପଦ୍ମରେ ପ୍ରଣାମ କର। ପୁଣି ଆପଣ ହଂସରୂପରେ ଏହା ଚିତ୍ତ, ଏହା ବିଷୟ, ଏହା ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି, ଏହା ବିଶ୍ୱ, ଏହା ତେଜସ, ଏହା ତୁରୀୟ—ଏତେ ହିନସ୍ତା କଥା କହିଲେ, ଏ ସବୁର କି ଦରକାର ଥାଇଲା। ଯେଉଁମାନଙ୍କର ବକରବକର କରିବା ଅଭ୍ୟାସ, ଯୁକ୍ତିତର୍କ ନ କରି ଯେଉଁମାନେ ରହିପାରନ୍ତି ନାହିଁ, ସେପରି ନିରସ ଶୁଷ୍କ ଜ୍ଞାନୀ ଆପଣଙ୍କ ସତ୍ତାକୁ ପରିହାସ କଲାଭଳି ବ୍ୟବହାର ଦେଖାଉଥାନ୍ତି।

''ପ୍ରଭୁ! ଆମେ ହେଉଛୁ ମଧୁରର ଉପାସକ। ଆମକୁ ଆପଣ ଆପଣଙ୍କ ଭକ୍ତିର ଉପାୟ ବତାଇ ଦିଅନ୍ତୁ। ଆପଣଙ୍କ ଭକ୍ତି କିପରି ହୋଇପାରିବ, ଆପଣଙ୍କ ଭକ୍ତଙ୍କର ଲକ୍ଷଣ କ'ଣ, ଏସବୁର ବିସ୍ତୃତ କଥା କୁହନ୍ତୁ। ଜଗତ ସତ୍ୟ ହୋଇଥିଲେ ଆମର କିଛି ହାନି ହେବାର ନାହିଁ। ମିଥ୍ୟା ହୋଇଥିଲେ ଆମର କିଛି ଲାଭ ହେବାର ନାହିଁ। ଆମକୁ ଭକ୍ତିଯୋଗ ପ୍ରଦାନ କରନ୍ତୁ। ଆପଣ ଆପଣଙ୍କ ମନ୍ଦମନ୍ଦ ଲାଳିତ୍ୟପୂର୍ଣ୍ଣ ସୁମନୋହର ହାସ୍ୟମୂର୍ତ୍ତିର ଛଟା ପ୍ରଦର୍ଶନ କରାନ୍ତୁ। ଆପଣଙ୍କର ତ୍ରିଭଙ୍ଗୀ ଠାଣି ଆମ ମନମନ୍ଦିରରେ ସବୁବେଳେ ନୃତ୍ୟ କରୁଥାଉ, ସେପରି ଉପାୟ କୁହନ୍ତୁ। ହାୟ! ଲୋକମାନେ କିପରି ଅନ୍ଧ ହୋଇଗଲେଣି! ଆପଣଙ୍କ ତ୍ରିଭଙ୍ଗୀ ଠାଣିକୁ ଛାଡ଼ି ଶୁଷ୍କ ପଥରରେ ମୁଣ୍ଡ କୋଡ଼ିବାରେ ଲାଗିଛନ୍ତି। ତାଲିକାଭୁକ୍ତ ହେବାପାଇଁ ଧାଡ଼ିବାନ୍ଧିବାରେ ଲାଗିଛନ୍ତି। ମାୟା ପଛରେ ଗୋଡ଼ାଇବାରେ ଲାଗିଛନ୍ତି। ଆପଣଙ୍କ ମାୟାକୁ ଆଜି ପର୍ଯ୍ୟନ୍ତ ତ କେହି କଳନା କରିପାରି ନାହାନ୍ତି, ଆଉ ସେମାନେ ବା କ'ଣ ପାଇଥାନ୍ତେ! ହଉ! ଆମେ

କାହାକୁ କାହିଁକି ନିନ୍ଦା କରିବା। କାହିଁକି ଅନ୍ୟ ବିଷୟରେ କହିବା। ବ୍ରହ୍ମବାଦ ଯାହାକୁ ଭଲଲାଗୁଛି ସେ ତାହା କରୁ, ମାୟାବାଦ ଯାହାକୁ ଭଲଲାଗୁଛି ସେ ମାୟା ପଛରେ ଗୋଡ଼ାଉ ଥାଉ। ଆମକୁ କିନ୍ତୁ ଆପଣ ଆପଣଙ୍କ ଭକ୍ତି ରହସ୍ୟ ବୁଝାଇ ଦିଅନ୍ତୁ। ଆପଣଙ୍କ ଭକ୍ତଙ୍କର ଭେଦ ବତାଇ ଦିଅନ୍ତୁ। ଯେଉଁମାନେ ଇନ୍ଦ୍ରିୟସଂଯମ କରିପାରୁ ନାହାନ୍ତି, ଅଥଚ ଆପଣଙ୍କୁ ଭକ୍ତି କରୁଛନ୍ତି, ସେମାନଙ୍କର ଦଶା କ'ଣ ହୁଏ, ଏ କଥାର ଗୂଢ଼ତ୍ତ୍ୱ ବୁଝାଇ ଦିଅନ୍ତୁ। ଲୋକଙ୍କର ପ୍ରକୃତି ଭିନ୍ନ ଭିନ୍ନ। ବିଭିନ୍ନ ଲୋକ ଭିନ୍ନଭିନ୍ନ ସାଧନ କରନ୍ତି। ଆପଣ ତ ଏକ। ସେପରି ସ୍ଥଳରେ ସାଧନରେ ଏତେ ବିଷମତା କାହିଁକି?"

ହସିହସି ଭଗବାନ କହିଲେ, "ହେ ଉଦ୍ଧବ। ତୁମେ ବଡ଼ ସୁନ୍ଦର କଥା କହିଲ। ଠିକ୍ ଅଛି। ପ୍ରଥମେ ମୋତେ ପାଇବାପାଇଁ ଅନେକ ମାର୍ଗ କାହିଁକି ଅଛି, ତାହା ମୁଁ ତୁମକୁ ବୁଝାଇ କହିବି। ଏହାପରେ ତୁମକୁ ଭକ୍ତିର ରହସ୍ୟ ବୁଝାଇବି। ଏବେ ଜ୍ଞାନର ଶୁଷ୍କ ସରିତାକୁ ଛାଡ଼ି ଅମୃତ ବାହିନୀ ମୋ ଚରଣରୁ ବାହାରୁଥିବା ଭକ୍ତି ଭାଗୀରଥୀର ପ୍ରେମପୂର୍ବକ ଅବଗାହନ କର। ଆଉ ପେଟପୂରାଇ ତ୍ରିତାପ ନାଶକ ପୁଣ୍ୟପୟ ପାନ କର।"

ମହର୍ଷି ସୂତ ଶୌନକାଦି ମୁନିମାନଙ୍କୁ କହୁଛନ୍ତି—"ହେ ମୁନିଗଣ। ଏବେ ଭଗବାନ ଯେଉଁଭଳି ଉଦ୍ଧବଙ୍କୁ ଭକ୍ତିଯୋଗର ରହସ୍ୟ ବୁଝାଇଲେ ତାହା ମୁଁ ଆପଣମାନଙ୍କୁ ଶୁଣାଉଛି, ଆପଣମାନେ ଦତ୍ତଚିତ୍ତ ହୋଇ ତାହା ଶ୍ରବଣ କରନ୍ତୁ।"

### ଛପ୍ପୟ

କହେ କୃଷ୍ଣ ଯହ ହଂସଜ୍ଞାନମୟ ଗୀତା ଉଦ୍ଧବ।
ସଖା ସମୁଝିକେଁ କହ୍ୟୋ କହୁଁ କା କଥା ଅପର ଅବ?
ଉଦ୍ଧବ ପୂଛେ—'ପ୍ରଭୋ। ତୁହ୍ମେ ବୁଧ ବହୁତ ବତାବେ।
ଶ୍ରେୟସିଦ୍ଧି କେ ଭିନ୍ନ ମାର୍ଗ ଋଷି ମୁନି ବହୁ ଗାବେଁ॥
କହୀ ଜ୍ଞାନଗାଥା ବିମଲ, ତୃପ୍ତି ନ ମେରୀ ଭଈ ହରି।
କହେଁ ଭକ୍ତି ମହିମା ସୁଖଦ, ସରସ ମଧୁର ପ୍ରଭୁ କୃପା କରି॥



# ଶ୍ରେୟସିଦ୍ଧିର ଅନେକ ମାର୍ଗର କାରଣ

ମନ୍‌ମାୟା ମୋହିତଧିୟଃ ପୁରୁଷାଃ ପୁରୁଷର୍ଷଭ ।
ଶ୍ରେୟୋ ବଦନ୍ତ୍ୟନେକାନ୍ତ ଯଥାକର୍ମ ଯଥାରୁଚି ।। ★

[ଶ୍ରୀ ଭା. ୧୧ସ୍କ. ୧୪ଅ. ୯ଶ୍ଲୋକ]

ଛପ୍ପୟ

ତବ ବୋଲେ ଭଗବାନ୍‌—ବେଦ ହୀ ମେରୀ ବାନୀ ।
ମୁଖ୍ୟ ଭାଗବତ ଧର୍ମ ଜାହି ଧାରେଁ ବିଜ୍ଞାନୀ ।।
ଆଦି ସର୍ଗ ମହଁ କହ୍ୟୋ ବ୍ରହ୍ମତେଂ ମନୁ ଜିଗ ତିନିନେଂ ।
ତିନି ସପ୍ତର୍ଷିନି ଦୟୋ କହ୍ୟୋ ଫିରି ସବତେଂ ଉନନେଂ ।।
ଗହନ କରୟୋ ନିଜ ମତ ସରିସ, ସବକେ ଭିନ୍ନ ସ୍ୱଭାବ ହୈଂ ।
ପ୍ରକୃତି ଭେଦ ତେଂ ଭିନ୍ନ ପଥ, ଭିନ୍ନ କ୍ରିୟା ଅରୁ ଭାବ ହୈ ।।

ଯିଏ ଯେଉଁ ପ୍ରକୃତିର ହୋଇଥାଏ ତା'ର କ୍ରିୟା ମଧ୍ୟ ସେହିପରି ହୋଇଥାଏ । ଯେଉଁଠିକି ଗଲେ ଅଥବା ଯେଉଁ ସମାଜକୁ ଗଲେ ବି ବ୍ୟବାହାର, ଆଚାରବିଚାରରୁ ପ୍ରକୃତିର ପରିଚୟ ମିଳିଯାଏ । ପ୍ରୟାଗରାଜରେ ଥରେ କୁମ୍ଭମେଳା ହୋଇଥିଲା । ଦେଶ ବିଦେଶରୁ ନାନା ସନ୍ଥ, ନାନା ମତ, ବିଭିନ୍ନ ବେଶଧାରୀ ଅନେକ ସମ୍ପ୍ରଦାୟ ଆଉ ଆଖଡ଼ାର ସାଧୁ ଆସିଥିଲେ । ସେମାନଙ୍କମଧ୍ୟରୁ ଚାରିଜଣ ସାଧୁଙ୍କ ନାମ ପ୍ରସିଦ୍ଧ ଥିଲା । ଜଣେ ଭଦ୍ରଲୋକ ପଚାରିଲେ, ଏହି ଚାରିଜଣ ସାଧୁଙ୍କ ବର୍ଣ୍ଣ କ'ଣ ? ଅନ୍ୟମାନେ ଏଇ ସାଧୁମାନଙ୍କୁ ପଚାରି ବୁଝିବାପାଇଁ କହିଲେ । ଏପରିକଥା ଶୁଣି ଜଣେ ବୁଦ୍ଧିଆ ଲୋକ କହିଲେ—"ଦେଖ ଭାଇ ! ସାଧୁ ଯଦି ବ୍ରାହ୍ମଣ ହୋଇଥିବେ ତେବେ ଜାତି କହିଦେବେ । କିନ୍ତୁ ଯଦି ଅନ୍ୟ ବର୍ଣ୍ଣର ହୋଇଥିବେ ତେବେ ସେମାନେ ଏପରି ବୁଲାଇ ବଙ୍କାଇ କଥା କହିବେ ଯେ ଆମେ ତାଙ୍କ ଜାତି ସ୍ଥିର କରିପାରିବା ନାହିଁ । ସେମାନେ କହିବେ—

ଜାତି ଫାତି ପଚାରିବା ଦରକାର ନାହିଁ ।
ହରିଙ୍କୁ ଭଜଇ ଯେ ସେ ହରିଙ୍କର ହୁଇ ।।

ଯଦି ଚତୁର୍ଥ ବର୍ଣ୍ଣର ହୋଇଥିବେ ତେବେ ଅପ୍ରସନ୍ନ ହେବେ ଓ କହିବେ, "ସାଧୁଙ୍କର ଜାତି ପରୀକ୍ଷା ଆଉ ମାତୃଯୋନି ପରୀକ୍ଷା ହେଉଛି ମହାପାପ । ସାଧୁ ତ ଜାତିଫାତିର

---

 ଏ ରୂପେ ଶ୍ରଦ୍ଧା ଅନୁମତେ । ମୋହର ମାୟାରେ ମୋହିତେ ।।
ଯେ ଯାହା ଶ୍ରେୟ ଚିନ୍ତି ଚିତ୍ତେ । କର୍ମ କରନ୍ତି ନାନାମତେ ।।

[ଭାଗବତ : ଜଗନ୍ନାଥ ଦାସ : ୧୧ ସ୍କ.୧୪ଅ]

ଊର୍ଦ୍ଧ୍ୱରେ। ତେଣୁ ସେମାନଙ୍କୁ ପଚାରିବା ଉଚିତ ନୁହେଁ। ଅନ୍ୟ କୌଣସି ଉପାୟରେ ସେମାନଙ୍କ ଜାତି ଠଉରାଇ ନିଅ।''

ସେ ଭଦ୍ରଲୋକ କହିଲେ, ''ଆପଣ ସେଇ ଅନ୍ୟ ପ୍ରକାରଟି କହି ଦେଉନାହାନ୍ତି ?''

ବୁଦ୍ଧିମାନ ଲୋକଜଣକ କହିଲେ, ''ଏଥିରେ କହିବାର କ'ଣ ଅଛି ଯେ ! ସ୍ୱଭାବକୁ ଯେତେ ବି ଲୁଚାଅ, ତାହା ଲୁଚେ ନାହିଁ। କଥାବାର୍ତ୍ତା ଓ ଚାଲିଚଳନରେ ତାହା ଜଣାପଡ଼ିଯାଏ। ହଉ ଚାଲ, ଆମେ ତାଙ୍କ କଥାବାର୍ତ୍ତାରୁ ଜାଣି ପାରିବା।''

ଏହା କହି ଦୁହେଁ ଚାଲିଲେ। ସର୍ବପ୍ରଥମେ ପ୍ରଥମ ସାଧୁଙ୍କ ପାଖରେ ଅନେକ ସମୟ ଧରି ବସିଲେ। ଯେତେବେଳେ ତାଙ୍କର ସମସ୍ତ ଦର୍ଶନାର୍ଥୀ ଚାଲିଗଲେ, ସେତେବେଳେ ସେ କହିଲେ, ''ମହାରାଜ ! ଆମକୁ କିଛି ଉପଦେଶ ଦିଅନ୍ତୁ।''

ମହାତ୍ମା ହସିଲେ ଆଉ କହିଲେ, ''ଆରେ ଭାଇ ! କି ଉପଦେଶ ଦେବି—

ରାମନାମ ଲଡୁ ଗୋପାଳ ନାମ ଘିଅ।
ହରି ନାମ ମିଶ୍ରୀ ତୁ ଘୋରି ଘୋରି ପିଅ॥

ଏହା ଶୁଣି ଦୁହେଁ ଉଠି ଚାଲିଗଲେ। ବୁଦ୍ଧିମାନ ଲୋକଟି କହିଲା, 'ଏହି ସାଧୁ ନିଶ୍ଚୟ ବ୍ରାହ୍ମଣ ଜାତିର। ବ୍ରାହ୍ମଣ ମିଠା ପ୍ରିୟ। ଲଡୁ, ପୁରି, ଘିଅ, ମିଶ୍ରୀ କଥା ଏଇମାନେ କହିଥାନ୍ତି।'

ଏଥର ସେମାନେ ଦ୍ୱିତୀୟ ସାଧୁଙ୍କ ପାଖକୁ ଗଲେ। ଅନେକ ସମୟଧରି ବସିଲେ। ପରିଶେଷରେ କିଛି ଉପଦେଶ ଦେବାପାଇଁ କହିଲେ, ସାଧୁ ବଡ଼ ପାଟିରେ କହିଲେ— 'ଆରେ ! ତୁମକୁ କି ଉପଦେଶ ଦେବି। ଅଣ୍ଟା ବାନ୍ଧି ଠିଆ ହୋଇଯାଅ।—

ରାମ ନାମର ଢାଲ କରାଇ, କୃଷ୍ଣ ନାମର ଖଡ଼୍ଗ ନେଇ।
ହରିନାମର କବଚ ପିନ୍ଧି ଯମ ପାଖରେ ବିଜୟ ହୁଇ।

ବୁଦ୍ଧିମାନ ଲୋକ ତା ସାଙ୍ଗର କାନରେ କହିଲା, ''ଇଏ କ୍ଷତ୍ରିୟ ହେ କ୍ଷତ୍ରିୟ ! ଏଥିରେ ଟିକିଏ ବୋଲି ସନ୍ଦେହ ନାହିଁ।''

ଏଥର ତୃତୀୟ ସାଧୁଙ୍କ ପାଖକୁ ଗଲେ ଆଉ ପୂର୍ବପଦ୍ଧତିରେ ଉପଦେଶ ଭିକ୍ଷାକଲେ। ସାଧୁ ଅତି ସରଳ ଭାବରେ କହିଲେ—

ଗ୍ରାହକ ହେଉଛି ସଂସାର, ରାମ ନାମ ତ ହାଟ।
ମାଧବ ମୋଦକ ଧରି, ଯିଏ ଚଢ଼େ ଯେତେ ବାଟ॥

ବୁଦ୍ଧିମାନ ଲୋକ କହିଲା, ''ଭାଇ ! ଇଏ ତ ଜଣେ ସେଠ।'' ଏଥର ସେମାନେ ଚତୁର୍ଥ ସାଧୁଙ୍କ ପାଖକୁ ଗଲେ। ସେଇ ସାଧୁ କହିଲେ—

ରାମ ଝରକା କୋଠରୀ, ସମସ୍ତଙ୍କର କଥା ହୋଇ।
ଯାହାର ଯେଉଁ ଚାକିରି, ତାହାକୁ ସେଇଆ ଦ୍ୟଇ॥

ବୁଦ୍ଧିମାନ ଲୋକ ତା ସାଥିଙ୍କ ସହିତ ବାହାରକୁ ଆସି କହିଲା, ''ଭାଇ ! ଇଏ ନିଶ୍ଚୟ ଚତୁର୍ଥ ବର୍ଣ୍ଣର ସନ୍ଥ।''

ଏହି ଉଦାହରଣ ଦେବାର ତାତ୍ପର୍ଯ୍ୟହେଉଛି, ବିଭିନ୍ନ ମଣିଷ ସେଇ ଏକ ଜ୍ଞାନକୁ ନିଜ ପ୍ରକୃତି ଅନୁସାରେ ଗ୍ରହଣ କରିଥାନ୍ତି; ଆଉ ସେଇ ଭାବରେ ଉପଦେଶ ବି ଦେଇଥାନ୍ତି। ଚିନି ଏକ ପ୍ରକାରର, ତାହା ହାତୀ ଛାଞ୍ଚରେ ପଶିଲେ ହାତୀ ହୋଇଯାଏ ଘୋଡ଼ା ଛାଞ୍ଚରେ ପଡ଼ିଲେ ଘୋଡ଼ା ମୂର୍ତ୍ତିବିଶିଷ୍ଟ ହୋଇଯାଏ। ଏକା ବସ୍ତୁମାତ୍ର ନାମ ଆଉ ରୂପ ଛାଞ୍ଚ ଅନୁସାରେ ହୋଇଥାଏ। ଏପରି ଭେଦଭାବକୁ ଯିଏ ସତ୍ୟ ଜାଣେ ସେ ହେଉଛି ଅଜ୍ଞାନୀ। ଯିଏ ବହୁତ୍ୱରେ ଏକତ୍ୱକୁ ଦେଖେ ସେ ହେଉଛି ଜ୍ଞାନୀ।

ମହର୍ଷି ସୂତ କହୁଛନ୍ତି—"ହେ ମୁନିଗଣ! ଯେତେବେଳେ ଏହା ଭିନ୍ନଭିନ୍ନ କାହିଁକି ହୋଇଛି, ଏ ସବୁଥିରେ ଭକ୍ତିମାର୍ଗ କ'ଣ ବୋଲି ଉଦ୍ଧବ ଭଗବାନଙ୍କୁ ପ୍ରଶ୍ନ ପଚାରିଲେ, ସେତେବେଳେ ସାଧନକୁ ଭିନ୍ନତାର କାରଣ ବୋଲି କହିବାକୁ ଯାଇ ଭଗବାନ୍ କହିଲେ, ହେ ଉଦ୍ଧବ! ସମସ୍ତ ମାର୍ଗର ଉଦ୍‌ଗମ ସ୍ଥାନ ହେଉଛି ବେଦ। ବେଦରେ ହିଁ ନିବୃତ୍ତି, ପ୍ରବୃତ୍ତି, ଭକ୍ତି ତଥା କର୍ମ ଆଦିର ବର୍ଣ୍ଣନା ଅଛି। ଭାଗବତ ଧର୍ମର ବର୍ଣ୍ଣନା ବେଦରେ ଅଛି। ଯେପରି ମୁଁ ଅନାଦି; ଠିକ୍ ସେହିଭଳି ମୋ ବାଣୀ ବେଦ ହେଉଛି ଅନାଦି। ପ୍ରଳୟସମୟରେ ଯେତେବେଳେ ଏହି ବ୍ୟକ୍ତ ଜଗଦ୍ ଅବ୍ୟକ୍ତରେ ବିଲୀନ ହୋଇଯାଏ ସେତେବେଳେ ମୋ'ର ଏହି ବେଦ ରୂପୀ ବାଣୀର ବି ପ୍ରଦର୍ଶନ ହୋଇଯାଏ। ଯେତେବେଳେ ପୁନର୍ବାର ସୃଷ୍ଟିର ଆରମ୍ଭରେ ଅବ୍ୟକ୍ତରୁ ବାହାରି ଏହି ଜଗତ ବ୍ୟକ୍ତ ହୁଏ ସେତେବେଳେ ମୋ'ର ନାଭିକମଳରୁ ବ୍ରହ୍ମାଙ୍କର ଉତ୍ପତ୍ତି ହୁଏ। ତାଙ୍କୁ ମୁଁ ବେଦର ଉପଦେଶ ସର୍ବପ୍ରଥମେ ଦିଏ। ଏହି କ୍ରମରେ ଏହି ସ୍ୱାୟମ୍ଭୁବ ମନ୍ୱନ୍ତରର ମୁଁ ସର୍ବପ୍ରଥମେ କମଳାସନ ବ୍ରହ୍ମାଙ୍କୁ ବେଦ-ଉପଦେଶ ଦେଇଛି। ବ୍ରହ୍ମା ସେହି ବେଦ-ଉପଦେଶକୁ ତାଙ୍କର ପୁତ୍ର ସ୍ୱାୟମ୍ଭୁବ ମନୁଙ୍କୁ ଦେଲେ। ମନୁ ସେହି ସମୟରେ ଭୃଗୁ, ଅଙ୍ଗିରା, ମରୀଚି, ପୁଲହ, ଅତ୍ରି, ପୁଲସ୍ତ୍ୟ ଆଉ କ୍ରତୁ ଏଇ ସାତଜଣ ମହର୍ଷିଙ୍କୁ ଦେଲେ। ଏଇ ସାତଜଣ ସେମାନଙ୍କର ନିଜନିଜ ସନ୍ତାନଙ୍କୁ ଉପଦେଶ ଦେଲେ। କ୍ରମସୂତ୍ରରେ ଏହି ଜ୍ଞାନ ପିତୃଗଣ, ଦେବଗଣ, ଦାନବ, ଗୁହ୍ୟକ, ମନୁଷ୍ୟ, ସିଦ୍ଧ, ଗନ୍ଧର୍ବ, ବିଦ୍ୟାଧର, ଚାରଣ, କିଂଦେବ, କିନ୍ନର, ନାଗ, ରାକ୍ଷସ, ତଥା କିଂପୁରୁଷମାନଙ୍କ ମଧ୍ୟରେ ପ୍ରଚାରିତ ହେଲା। ଏମାନେ ସମସ୍ତେ ତ ସାତ୍ତ୍ୱିକ ହୋଇନଥାନ୍ତି– କେହି ସତ୍ତ୍ୱପ୍ରଧାନ ହୋଇଥାନ୍ତି, କେହି ରଜୋଗୁଣ ପ୍ରଧାନ ତ କେହି ତମୋଗୁଣ ପ୍ରଧାନ ହୋଇଥାନ୍ତି। ଏହିଭଳି ଭିନ୍ନଭିନ୍ନ ପ୍ରକୃତି ହୋଇଥିବାରୁ ଏକ ଜ୍ଞାନକୁ ଲୋକମାନେ ଭିନ୍ନ ଭିନ୍ନ ପ୍ରକାରରେ ବୁଝିଲେ।"

ମହର୍ଷି ଶୌନକ ପଚାରିଲେ, "ହେ ମହର୍ଷି ସୂତ! ଏକ ଜ୍ଞାନ ଭିନ୍ନଭିନ୍ନ ଲୋକଙ୍କ ପାଖକୁ ଯାଇ ଭିନ୍ନଭିନ୍ନ କିପରି ହୋଇଗଲା?"

ମହର୍ଷି ସୂତ କହିଲେ, "ହେ ମହର୍ଷି! ବସ୍ତୁ ଏକ ହୋଇଥିଲେ ବି ପାତ୍ର ଭେଦରେ ଭିନ୍ନତା ଦେଖାଯାଇଥାଏ। ବିଦ୍ୟା ବିନୟ ପ୍ରଦାନ କରିଥାଏ। ବିଦ୍ୟାରୁ ଜ୍ଞାନ ହୁଏ। ଜ୍ଞାନରୁ ମୁକ୍ତି ମିଳେ। କିନ୍ତୁ ସେଇ ବିଦ୍ୟା କୌଣସି କୁପାତ୍ରକୁ ଖଳ ଲୋକ ପାଖକୁ ଚାଲିଗଲେ ସେ ତାହାକୁ କେବଳ ବିବାଦରେ ବ୍ୟବହାର କରିବାରେ ଲାଗିବ। ଧନ ହେଉଛି ଶ୍ରେଷ୍ଠ ବସ୍ତୁ। ଧନରେ ଦାନ ପୁଣ୍ୟ ଆଦି କର୍ମ ହୁଏ। ସବୁ କାମ ଧନ ଦ୍ୱାରା ସାଧିତ ହୋଇଥାଏ। କିନ୍ତୁ ସେଇ ଧନ ଯଦି କୌଣସି ଦୁର୍ଜନ କୃପଣ

ପାଖକୁ ଚାଲିଯାଏ, ସେ ତାହାକୁ ଅଧିକରୁ ଅଧିକ ଠୁଳ କରିବାରେ ଲାଗିବ, ଅଥବା ତାହାକୁ ଦ୍ୟୂତ, ବେଶ୍ୟା, ମଦିରା ତଥା ମାଂସ ଆଦି ସେବନରେ ବ୍ୟବହାର କରିବ। ଧନର ମଦରେ ମତୁଆଲ ହୋଇ ନାନା ଅପକର୍ମ କରିବ।

''ଠିକ୍ ଏହିଭଳି ଶକ୍ତି ବଡ଼ ଦିବ୍ୟ ବସ୍ତୁ। ଶକ୍ତିଶାଳୀ ହିଁ ସଂସାରରେ ସବୁକାମ କରିପାରେ। ଶକ୍ତିଶାଳୀ ଯଦି ବଳବାନ୍ ହୋଇ ନ ଥିବ ତେବେ ଅଶକ୍ତ ପୁରୁଷଙ୍କୁ ଦୁଷ୍ଟ ଦୁଃଖ ଦେବାରେ ଲାଗିବ। ଶକ୍ତିଶାଳୀ ହିଁ ଅଶକ୍ତ ଦୁର୍ବଳଙ୍କ ରକ୍ଷା କରେ। ସେହି ଶକ୍ତି ଯଦି ଦୁଷ୍ଟ ପାଆନ୍ତି, ସେମାନେ ସକଳପ୍ରକାର ଆତଙ୍କ କରନ୍ତି, ସମସ୍ତଙ୍କୁ ଦୁଃଖ ଦିଅନ୍ତି। ଏହାର ଉପଯୋଗ ସେମାନେ ପରପୀଡ଼ନ କାର୍ଯ୍ୟରେ ଲଗାଇଥା'ନ୍ତି।

''ବର୍ଷାର ଜଳ ଏକାଭଳି। ଏହା ସମୁଦ୍ରରେ ପଡ଼େ ଆଉ ଲବଣାକ୍ତ ହୋଇଯାଏ। ବର୍ଷାଜଳ ସେଥିରେ ପଡ଼ି ତା' ଭଳି ହୋଇଯାଏ। ଲୁଣିଆ କୂଅରେ ଲୁଣିଆ ହୋଇଯାଏ, ମିଠା କୂଅରେ ମିଠା। ଏ ବିଷୟରେ ଅତି ସୁନ୍ଦର ଉଦାହରଣ ଅଛି।

''ପ୍ରାଚୀନ କାଳରେ ଏପରି ପ୍ରଥା ଥିଲା ଯେ, ଶିଷ୍ୟ ଯେତେବେଳେ ଗୁରୁକୁଳକୁ ଯାଉଥିଲା, ସେ ବ୍ରହ୍ମଚର୍ଯ୍ୟ ବ୍ରତ ଧାରଣକରି ଯାଉଥିଲା, ସେତେବେଳେ ସେ ବିଷୟରୁ ଚିତ୍ତ ଦୂରକରି, ନିଜକୁ ପ୍ରଶ୍ନ କରିବାର ଯୋଗ୍ୟତା ଆଣୁଥିଲା। ତା'ର ଅନ୍ତଃକରଣ ଯେତେବେଳେ ଶୁଦ୍ଧ ହୋଇଯାଉଥିଲା, ସେତେବେଳେ ସେ ପ୍ରଶ୍ନ କରିବାପାଇଁ ଯୋଗ୍ୟ ହୋଇଯାଉଥିଲା। ସେତେବେଳେ ସେ ଯଥାର୍ଥ ପ୍ରଶ୍ନ ପଚାରୁଥିଲା। ଆଚାର୍ଯ୍ୟ ଦେଖୁଥିଲେ ଯେ ଏବେ ଏହି ପ୍ରଶ୍ନର ଉତ୍ତର ପାଇବାକୁ ସେ ଅଧିକାରୀ ହୋଇନାହିଁ, ସେତେବେଳେ କହି ଦେଉଥିଲେ— 'ଆଉ କିଛି ଦିନ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନକର, ତା' ପରେ ମୋ ପାଖକୁ ଆସିବ।'

''ଏହି ବିଧାନ ଅନୁସାରେ ଥରେ ଦେବତା, ଦାନବ ଆଉ ମଣିଷ, ଏପରି ତିନିପୁତ୍ର ଲୋକପିତାମହ ପ୍ରଜାପତି ବ୍ରହ୍ମାଙ୍କ ପାଖକୁ ଯାଇ ବ୍ରହ୍ମଚର୍ଯ୍ୟପୂର୍ବକ ରହିଲେ। ଅନେକ ବର୍ଷ ବ୍ରହ୍ମଚର୍ଯ୍ୟ ପାଳନକରିବାରୁ ସେମାନଙ୍କ ମନରେ ନିଜ ଦୋଷ ସମ୍ପର୍କରେ ଯୋଗ୍ୟତା ଆସିଗଲା। **ମଣିଷର ପତନ ସେ ପର୍ଯ୍ୟନ୍ତ ହେଉଥାଏ ଯେ ପର୍ଯ୍ୟନ୍ତ ସେ ତା'ର ଦୋଷ ଦେଖି ପାରୁ ନ ଥାଏ। ନିଜକୁ ନିଜେ ନିର୍ଦ୍ଦୋଷ ମନେକରୁଥାଏ। ଯେତେବେଳେ ତାକୁ ନିଜ ଦୋଷ ଦେଖାଯାଏ, ସେତେବେଳେ ସେ ଗୁରୁମାନଙ୍କ ପାଖକୁ ଯାଏ,** ସେଠାରେ ପ୍ରଶ୍ନ କରେ, ଦୋଷ ଦୂରକରିବାର ଉପାୟ ପାଏ ଓ ଦୋଷ ଦୂର କରିବାପାଇଁ ଚେଷ୍ଟାକରେ। ଦେବତା, ରାକ୍ଷସ ଆଉ ମଣିଷ ପୂର୍ଣ୍ଣବ୍ରହ୍ମଚର୍ଯ୍ୟ ପାଳନ କରି ରହୁଥିବାରୁ ନିଜ ନିଜ ଦୋଷ ଜାଣିଗଲେ।

''କିଛିଦିନ ପରେ ଦେବତାମାନେ ହାତଯୋଡ଼ି ଅତି ଶ୍ରଦ୍ଧାରସହିତ ବ୍ରହ୍ମାଙ୍କ ପାଖକୁ ଆସିଲେ। ଆଉ ପ୍ରଣାମକରି ଅତି ଦୀନଭାବରେ କହିଲେ, 'ପ୍ରଭୁ! ଆପଣ ଆମକୁ ଏପରି ଉପଦେଶ ପ୍ରଦାନ କରନ୍ତୁ ଯେଉଁଥିରେ ଆମର ମଙ୍ଗଳ ହେବ।''

ଏହା ଶୁଣି ବ୍ରହ୍ମା କିଛି ସମୟ ମୌନ ରହିଲେ ଓ ଏହାପରେ ''ଦ'' ବୋଲି ଶବ୍ଦ କହିଲେ। ଦେବତାମାନେ ଏହି ଉପଦେଶକୁ ସହସା ଗ୍ରହଣ କରିନେଲେ।

ବ୍ରହ୍ମା ପଚାରିଲେ—‘‘ତୁମେମାନେ ମୋ ଉପଦେଶର ତାତ୍ପର୍ଯ୍ୟ ବୁଝିଗଲ ତ ?’’

ଦେବତାମାନେ କହିଲେ, ‘‘ହଁ ଭଗବନ୍ ! ବୁଝିଗଲୁ ।

ପ୍ରଜାପତି ପଚାରିଲେ, ‘‘ଆଚ୍ଛା, କହିଲ ଦେଖି କ’ଣ ବୁଝିଛ ?’’

ଦେବତାମାନେ ସେମାନଙ୍କ ଚିନ୍ତାଧାରା ଅନୁସାରେ ଅନୁସନ୍ଧାନ କରି କହିଲେ, ଆମେମାନେ ଭୋଗୀ । ଅନବରତ ସ୍ୱର୍ଗୀୟ ସୁଖ ଭୋଗରେ ଲାଗିରହିଥାଉ । ତେଣୁ ପ୍ରଜାପତି ଆମକୁ ଇନ୍ଦ୍ରିୟଦମନ ନିମନ୍ତେ ଉପଦେଶ ଦେଇଛନ୍ତି । ସେମାନେ ଏପରି ସ୍ଥିରକରି କହିଲେ, ‘‘ଭଗବନ୍ ! ଆମକୁ ‘ଦ’ କହି ‘ଦମନ’ କରିବା ପାଇଁ ଉପଦେଶ ଦେଇଛନ୍ତି ! ଆପଣ ଆମକୁ ଶିକ୍ଷାଦେଇ କହିଛନ୍ତି, ଇନ୍ଦ୍ରିୟଙ୍କ ଦମନ କର ଆଉ ଚିତ୍ତର ବୃତ୍ତିକୁ ଦୂର କର ।’’

ବ୍ରହ୍ମା କହିଲେ, ‘‘ହଁ, ତୁମେମାନେ ଠିକ୍ ବୁଝିଛ । ଏହିପରି କର ।’’ ଏହା ଶୁଣି ଲୋକପିତାମହ ବ୍ରହ୍ମାଙ୍କୁ ପ୍ରଣାମ କରି ଦେବତାମାନେ ଚାଲିଗଲେ ।

ଏଥର ମଣିଷ ଆସିଲେ । ସେମାନେ ପ୍ରଜାପତିଙ୍କୁ ଉପଦେଶ ମାଗିଲେ । ବ୍ରହ୍ମା ସେମାନଙ୍କୁ ବି ‘‘ଦ’’ ଶବ୍ଦର ଉପଦେଶ ଦେଇ କହିଲେ, ‘‘ତୁମେ ଏହା ବୁଝିଗଲତ ?’’

ମଣିଷ କହିଲେ, ‘‘ହଁ ଆଜ୍ଞା ! ବୁଝିଗଲୁ ।’’

ପ୍ରଜାପତି ପଚାରିଲେ, ‘‘କ’ଣ ବୁଝିଲ ?’’

ମଣିଷ ଭାବିଲା, ସଂଗ୍ରହ କରିବା ଆମର ସ୍ୱାଭାବିକ ପ୍ରବୃତ୍ତି । ଯେ କୌଣସି ଲୋକକୁ ହଜାରେ ଟଙ୍କା ଦେଇ ଯଦି କୁହାଯାଏ, ‘ଏଥିରେ ତୁ କାମ ଚଳା’ ତେବେ ଏପରି ଲୋକ ଜଣେ ମିଳିବା ବିରଳ ଯିଏ କାମ ଶେଷ ହୋଇଯିବା ପରେ ବଳକା ଟଙ୍କାକୁ ଫେରାଇଦିଏ ଅଥବା ଅନ୍ୟଙ୍କୁ ବାଣ୍ଟିଦିଏ । ତା ନ ହେଲେ ସମସ୍ତେ କହିଥାନ୍ତି, ‘ପାଖରେ ଥାଉ । ପାଖରେ ଥିଲେ ଦରକାର ସମୟରେ କାମରେ ଆସିବ ।’ ସଂଗ୍ରହ କରୁଥିବା ହେତୁ ମଣିଷ ଦୁଃଖୀ । ଏଣୁ ପିତାମହ ଆମକୁ ‘ଦ’ ଶବ୍ଦରେ ‘ଦାନ’ର ଉପଦେଶ ଦେଇଛନ୍ତି । ଏପରି ମନେମନେ ସ୍ଥିରକରି ମଣିଷ କହିଲା—‘‘ଭଗବନ୍ ! ଆପଣ ଆମକୁ କହିଲେ ଯେ ‘ଦାନ’ କର । ଦାନକରିବା ବ୍ୟତୀତ ମଣିଷ ପାଇଁ ମଙ୍ଗଳପ୍ରଦ ଆଉ କିଛି ନାହିଁ ।

ବ୍ରହ୍ମା କହିଲେ, ‘‘ତୁମେ ଠିକ୍ ବୁଝିଛ । ଯାଅ, ଅନବରତ କିଛି ନା କିଛି ଦାନ କରୁଥାଅ ।’’ ଏପରି କଥା ଶୁଣି ବ୍ରହ୍ମାଙ୍କୁ ପ୍ରଣାମକରି ମଣିଷ ସେଠାରୁ ଚାଲିଗଲା । ଏଥର ଅସୁରଙ୍କ ପାଳି ଆସିଲା ।

ଅସୁରମାନେ ଲୋକପିତାମହ ବ୍ରହ୍ମାଙ୍କ ପାଦପଦ୍ମରେ ପ୍ରଣାମ କଲେ । ସେମାନେ ଉପଦେଶ ମାଗିବାରୁ ବ୍ରହ୍ମା ସେମାନଙ୍କୁ ସେଇ ‘ଦ’ ଶବ୍ଦର ଉପଦେଶ ଦେଲେ । ଆଉ ଏଥିରୁ କ’ଣ ବୁଝିଲେ ତାହା ଜଣାଇବାକୁ କହିଲେ ।

ଅସୁର କହିଲା, ‘‘ହଁ ଆଜ୍ଞା ! ବୁଝିଛୁ ।’’

ବ୍ରହ୍ମା ପଚାରିଲେ, ''କ'ଣ ବୁଝିଛ କୁହ।''

ଅସୁର ଭାବିଲା— ଆମେମାନେ କ୍ରୋଧୀ ଆଉ ହିଂସା ପରାୟଣ। ପ୍ରାଣ ପୋଷଣ ନିମନ୍ତେ ଅନ୍ୟଙ୍କୁ ପୀଡ଼ା ଦେଉଛୁ। ଦ୍ୱେଷ ଭାବରେ ଅନ୍ୟଙ୍କୁ ଦଣ୍ଡ ଦେଉଛୁ। ତେଣୁ ଦେବାଧିଦେବ ଆମକୁ 'ଦୟା' ଦେଖାଇବା ପାଇଁ ଉପଦେଶ ଦେଇଛନ୍ତି। ଏପରି ଭାବି ସିଏ କହିଲା– ''ବ୍ରହ୍ମନ୍! ଆପଣ 'ଦ' କହି 'ଦୟା' ଦେଖାଇବା ପାଇଁ ଉପଦେଶ ଦେଇଛନ୍ତି।''

ବ୍ରହ୍ମା କହିଲେ, ''ହଁ, ଠିକ୍ କଥା। ତୁମେ ଯାଇ ସବୁପ୍ରାଣୀଙ୍କୁ ଦୟା ଦେଖାଅ। ଏଥିରେ ତୁମର ମଙ୍ଗଳ ହେବ।''

ମହର୍ଷି ସୂତ ଶୌନକାଦି ଋଷିମାନଙ୍କୁ କହୁଛନ୍ତି—''ହେ ଋଷିଗଣ! 'ଦ' ଶବ୍ଦ ଏକ। ଏହା ଅର୍ଥ ସମସ୍ତେ ନିଜନିଜର ଯୋଗ୍ୟତା ତଥା ଭାବନା ଅନୁସାରେ ଭିନ୍ନ କଲେ। ଠିକ୍ ଏହିଭଳି ବେଦଶାସ୍ତ୍ରର ବାକ୍ୟକୁ ବି ଲୋକମାନେ ନିଜନିଜ ସ୍ୱଭାବ ଅନୁସାରେ ଭିନ୍ନଭିନ୍ନ ଅର୍ଥ କରିଥା'ନ୍ତି। ଜ୍ଞାନର ପରମ୍ପରା ଏକ ହୋଇଥାଉ ପଛେ, କିନ୍ତୁ ତାକୁ ଗ୍ରହଣ କରୁଥିବା ପାତ୍ର ତାହାକୁ ନିଜନିଜର ଭାବାନୁସାରେ ବୁଝିଥା'ନ୍ତି। ଏପରି ଅନେକ ଲୋକ ଅଛନ୍ତି ଯେଉଁମାନେ ନିଜକୁ ସୁହାଇବା ଭଳି ବେଦ ବିରୁଦ୍ଧ, ପାଖଣ୍ଡ ମତ ବି ପ୍ରଚାର କରନ୍ତି। ଏବଂ ପାଖଣ୍ଡୀ ହୋଇଯାଆନ୍ତି।''

ମହର୍ଷି ଶୌନକ ପଚାରିଲେ, ''ହଁ ଆଜ୍ଞା ମହର୍ଷି! ଆପଣଙ୍କ ଅଭିପ୍ରାୟ ଆମେ ବୁଝିଗଲୁ। ଏବେ କୃପାକରି ଆପଣ କୁହନ୍ତୁ, ଉଦ୍ଧବ ଭଗବାନଙ୍କୁ ଆଉ କି କି ପ୍ରଶ୍ନ ପଚାରିଥିଲେ।

ମହର୍ଷି ସୂତ କହିଲେ, ''ମହାରାଜ! ଉଦ୍ଧବ ଭଗବାନଙ୍କୁ ଏ କଥା ବି ପଚାରିଥିଲେ ଯେ, 'ହେ ପ୍ରଭୁ! ଗୋଟିଏ ସିଦ୍ଧାନ୍ତର ପ୍ରତିପାଦନରେ ଏତେ ଭିନ୍ନତା ହେଉଛି କାହିଁକି? ଭାଗବତ-ଧର୍ମ ତ ଏକ। ତହିଁରେ କେତେ ମତ, କେତେ ବାଦ, କେତେ ସିଦ୍ଧାନ୍ତ, କେତେ ପଦ୍ଧତି—ଏମିତି କାହିଁକି ହୋଇଛି?''

ଭଗବାନ କହିଲେ, ''ହେ ଉଦ୍ଧବ! ଏ ସବୁ ହେଉଛି ମୋ ମାୟାର ଖେଳ। ମୋ'ର ମାୟା କୀଟଠାରୁ ବ୍ରହ୍ମା ପର୍ଯ୍ୟନ୍ତ ପ୍ରତ୍ୟେକଙ୍କୁ ନଚାଉ ଥାଏ। ମାୟାରେ ମୋହିତ ବୁଦ୍ଧିଯୁକ୍ତ ପ୍ରାଣୀ ନିଜନିଜର କର୍ମାନୁସାରେ, ତଥା ନିଜନିଜର ରୁଚି ଅନୁସାରେ ମଙ୍ଗଳର ଭିନ୍ନଭିନ୍ନ ମାର୍ଗ କହିଥାନ୍ତି।''

ଉଦ୍ଧବ କହିଲେ, ''ଭଗବନ୍! ଏହି କଥାକୁ ମୋତେ ସ୍ପଷ୍ଟ ବୁଝାଇଦିଅନ୍ତୁ। କାରଣ ମୋ'ର ବୁଦ୍ଧି ବିଶେଷ ନାହିଁ। ମୋ'ର ବୁଦ୍ଧି ସ୍ଥୂଳ। ମୋତେ ଉତ୍ତମ ରୂପେ ଅତି ସରଳ ଭାବରେ ବୁଝାନ୍ତୁ।''

ଏହା ଶୁଣି ଭଗବାନ ହସିଲେ, ଆଉ କହିଲେ ''ହେ ଉଦ୍ଧବ! ସଂସାରରେ ତୁମେ ହିଁ ଏକମାତ୍ର କୁଶାଗ୍ର ବୁଦ୍ଧିସମ୍ପନ୍ନ ଲୋକ। ତୁମେ ହିଁ କେବଳ ମନୁଷ୍ୟ ଜନ୍ମର ସାର୍ଥକତା ବୁଝିଛ। ତୁମେ ଲୋକ କଲ୍ୟାଣ ପାଇଁ ଏପରି ପ୍ରଶ୍ନ ପଚାରିଛ। ତୁମେ

ଯା ବି ଇଚ୍ଛା କରୁଛ ଯେ ଅତି ଅଳ୍ପ ବୁଦ୍ଧିଥିବା ଲୋକ ଏହାକୁ ବୁଝନ୍ତୁ। ଠିକ୍ ଅଛି। ମୁଁ ତୁମକୁ ବୁଝାଇ ଦେଉଛି, ଲୋକମାନଙ୍କର ପରମାର୍ଥ ସମ୍ବନ୍ଧରେ ପ୍ରକୃତି ଆଉ ରୁଚି ଅନୁସାରେ କିପରି ବିଷମତା ହୋଇଥାଏ। ନିଜ ନିଜର ବାସନା ଅନୁସାରେ ଲୋକମାନେ ପରମାର୍ଥଙ୍କର କିପରି କ୍ଷୁଦ୍ର ଅର୍ଥ କରିଥାନ୍ତି।''

ମହର୍ଷି ସୂତ କହୁଛନ୍ତ, ''ହେ ମୁନିଗଣ! ପରମାର୍ଥ ବିଷୟରେ ଭିନ୍ନଭିନ୍ନ ମୁନିମାନଙ୍କର ଭିନ୍ନଭିନ୍ନ ମତ ହୋଇଥାଏ, ସେ ସମସ୍ତଙ୍କୁ ଭଗବାନଙ୍କର ମୁଖ ନିସୃତ ଶବ୍ଦରେ ଶାନ୍ତ ଚିତ୍ତରେ ଶ୍ରବଣ କରନ୍ତୁ।''

## ଛପ୍ପୟ

ଧର୍ମ ଏକ ପରମାର୍ଥ ବତାବେଁ ଯଶକୁଁ ଦୂସର।
ଅପର କାମକୁଁ କହେଁ ସତ୍ୟ ମହଁ କୋଇ ତତ୍ପର॥
ଶମ ଦମ ବୋଲି କୋଇ ଅପର ଐଶ୍ୱର୍ଯ୍ୟ ବତାବୈଁ।
ଦାନ ଭୋଗ ହୀ ସ୍ୱାର୍ଥ ଅପର ତପ ମଖ ମନ ଲାବୈଁ॥
କହେଁ ଦାନ ବ୍ରତ ୟମ ନିୟମ, ଭିନ୍ନ ଭିନ୍ନ ପରୁଷାର୍ଥ ହୈଂ।
କିନ୍ତୁ ନ ଶାଶ୍ୱତ ନିତ୍ୟ ୟେ, କ୍ଷୁଦ୍ର କର୍ମମୟ ସ୍ୱାର୍ଥ ହୈ॥



# ସ୍ୱଚ୍ଛରେ ସୁଖ ନାହିଁ

**ମର୍ଯ୍ୟର୍ପିତାତ୍ମନଃ ସଭ୍ୟ ନିରପେକ୍ଷସ୍ୟ ସର୍ବତଃ।**
**ମାୟାଽତ୍ମନା ସୁଖଂ ଯଭଦ୍‌କୁତଃ ସ୍ୟାଦ୍ ବିଷୟାତ୍ମନାମ୍ ।। ★**

[ଶ୍ରୀଭା. ୧୧ସ୍କ. ୧୪ଅ. ୧୨ଶ୍ଲୋକ]

**ଛପ୍‌ପୟ**

ଶୁଭ କରମନିତେଁ ଲୋକ ମିଲୈଂ ଜାଓ ସୁଖ ପାଓ।
ପୁଣ୍ୟ ଛୀନ ହ୍ୱୈ ଜାୟଁ ଗିରୌ ଉଲଟେ ଜଗ ଜାଓ।।
ମୋହ ଜନକ ଦୁଖ ହେତୁ ତୁଚ୍ଛ ସୁଖ ଦୈବେ ବାରେ।
ଦୁଖ ପରନାମୀ ଲଗୈଂ ତନିକ ଇନ୍ଦ୍ରିନିକୁଁ ପ୍ୟାରେ।।
ଜୋ ସୁଖ ମେରୀ ଭକ୍ତିମହଁ, ବହ ସୁଖ ବିଷୟନିମହଁ ନହୀଂ।
ମିଶ୍ରୀମହଁ ଜୋ ସୁଖ ମିଲୈଂ ଲୋଟାମହଁ ପାବୈଂ କହୀଂ।।

ଗୋଟିଏ ଅତିପ୍ରସିଦ୍ଧ ଲୋକକଥା ଅଛି। ଥରେ କେତେକ ଅନ୍ଧ ବସି ହାତୀ କିପରି ହୋଇଥିବ ବୋଲି କଥାବାର୍ତ୍ତା ହେଉଥିଲେ। ଏହି ସମୟରେ ଜଣେ ବୁଦ୍ଧିମାନ ଲୋକ ପହଞ୍ଚିଗଲା। ସେ କହିଲା, ''ତୁମେମାନେ ହାତୀ ଦେଖିବାକୁ ଚାହୁଁଛ କି?''

ଅନ୍ଧମାନେ କହିଲେ, ''ହଁ! ହାତୀ ଦେଖିବାକୁ ଆମର ଭାରି ଇଚ୍ଛା।''

ବୁଦ୍ଧିମାନ ଲୋକ ରାଜାଘରୁ ଗୋଟିଏ ହାତୀ ନେଇଆସିଲା। ସେ ଅନ୍ଧଙ୍କୁ କହିଲା, ''ଆସ, ହାତୀକୁ ଦେଖ। କିନ୍ତୁ ଜଣଜଣ ହୋଇ ହାତୀପାଖକୁ ଆସ ଆଉ ଦେଖ।''

ଏହାଶୁଣି ଅନ୍ଧଙ୍କ ଭିତରୁ ଜଣେ ଆସିଲା। ହାତୀର ଶୁଣ୍ଢକୁ ହାତମାରି ସାଉଁଳିଲା। ହାତୀ ସୁଁ କରିଦେଲା। ସେ ପଛକୁ ଘୁଞ୍ଚିଯାଇ କହିଲା—''ଅରେ! ହାତୀ ତ ଅଜଗର ଭଳି, ଇଏ ସୁଁ ସୁଁ ବି କରୁଛି।''

ଏଥର ଦ୍ୱିତୀୟଜଣକ ଆସିଲା। ତା ହାତ ହାତୀର ଲମ୍ବାଲମ୍ବା ଦାନ୍ତ ଉପରେ ପଡ଼ିଲା। ସେ ଦାନ୍ତରେ ହାତ ବୁଲାଉ ଥିଲା। ଏହି ସମୟରେ ହାତୀ ଶୁଣ୍ଢକୁ ଉଠାଇ

---

★ ଭଗବାନ ଶ୍ରୀକୃଷ୍ଣଚନ୍ଦ୍ର ଉଦ୍ଧବଙ୍କୁ କହୁଛନ୍ତି—''ହେ ଉଦ୍ଧବ! ହେ ସୌମ୍ୟ! ଯିଏ ମୋଠାରେ ଚିତ୍ତ ସନ୍ନିବେଶିତ କରିଦେଇଛି ଯିଏ ମୋ'ଠାରେ ଲୀନ ହୋଇଯାଇଛି, ସବୁଆଡୁ ନିରପେକ୍ଷ ହୋଇଯାଇଛି, ଏପରି ଲୋକଙ୍କୁ ଯାହା ସୁଖ ପ୍ରାପ୍ତ ହୁଏ ସେପରି ସୁଖ ଇନ୍ଦ୍ରିୟ ଲୋଲୁପ ବ୍ୟକ୍ତିଙ୍କୁ କିପରି ପ୍ରାପ୍ତ ହେବ।''

କେତେଥର ହାତୀର ଦାନ୍ତକୁ ସାଉଁଳିବା ପରେ ଅନ୍ଧବାବୁ କହିଲା—"ଅରେ ! ହାତୀ ତ ଢେଙ୍କି ଭଳି ।"

ଏଥର ତୃତୀୟ ଅନ୍ଧ ଆସିଲା । ତା ହାତ ହାତୀର ଗୋଡ଼ରେ ପଡ଼ିଗଲା । ଦୁଇ ଚାରିଥର ତଳୁ ଉପରକୁ ହାତରେ ସାଉଁଳିବା ପରେ, ଆଉ ଚାରିପଟେ ହାତ ବୁଲାଇବା ପରେ କହିଲା, "ପଥରର ମୋଟା ଆଉ ଚିକ୍‌କଣ ଖୁମ୍ବ ଭଳି ହାତୀ ହୋଇଥାଏ ।"

ଏହାପରେ ଚତୁର୍ଥ ଅନ୍ଧ ହାତୀ ଦେଖିବାକୁ ଆସିଲା । ତା ହାତ ହାତୀର ଲାଙ୍ଗୁଳ ଉପରେ ପଡ଼ିଗଲା । ଲାଙ୍ଗୁଳରେ ବାରମ୍ବାର ହାତ ବୁଲାଇବା ପରେ ଅଗରେ ଥିବା ପୁଚ୍ଛକୁ ସାଉଁଳିବାରେ ଲାଗିଲା । ଏହାପରେ କହିଲା, "କାନ୍ଥରେ ଟଙ୍ଗା ହୋଇଥିବା ଚାବୁକ ଭଳି ହାତୀ ହୋଇଥାଏ ।" ଏହିଭଳି ଯେଉଁ ଅନ୍ଧର ହାତ ଦୈବତଃ ହାତୀର ଯେଉଁ ଅଙ୍ଗରେ ପଡ଼ିଗଲା, ସେ ହାତୀକୁ ସେହିଭଳି ଆକାରର ବୋଲି ବର୍ଣ୍ଣନା କଲା । ହାତୀକୁ ଦେଖିଥିବା ଅନ୍ଧମାନେ ଜଣେ ଜଣେ କବି ଥିଲେ । ସେମାନେ ହାତୀ ଉପରେ ସୁନ୍ଦର ସୁନ୍ଦର କବିତା ରଚନା କଲେ । କିଛି ଦିନପରେ ସେମାନଙ୍କର କାଳ ହୋଇଗଲା । ଏହାଙ୍କ ପରେ ଏହାଙ୍କ ଅନ୍ଧଶିଷ୍ୟ ଅନେକ ହେଲେ । ସେମାନେ ଆଉ ହାତୀକୁ ଦେଖିବାପାଇଁ ପ୍ରୟାସ କଲେ ନାହିଁ । ସେମାନେ ସ୍ଥିରକରିନେଲେ, "ବାବା ବାକ୍ୟ ପ୍ରମାଣମ୍ ।" ଯିଏ ଯେଉଁ ଅନ୍ଧକୁ ଗୁରୁ କଲା ସେ ତା'ର କବିତାର ବାକ୍ୟକୁ ଭାଷ୍ୟ, ଟିକା କରିବାରେ ଲାଗିଲା । "ଆଜ୍ଞା ଗୁରୁଣାଂ ମବିଚାରଣୀୟାମ୍ ।" ଅନେକ ଯୁକ୍ତି, ଅନେକ ଭାଷ୍ୟ ମାଧମରେ ଗୁରୁଙ୍କ ସିଦ୍ଧାନ୍ତକୁ ପୁଷ୍ଟ କରିବାରେ ଲାଗିଲା । ତା'ର ଅନ୍ଧଗୁରୁ ହାତୀକୁ ଖୁମ୍ବ ଭଳି କହିଥିଲା ! ସେ ତେଣୁ ନାନା ତର୍କ ଉପସ୍ଥାପନ କରି, ପ୍ରମାଣର ସହିତ ଅନ୍ୟର ମତକୁ ଅସତ୍ୟ ବୋଲି କହି ଖୁମ୍ବ ସ୍ୱରୂପକୁ ସତ୍ୟରେ ପ୍ରତିଷ୍ଠିତ କରିବାରେ ଲାଗିଲା । ଅନ୍ୟଗୁରୁଙ୍କ ଶିଷ୍ୟମାନେ ତାକୁ ଖଣ୍ଡନକରି କିଏ ଅଜଗର, କିଏ ଢେଙ୍କୀ ବୋଲି ପ୍ରମାଣ କରିବାରେ ଲାଗିଲେ ।

କୁକୁରଙ୍କ ସ୍ୱଭାବ ହେଉଛି ଅପୂର୍ବ ବସ୍ତୁଦେଖି ଭୁକିବା । ଗୋଟିଏ କୁକୁର ଭୁକିବା ଆରମ୍ଭକଲେ ପାଖରେ ଯେତେ କୁକୁର ଥାଆନ୍ତି ସମସ୍ତେ ଭୁକନ୍ତି । ଅନ୍ଧାର ରାତିରେ ଗୋଟିଏ କୁକୁର ଚୋରର ଅସ୍ପଷ୍ଟ ଛାଇ ଦେଖିଲା । ସେ ଭୁକିଭୁକି ଆଗକୁ ଦୌଡ଼ିଲା । ଯା ଭିତରେ ଛାଇଟି ଲୁଚିଗଲା । ସେ କୁକୁର ଭୁକୁଥିବା ଶୁଣି ଅନ୍ୟ କୁକୁରମାନେ ଭୁକିବା ଆରମ୍ଭ କରିଦେଇଥିଲେ । ଛାଇ ଲୁଚିଯିବାରୁ ପ୍ରଥମ କୁକୁର ତା'ର ଭୁକିବା ବନ୍ଦ କରିଦେଇଥାଏ । ହେଲେ ଅନ୍ୟ କୁକୁରମାନେ ପୂର୍ବଭଳି ଭୁକିବାରେ ଲାଗିଥାନ୍ତି । କେହି ଯଦି ପଚାରେ, "ଆରେ ଶ୍ୱାନ ! ତୁ କାହିଁକି ଭୁକୁଥିଲୁ ? ତୁ ତ କିଛି ଦେଖିନାହୁଁ, ଯଦି କିଛି ଥିଲା ତାହା ତ ଆଉ ଗୋଟିଏ କୁକୁର ଦେଖିଥିଲା ?"

ସେଇ କୁକୁରମାନେ ଉତ୍ତର ଦେବେ, "ଆମର ସ୍ୱଭାବ ତ ଏୟା । ଆମେ କିଛି ଦେଖି ନ ଥିଲେ, ଜାଣି ନ ଥିଲେ ବି ପ୍ରଥମେ ଜଣେ ସତ୍ୟ, ଅସତ୍ୟ, ସତ୍ୟଅନୁରୂପ କିଛି ଦେଖିଛି, ସେ ଯାହାଦେଖି ଶବ୍ଦକଲା, କହିଲା, ଆମେ ତାହାକୁ କେବଳ ଦୋହରାଇଛୁ ମାତ୍ର । ତା ସ୍ୱର ସହିତ ସ୍ୱର ମିଳାଇଛୁ ।"

ଠିକ୍ ଏହିଭଳି ଅନ୍ଧଗୁରୁମାନେ କିଛିକିଛି, ଅଳପ ଅଳପ କଥା ଦେଖି କିଛିଟା ଅନୁମାନ କରିଥିଲେ। କିନ୍ତୁ ସେମାନଙ୍କ ଶିଷ୍ୟମାନେ, ଭାଷ୍ୟକାରମାନେ କିଛି ନ ଜାଣି ସ୍ୱଳ୍ପ ଅନୁମାନ ବାକ୍ୟକୁ ଏପଟ ସେପଟ କରି ''ଆମ ଗୁରୁଙ୍କ ବଚନ ହିଁ ସତ୍ୟ, ତୁମେମାନେ ଅସତ୍ୟ କହୁଛ। ଆସ ଆମ ସହିତ ଶାସ୍ତ୍ରାର୍ଥ କର।'' ଶାସ୍ତ୍ରାର୍ଥରେ ଯିଏ ଜିତିପାରିବ ନାହିଁ ସେ ଶସ୍ତ୍ରାର୍ଥ କରବାରେ ଲାଗେ। ମୁଣ୍ଡ ଫଟା, ଖୁନ୍ ଖରାବ୍ ଆରମ୍ଭ ହୋଇଯାଏ।

ଏହା କେବଳ ଏକ ଦୃଷ୍ଟାନ୍ତ। ଏହି ଦୃଷ୍ଟାନ୍ତରେ ଯେଉଁ ଉପମେୟ କଥା ତାହା ବିଚାର କରାଯାଉ। ବ୍ରହ୍ମ ହେଉଛି ହାତୀ। ବୁଦ୍ଧିମାନ ଲୋକଟି, ଯିଏ ଅନ୍ଧଙ୍କୁ ହାତୀ ଦେଖାଇଥିଲା ସେ ହେଉଛି ବେଦ। ଅନ୍ଧମାନେ ମତ-ପ୍ରବର୍ତ୍ତକ। ଏହି ମତ-ପ୍ରବର୍ତ୍ତକଙ୍କ ପାଖରେ ବେଦ ରଖାଗଲା ସେମାନଙ୍କ ଦର୍ଶନାର୍ଥ। ଏବେ ଯେଉଁ ଅନ୍ଧ ଯେଉଁ ଅଂଶକୁ ଅନୁଭବ କଲା, ତାହାକୁ ହିଁ ସମଗ୍ର ବୋଲି ବର୍ଣ୍ଣନା କରିବାରେ ଲାଗିଲା। ସେମାନଙ୍କର ମତାନୁଯାୟୀ ଭାଷ୍ୟକାର ଯେଉଁମାନେ ହେଲେ, ସେମାନଙ୍କର ଅନୁଭବ କରିବାର ଆବଶ୍ୟକତା ତ ନ ଥିଲା, କେବଳ ସେମାନଙ୍କ ଶବ୍ଦକୁ, ବଚନକୁ ଦୋହରାଇବାରେ ଲାଗିଲେ। ଅନ୍ୟ ମତାବଲମ୍ବନକାରୀଙ୍କ ମତକୁ ଖଣ୍ଡନ କରିବାରେ ଲାଗିଲେ।

ଯେଉଁମାନଙ୍କର ଆଖି ଅଛି, ଅର୍ଥାତ୍ ଯେଉଁମାନେ ପ୍ରକୃତ ଭଗବାନ୍‌ଙ୍କ ଭକ୍ତ, ସେମାନେ ବ୍ରହ୍ମକୁ ଦେଖନ୍ତି, ତାକୁ ସ୍ପର୍ଶକରନ୍ତି, ଅଥବା ତାଙ୍କର ସ୍ପର୍ଶ ଲାଭକରନ୍ତି, ସେହି ଭାଷ୍ୟକାରମାନେ ଅନ୍ଧଙ୍କ କଥା ଶୁଣି ହସନ୍ତି। କିନ୍ତୁ ତାଙ୍କୁ ବୁଝାଇବାକୁ ଚେଷ୍ଟା କରନ୍ତି ନାହିଁ, କାରଣ ସେମାନଙ୍କୁ ବୁଝାଇଲେ ବି ସେମାନେ ବୁଝନ୍ତି ନାହିଁ। ବାହ୍ୟ ଚିହ୍ନ ଦେଖି, ହାତର ସ୍ପର୍ଶ ଦେଖି ତା' ଉପରେ ଅଟଳ ହୋଇଯାଆନ୍ତି। ଏହାହିଁ ହେଉଛି ଅନ୍ଧ-ପରମ୍ପରା। ଏହି ଅନ୍ଧ-ପରମ୍ପରା କାରଣରୁ ଅନେକ ବାଦ, ନାନା ମତ, ନାନା ସମ୍ପ୍ରଦାୟ ତଥା ନାନା ପନ୍ଥା ହୋଇଯାଇଛି। ସମସ୍ତେ ନିଜନିଜ ପନ୍ଥାକୁ ସତ୍ୟରୂପେ ଉପସ୍ଥାପନ କରିବାରେ ବ୍ୟସ୍ତ ରହିଛନ୍ତି। ସେମାନେ ସ୍ୱୟଂ ସତ୍ୟର ଅନୁସନ୍ଧାନ କରନ୍ତି ନାହିଁ। ସର୍ପକୁ ଖୋଜନ୍ତି ନାହିଁ, ହେଲେ କାତିକୁ ପିଟିବାରେ ଲାଗନ୍ତି। ଏହା ହିଁ ହେଉଛି ଭଗବାନଙ୍କର ମାୟା। ଏଇଥିରେ ବିମୋହିତ ହୋଇ ଭିନ୍ନଭିନ୍ନ କର୍ମ ଆଉ ଭିନ୍ନଭିନ୍ନ ରୁଚିବିଶିଷ୍ଟ ପୁରୁଷ ଶ୍ରେୟସିଦ୍ଧିର ମାର୍ଗକୁ ଭିନ୍ନ ଭିନ୍ନ ପ୍ରକାର ପ୍ରତିପାଦିତ କରନ୍ତି।''

ମହର୍ଷି ସୂତ କହୁଛନ୍ତି, ''ହେ ମୁନିଗଣ! ଯେତେବେଳେ ଉଦ୍ଧବ ଭଗବାନଙ୍କୁ ପ୍ରଶ୍ନ ପଚାରିଲେ— ବ୍ରହ୍ମବାଦୀ ଲୋକମାନେ ଶ୍ରେୟସିଦ୍ଧି ନିମନ୍ତେ ଯେଉଁ ପ୍ରକାର ଅନେକ ମାର୍ଗ କଥା କହୁଛନ୍ତି, ନିଜନିଜ ଦୃଷ୍ଟିରେ ତାହାସବୁ ଶ୍ରେଷ୍ଠ ନା ସେଗୁଡ଼ିକ ମଧ୍ୟରେ ସର୍ବଶ୍ରେଷ୍ଠ ମାର୍ଗ କିଛି ଅଛି? ସେତେବେଳେ ଭଗବାନ କହିଥିଲେ, 'ମାୟା ସହିତ ସମ୍ବନ୍ଧ ରଖି ଯେଉଁଠାରେ ବାଦ ବିବାଦ ଲାଗିଥାଏ ସେଠାରେ ପୁଣି ସତ୍ୟ କିପରି ମିଳିପାରନ୍ତା! ମୋ ମାୟାରେ ମୋହିତ ମନୁଷ୍ୟମାନେ ମତମତାନ୍ତରର ମାର୍ଗରେ ମୃଗତୃଷ୍ଣା ସଦୃଶ ଇତସ୍ତତ ଓ ପ୍ରତାରିତ ହିଁ ହେଉଥାନ୍ତି।

ଜଣେ କର୍ମବାଦୀ ଲୋକ ଅଛି। ସେ ବେଦ ଅଧ୍ୟୟନ କରିବାପରେ ସିଦ୍ଧାନ୍ତରେ ଉପନୀତ ହେଲା ଯେ, କର୍ମ ହେଉଛି ପରମ ପୁରୁଷାର୍ଥ। ତାଙ୍କ ମତ ଅନୁସାରେ କର୍ମ ହେଉଛି ଚାରି ପ୍ରକାରର। ନିତ୍ୟକର୍ମ, ନୈମିତ୍ତିକ କର୍ମ, କାମ୍ୟକର୍ମ ଆଉ ନିଷିଦ୍ଧ

କର୍ମ। ନିତ୍ୟକର୍ମ ହେଉଛି ସନ୍ଧ୍ୟାବନ୍ଦନାଦି କର୍ମ, ଯାହାକୁ କର୍ତ୍ତବ୍ୟ ବୋଲି ମନେକରି ପ୍ରତ୍ୟହ କରାଯାଏ, ଯାହା କରିବାଦ୍ୱାରା ବିଶେଷ କିଛି ଫଳ ମିଳେ ନାହିଁ। କିନ୍ତୁ ତାହା ସବୁ ନ କଲେ ଦୋଷ ଲାଗେ।

କୌଣସି ନିମିତ୍ତରେ ଯାହା କରାଯାଏ ତାହାକୁ ସେମାନେ ନୈମିତ୍ତିକ କର୍ମ ବୋଲି କହିଥାନ୍ତି। ନିମିତ୍ତ ଆସିଲେ ତାହା କରାଯାଏ। ଯଥା, ଘରେ ପିଲାଟିଏ ଜନ୍ମ ହେଲା, ତେବେ ତା'ର ଜାତ ସଂସ୍କାର କର୍ମ, ନନ୍ଦୀମୁଖ ଶ୍ରାଦ୍ଧ ଆଦି କରିବା। ଗ୍ରହଣ ସମୟରେ ସ୍ନାନ, ଦାନ, ପୁଣ୍ୟ ଆଦି କର୍ମ; ବାରୁଣୀ, ମହାବାରୁଣୀ ଆଦି ପର୍ବ ପଡ଼ିଲେ ଗଙ୍ଗାରେ ସ୍ନାନାଦି କରିବା। ଏ ସବୁ କୌଣସି ନିମିତ୍ତରେ କରାଯାଏ, ତେଣୁ ଏ ସବୁ ନୈମିତ୍ତିକ କର୍ମ।

କୌଣସି କାମନାର ପୂର୍ତ୍ତି ନିମନ୍ତେ ଯେଉଁ କର୍ମ କରାଯାଏ ତାହାକୁ 'କାମ୍ୟକର୍ମ' କୁହାଯାଏ। ଯେଉଁଭଳି ସ୍ୱର୍ଗକାମନାରେ ଅଶ୍ୱମେଧ ଯଜ୍ଞ, ପୁତ୍ର କାମନାରେ ପୁତ୍ରେଷ୍ଟି ଯଜ୍ଞ। କାମନାର ପୂର୍ତ୍ତି ନିମନ୍ତେ ଯେଉଁ ସବୁ ଶୁଭ ଅନୁଷ୍ଠାନ କରାଯାଏ ସେ ସବୁର ଗଣନା ମୀମାଂସକମାନେ କାମ୍ୟକର୍ମରେ କରିଛନ୍ତି।

ଯେଉଁ କର୍ମ ନିମନ୍ତେ ଶାସ୍ତ୍ର ନିଷେଧ କରିଛି ସେପରି କର୍ମକୁ ନିଷିଦ୍ଧ କର୍ମ କୁହାଯାଏ। ଯେପରି ପିଆଜ ରସୁଣ ପର୍ଯ୍ୟାପ୍ତ ଭୋଜନ କରିବା, ପର ସ୍ତ୍ରୀ ଗମନ କରିବା, ଦୁର୍ଜନ ସଂଗ କରିବା ଇତ୍ୟାଦି ଇତ୍ୟାଦିକୁ ଶାସ୍ତ୍ର ନିଷେଧ କରିଥାଏ। ସେପରି କର୍ମସବୁକୁ ପରିତ୍ୟାଗ କରିବା।

(୧) ଏହି କର୍ମବାଦୀମାନେ କୁହନ୍ତି, 'ତୁମେ ନିଷିଦ୍ଧକର୍ମ ପରିତ୍ୟାଗ ପୂର୍ବକ ସ୍ୱର୍ଗ କାମନାକରି ଯେଉଁଭଳି ସମ୍ଭବ ସେହିଭଳି ଜୀବନର ଶେଷ ପର୍ଯ୍ୟନ୍ତ କାମ୍ୟକର୍ମ କରୁଥିବା ଉଚିତ। ଏହିଠାରେ ଯାଗଯଜ୍ଞାଦି ପୁଣ୍ୟକର୍ମ କରୁଥିବା ଉଚିତ। ଏହିଠାରେ ଯାଗଯଜ୍ଞାଦି ପୁଣ୍ୟ କର୍ମ କଲେ ମୃତ୍ୟୁପରେ ଉତ୍ତମଲୋକ ପ୍ରାପ୍ତହେବ। ପୁଣ୍ୟ ଯେତେବେଳେ କ୍ଷୀଣ ହୋଇଯିବ, ସରିଯିବ ସେତେବେଳେ ଅତି ଧନୀ ଓ ସମ୍ଭ୍ରାନ୍ତ ପରିବାରରେ ତୁମର ଜନ୍ମ ହେବ। ସେତେବେଳେ ବି ବଡ଼ ବଡ଼ ଯାଗ-ଯଜ୍ଞ କରିବ। ଏପରି ଯଜ୍ଞାନୁଷ୍ଠାନ କରିବ ଯାହା ଅକ୍ଷୟ ଲୋକପ୍ରଦାନକାରୀ ହେବ। ଏପରି କରି ପୁନର୍ବାର ସ୍ୱର୍ଗାଦି ପୁଣ୍ୟଲୋକର ସୁଖ ଭୋଗକର। ଏହାହିଁ ହେଉଛି ପୁରୁଷାର୍ଥ। ଏହାହିଁ ଲକ୍ଷ୍ୟ। ଏହାହିଁ ହେଉଛି ମୁକ୍ତି। କର୍ମ ହେଉଛି ସବୁ।

(୨) କେତେକ ଲୋକ କୁହନ୍ତି, ସଂସାରରେ ସୁଖ ଅଛି ଜୀବନରେ। ମଣିଷ ଯେତେ ଦୁଃଖୀ ହେଉପଛେ ମରିବାକୁ ଆଦୌ ଇଚ୍ଛା କରେ ନାହିଁ। ମଣିଷ ତା' ପ୍ରାଣରକ୍ଷା ପାଇଁ ଅଦମ୍ୟ ଉଦ୍ୟମ କରେ। ଯିଏ ଅତି ଦୁଃଖୀ, ରୋଗୀ, ସେ ବି ମରିବାକୁ ଚାହେଁ ନାହିଁ। ମୁହଁରେ କୁହନ୍ତି, 'ମୁଁ ମରିହେଲେ ଯାଆନ୍ତି', କିନ୍ତୁ ମନ ଭିତରେ ବଞ୍ଚିବାପାଇଁ ପ୍ରଗାଢ଼ ଆଶା ସଂଚାର କରିଥାନ୍ତି। ଏ ପ୍ରସଙ୍ଗରେ ସୁନ୍ଦର ଦୃଷ୍ଟାନ୍ତ ଅଛି।

ଜଣେ କାଠୁରିଆ ଥିଲା। ଅତି ବୁଢ଼ା। ଶ୍ୱାସ ରୋଗ ବି ଥିଲା। ପୁଣି ଅତି ଦରିଦ୍ର। ତା ସ୍ତ୍ରୀ ମରିଯାଇଥିଲା। ଏକମାତ୍ର ପୁଅ ବି ମରିଯାଇ ଥିଲା। ପାଖରେ

ଥିଲା ଭୁଆସୁଣୀ ଅଥଚ ଅନ୍ଧ ଝିଅଟିଏ। ବୁଢ଼ା ପ୍ରତିଦିନ ପାଖ ବଣକୁ ଯାଏ। ଅତି କଷ୍ଟରେ ଶୁଖିଲା କାଠ କାଟେ। ତାକୁ ମୁଣ୍ଡରେ ବୋହି ପାଖ ସହରରେ ବିକେ। ଅଳ୍ପ ଯେତିକି ପଇସା ମିଳେ ତହିଁରେ ଅତି ଦୁଃଖରେ ଚଳେ। ଶ୍ୱାସ ଯୋଗୁଁ ଯେଉଁଦିନ ବଣକୁ ଯାଇପାରେ ନାହିଁ ସେ ଦିନ ଉପବାସ। ଏହିଭଳି ଦିନେ ବେମାର ପଡ଼ି ବଣକୁ ଯାଇପାରିଲା ନାହିଁ। ତହିଁ ଆରଦିନ ଅତିକଷ୍ଟରେ ବାଡ଼ି ଠୁକୁ ଠୁକୁ କରି ବଣକୁ ଗଲା। ଅତିକଷ୍ଟରେ କିଛି କାଠ ଏକାଠିକରି ବିଡ଼ାବାନ୍ଧିଲା। ବିଡ଼ାକୁ ଅତିକଷ୍ଟରେ ମୁଣ୍ଡରେ ଥୋଇ କ୍ଷୁଧାର୍ତ୍ତ ଓ ରୁଗ୍ଣ ବୁଢ଼ା ଶ୍ୱାସରେ ଧଇଁ ସଇଁ ହୋଇ ଲାହୁଡ଼ି ଆଶ୍ରାରେ ଗୋଟିଏ ଗୋଟିଏ ଆଗକୁ ଚାଲିଲା। ଏଣେ ଜ୍ୟେଷ୍ଠମାସ, ମଧ୍ୟାହ୍ନ ସମୟ। ମୁଣ୍ଡ ଉପରେ ପ୍ରଚଣ୍ଡ ସୂର୍ଯ୍ୟତାପ, ମାଟି ଅତି ଉତପ୍ତ, ପେଟରେ ଜଠରାଗ୍ନି। ବୁଢ଼ା ଦଶ ପାହୁଣ୍ଡ ଯାଇ ଟିକିଏ ବିଶ୍ରାମ କରିକରି ଆଗକୁଆଗକୁ ଚାଲିଥାଏ। ଏହିପରି କିଛିସମୟ ଚାଲିବାପରେ ବୁଢ଼ା ଗୋଡ଼ରେ କଣ୍ଟା ପଶିଗଲା। ବିଚରା ଆଉ ଚାଲିପାରିଲା ନାହିଁ। ଆଗରେ ଶମୀ ବୃକ୍ଷଟିଏ ଥିଲା। ତା' ତଳେ ବସିଗଲା ଏବଂ ଅତ୍ୟଧିକ କଷ୍ଟରେ ବିବଶ ହୋଇ କହିଲା, ''ମୃତ୍ୟୁ ହେଲେ ହୋଇଯାଆନ୍ତା। ମୃତ୍ୟୁ ବି ଆସୁନାହିଁ।''

ଠିକ୍ ଏତିକିବେଳେ ହଠାତ୍ ଏକ ବିକରାଳରୂପର ସ୍ତ୍ରୀ, ମୁଣ୍ଡର ବାଳ ଇତସ୍ତତଃ ଝୁମ୍ପୁରା ଉଡୁଥିଲା, ଆସି ବୁଢ଼ା ପାଖରେ ପହଞ୍ଚିଗଲା। ଭୟଙ୍କର ରୂପ ଦେଖି ବୁଢ଼ାର ହଲପ ଶୁଖିଗଲା। ସେଇ ଭୟଙ୍କରରୂପୀ ନାରୀ କହିଲା—''ମୋ ନାମ ମୃତ୍ୟୁ। ତୁ ଡାକିବାରୁ ମୁଁ ଆସିଛି। କହ କ'ଣ ପାଇଁ ଡାକିଲୁ।''

ବୁଢ଼ା ଏତିକି ଶୁଣିବା କ୍ଷଣି ତା' କଣ୍ଠ ଶୁଖିଗଲା। ସେ ତ ସତରେ ମୃତ୍ୟୁକୁ ବି ଡାକି ନ ଥିଲା। ସାକ୍ଷାତ ମୃତ୍ୟୁକୁ ଆଖିଆଗରେ ଦେଖି ତା'ର ଅବସ୍ଥା ଶୋଚନୀୟ ହୋଇଗଲା। ସେ କହିଲା— ''ମୁଁ ବହୁତ କ୍ଳାନ୍ତ। ମୋ ବୋଝକୁ କେହି ଉଠାଇ ଦେବାକୁ ନାହାନ୍ତି। ମୋ କାଠ ବିଡ଼ାଟା ମୁଣ୍ଡ ଉପରେ ଥୋଇ ଦିଅନ୍ତନି।''

(୩) ଏହି ଦୃଷ୍ଟାନ୍ତ କହିବାର ତାତ୍ପର୍ଯ୍ୟ ହେଉଛି, କେହି ବି ମରିବାକୁ ଚାହାନ୍ତି ନାହିଁ। ସବୁ ପ୍ରାଣୀ ଜୀବନକୁ ଖୁବ୍ ଭଲପାଆନ୍ତି। କିନ୍ତୁ ଏହି ଶରୀର ହେଉଛି ପଞ୍ଚଭୌତିକ, ଅନିତ୍ୟ, କ୍ଷଣଭଙ୍ଗୁର। ଏଥିରେ ସହସ୍ର ଛିଦ୍ର ଅଛି, ଏହାର ବିନାଶ ଅବଶ୍ୟ ହେବ। ସବୁକାଳ ପାଇଁ ଏହି ଶରୀର ଜୀବିତ ରହିପାରିବ ନାହିଁ। **ଏହି ଲୋକରେ ଯେ ପର୍ଯ୍ୟନ୍ତ ଯାହାର ପୁଣ୍ୟମୟୀ କୀର୍ତ୍ତି ଜୀବିତ ରହିଥାଏ, ସେ ପର୍ଯ୍ୟନ୍ତ ସେ ସ୍ୱର୍ଗଲୋକର ସୁଖ ଭୋଗ କରୁଥାଏ।** କାବ୍ୟ ଅଳଙ୍କାର ରଚୟିତା କବିଗଣ କୁହନ୍ତି, 'ନିଜର କୀର୍ତ୍ତି ସଂସାରରେ ଅମର ହୋଇ ରହିବା ହେଉଛି ପୁରୁଷାର୍ଥ। ଏହା ହିଁ ଶ୍ରେୟ।' ଏମିତିତ କେତେନା କେତେ ଅନାମଧେୟ ପ୍ରତିଦିନ ଜନ୍ମ ହେଉଛନ୍ତି ଆଉ ମରୁଛନ୍ତି। କିନ୍ତୁ ଜନ୍ମ ସେପରି ଲୋକର ସାର୍ଥକ ହୋଇଥାଏ, ଯାହାଙ୍କର କୀର୍ତ୍ତି ସଂସାରରେ ରହେ। ଏଠାରେ ଯାହାର କୀର୍ତ୍ତି ନ ରହେ ସେପରି ଲୋକକୁ ସ୍ୱର୍ଗରେ ବି ସ୍ଥାନ ମିଳେନାହିଁ। ସ୍ୱର୍ଗରେ ତାକୁ ରଖାଇ ଦିଅନ୍ତି ନାହିଁ। ଏ ସଂକ୍ରାନ୍ତରେ ଗୋଟିଏ ସୁନ୍ଦର କଥା ଅଛି।

ପ୍ରାଚୀନ କାଳରେ ଇନ୍ଦ୍ରଦ୍ୟୁମ୍ନ ବୋଲି ଜଣେ ରାଜା ଥିଲେ। ସେ ଏକ ଲକ୍ଷ ବର୍ଷ ସ୍ୱର୍ଗସୁଖ ଭୋଗକଲେ। ରାଜା ଏହିପରି ଅନେକ ଦିନ ସ୍ୱର୍ଗରେ ରହିବା ପରେ

ସ୍ୱର୍ଗର ଗୃହ-ନିରୀକ୍ଷକ ଦିନେ ରାଜାଙ୍କ ପାଖକୁ ଆସି ରାଜାଙ୍କର 'ବୃତ୍ତପତ୍ରିକା'★ ଦେଖିଲେ ଏବଂ ଅତି ନମ୍ରଭାବରେ କହିଲେ– 'ରାଜନ୍! ସ୍ୱର୍ଗରେ ଆପଣ ଅନେକ ଦିନହେବ ରହିଲେଣି। ଆପଣଙ୍କର ସ୍ୱର୍ଗଭୋଗର କାଳ ସମାପ୍ତ ହୋଇ ଯାଇଥିବା ଭଳି ଜଣାପଡୁଛି। ଏଥର ଆପଣ ଆପଣଙ୍କ ଗଣ୍ଠିଲି ବାନ୍ଧିବା ଉଚିତ ହେବ।'

ରାଜା କହିଲେ, 'ମୋ ବୃତ୍ତପତ୍ରିକା'★ ରେ ମୁଁ ଏହା ତ ଲେଖିନାହିଁ।'

ନିରୀକ୍ଷକ କହିଲେ, 'ମୋତେ ଜଣାଯାଉଛି, ଆପଣଙ୍କ ବୃତ୍ତ-ପତ୍ରିକାରେ କିଛି ଗୋଳମାଳ ଅଛି। ଆପଣ ଆଉ ସ୍ୱର୍ଗର ଅଧିକାରୀ ନାହାନ୍ତି। କାରଣ ମୁଁ ଜାଣିବାରେ ଆପଣ ଏଠାରେ ଅଧିକ କାଳ ଅବସ୍ଥାନ କରିସାରିଲେଣି।''

ରାଜା କହିଲେ, ''ଆପଣ ଆପଣଙ୍କ ସନ୍ଦେହ ଦୂରକରିବାର ବ୍ୟବସ୍ଥା କରନ୍ତୁ। ମୋତେ ଠିକ୍ ରୂପେ କୁହନ୍ତୁ ସ୍ୱର୍ଗରେ ମୁଁ ଆଉ ରହିପାରିବି, କି ନାହିଁ।''

ନିରୀକ୍ଷକ କହିଲେ, ''ପୃଥିବୀରେ ଆପଣଙ୍କୁ ଜାଣିଥିବା କେହି ଜଣେବୋଲି ଜୀବ ଅଛନ୍ତି କି?''

ରାଜା ବିଚଳିତ ହୋଇଗଲେ ଏବଂ କହିଲେ, ''ମୋ ନିଜ ଅଭିଯୋଗର ପୁନରାବୃତ୍ତି ହେବ ବୋଲି ମୁଁ ଜାଣି ନ ଥିଲି। ତା'ହେଲେ ମୋତେ ସାକ୍ଷୀ ଉପସ୍ଥିତ କରାଇବାକୁ ପଡ଼ିବ। ମୁଁ ତ ଏଠାକୁ ଆସିବାର ଅନେକ ଅନେକ ବର୍ଷ ହୋଇଗଲାଣି। ଏବେ ମୁଁ କାହାକୁ ଅବା ସାକ୍ଷୀ ରୂପେ ପାଇବି? ମୋତେ କାହିଁକି କିଏ ମନେ ରଖିଥିବେ?''

ସ୍ୱର୍ଗର ନିରୀକ୍ଷକ କହିଲେ, ''ରାଜନ୍! ଯାହାର କୀର୍ତ୍ତି ଥିବ ତାକୁ ନିଶ୍ଚୟ ଲୋକମାନେ ମନେରଖିଥା'ନ୍ତି। ଦେଖନ୍ତୁ, ରାଜା ପ୍ରିୟବ୍ରତ କେଉଁ ଯୁଗର ଲୋକ। ତାଙ୍କ ରଥ ଚକରେ ସପ୍ତସମୁଦ୍ର ହୋଇଛି। ଆଜି ଯାହାକୁ ପଚାରିବେ ସେ ବି ପ୍ରିୟବ୍ରତ ରାଜାଙ୍କ ନାମ କହିଦେବ।

''ସୂର୍ଯ୍ୟବଂଶୀ ମହାରାଜ ଭଗୀରଥଙ୍କୁ ଦେଖନ୍ତୁ। ସେ ସ୍ୱର୍ଗରୁ ଗଙ୍ଗାକୁ ଆଣିଥିଲେ ପୃଥିବୀକୁ। ଏହି ଗଙ୍ଗାଙ୍କୁ ଆଜି ବି ଲୋକମାନେ ଭାଗୀରଥୀ ବୋଲି ମନେରଖିଛନ୍ତି।

''ନିମିଙ୍କ ନାମ ନେଉଥିବା ଲୋକଙ୍କ ସ୍ମରଣରୁ କଦାପି ଦୂର ହୋଇପାରିବ ନାହିଁ। ବ୍ୟାସ, ବାଲ୍ମୀକି କେଉଁ କାଳର। ଆଜି ବି ଲୋକମାନେ ସେମାନଙ୍କୁ ଆପଣାର ବୋଲି କହିଥାନ୍ତି। ଏମାନେ ସମସ୍ତେ ଏବେ ବି ପୁଣ୍ୟଲୋକରେ ଆନନ୍ଦରେ ଅଛନ୍ତି। ଆଉ ସେମାନେ ସେ ପର୍ଯ୍ୟନ୍ତ ଆନନ୍ଦ ଉପଭୋଗ କରୁଥିବେ ଯେପର୍ଯ୍ୟନ୍ତ ପୃଥିବୀ ପୃଷ୍ଠରେ ଜଣେ ବି କେହି ସେମାନଙ୍କ ନାମକୁ ମନେରଖିଥିବେ। ଆପଣଙ୍କୁ ମଧ୍ୟ ଯଦି ଜଣେ ବି କେହି ମର୍ତ୍ତ୍ୟପୁରରେ ମନେରଖିଥାନ୍ତି ତେବେ ଆପଣଙ୍କୁ କେହି ସ୍ୱର୍ଗସୁଖରୁ ବଂଚିତ କରିପାରିବ ନାହିଁ। କେହି ଜଣଙ୍କ ମୁଖରେ ଆପଣଙ୍କ କୀର୍ତ୍ତି ଥିଲେ ଆପଣ ତାକୁ ଚିହ୍ନାଇ ଦିଅନ୍ତୁ।''

---

★ ଯଶପୂର୍ଣ୍ଣ ଚରିତ୍ର-ପତ୍ରିକା

ଏଥର ରାଜା ଚିନ୍ତାରେ ପଡ଼ିଗଲେ। ଏତେଦିନ ପରେ ସାକ୍ଷୀ କେଉଁଠୁ ଆଣି ଉପସ୍ଥିତ କରିବେ! ଏପରି ଚିନ୍ତା କରୁକରୁ ମହର୍ଷି ମାର୍କଣ୍ଡେୟଙ୍କ ନାମ ମନେପଡ଼ିଗଲା। ସେ ମନେମନେ ଭାବିଲେ, ମହର୍ଷି ମାର୍କଣ୍ଡେୟଙ୍କ ଆୟୁ କଳ୍ପାଧିକ। ସେ ନିଶ୍ଚୟ ମୋତେ ମନେରଖିଥିବେ। ତାଙ୍କ ପାଖକୁଯାଇ ପଚାରିଲେ ହୁଅନ୍ତା। ଏପରି କଥା ମନେମନେ ସ୍ଥିର କରି ମହାରାଜ ଇନ୍ଦ୍ରଦ୍ୟୁମ୍ନ ସ୍ୱର୍ଗ ନିରୀକ୍ଷକଙ୍କୁ କହିଲେ—''ଠିକ୍ ଅଛି। ମହର୍ଷି ମାର୍କଣ୍ଡେୟଙ୍କ ପାଖକୁ ଚାଲନ୍ତୁ।'' ଏହା ଶୁଣି ନିରୀକ୍ଷକ ବିମାନ ମଗାଇଲେ। ସେହି ବିମାନରେ ବସି ଦୁହେଁ ମହର୍ଷି ମାର୍କଣ୍ଡେୟଙ୍କ ପାଖରେ ପହଞ୍ଚିଗଲେ।

ମହର୍ଷି ମାର୍କଣ୍ଡେୟ ଗୋଟିଏ ବଟବୃକ୍ଷ ମୂଳରେ ବସି ତପସ୍ୟା କରୁଥିଲେ। ଦୁହେଁ ମହାମୁନିଙ୍କୁ ପ୍ରଣାମ କଲେ। ରାଜା ଅତି ବିନମ୍ର ଭାବରେ ପଚାରିଲେ—'ଭଗବନ୍! ଅମୁକ ଦେଶର ଇନ୍ଦ୍ରଦ୍ୟୁମ୍ନ ନାମକ ରାଜାଙ୍କ ନାମ ଆପଣଙ୍କର ମନେ ଅଛି କି?'

ମୁନି କହିଲେ, 'ଭାଇ! ମୁଁ ଅନେକ ରାଜାଙ୍କ ନାମ ଶୁଣିଛି, ସେମାନଙ୍କ ମଧ୍ୟରୁ ଅନେକଙ୍କ ନାମ ବିସ୍ମରଣ ବି ହୋଇଗଲାଣି। ପୁଣି ମୁଁ ମୋ ଉପରେ ତନ୍ମୟ ହୋଇ ଅନେକ କାଳ ଅତିବାହିତ କରିଦେଉଛି। ସେହି ସମୟରେ କିଏ କେଉଁଠାରେ ରାଜା ହୋଇଯାଉଛି, ମୁଁ ଜାଣିପାରେ ନାହିଁ। ଏମାନଙ୍କୁ ଜାଣିବାର କୌଣସି ଆବଶ୍ୟକତା ନ ଥିବାରୁ ବି ମୁଁ ମନେରଖେ ନାହିଁ।'

ରାଜାଙ୍କର ଚିନ୍ତା ବଢ଼ିଗଲା—'ଏଇ ସାକ୍ଷୀ ତ ସବୁ ଗୋଳମାଳ କରିଦେଲା। ୟାଙ୍କ ଦ୍ୱାରା ମୁଁ ସ୍ୱର୍ଗର ଅଧିକାରୀ ହୋଇପାରିବି ନାହିଁ।' ତେବେ ରାଜା ଧୈର୍ଯ୍ୟ ନ ହରାଇ ପଚାରିଲେ—'ବ୍ରହ୍ମନ୍! ଆପଣଙ୍କଭଳି ଚିରଜୀବୀ ଆଉ କାହାକୁ ଆପଣ ଚିହ୍ନିଥିଲେ ତା' ଠିକଣା ଦିଅନ୍ତୁ।'

ମହର୍ଷି ମାର୍କଣ୍ଡେୟ କହିଲେ, 'ଅମୁକ ନଦୀକୂଳରେ ଗୋଟିଏ ବଗ ଅଛି। ସେ ମୋ'ଠାରୁ ବି ବଡ଼। ଆପଣମାନେ ତାକୁ ପଚାରନ୍ତୁ।'

ଏହା ଶୁଣି ଦୁହେଁ ମୁନିଙ୍କୁ ପ୍ରଣାମକରି ସେଇ ବଗପାଖକୁ ଗଲେ। ରାଜା ବଗକୁ ପଚାରିଲେ, 'ଭାଇ! ତୁମେ ଅମୁକ ଦେଶର ରାଜାଙ୍କ ନାମ ଶୁଣିଛ କି? ତୁମେ ତାଙ୍କୁ ଜାଣିଥିଲେ ତାଙ୍କ ବିଷୟରେ ପଦେ କୁହ।'

ବଗ କହିଲା, 'ହେ ମହାନୁଭବ! ମୁଁ ବହୁତ ବୁଢ଼ା ହୋଇଗଲିଣି। ମୋର ଏତେ ସ୍ମରଣ ଶକ୍ତି ବି ନାହିଁ। ଶୁଣିଥିବି। କିନ୍ତୁ ଠିକ୍ ମନେ ନାହିଁ।'

ରାଜା ପୂରାପୂରି ହତୋତ୍ସାହିତ ହୋଇଯାଉଥିଲେ। କେହି ସାକ୍ଷୀ ନ ମିଳିଲେ ସ୍ୱର୍ଗରୁ ତ ପତନ ନିଶ୍ଚୟ ହେବ। ତେବେ ବି ଆଉଥରେ ଚେଷ୍ଟା କରାଯାଉ। ରାଜା ପଚାରିଲେ, 'ଆଚ୍ଛା ଭାଇ! ତୁମଭଳି ଆଉକିଏ ଚିରଜୀବୀ ଥିବାର ତୁମେ ଜାଣିଛ କି?'

ବଗ କହିଲା—'ଅମୁକ ସରୋବରରେ ଗୋଟିଏ କଇଁଛ ଅଛି। ସେ ମୋ ଠାରୁ ବି ବଡ଼। ତାକୁ ପଚାରନ୍ତୁ। ସେ ସମ୍ଭବତଃ ଆପଣଙ୍କ ପ୍ରଶ୍ନର ଯଥାର୍ଥ ଉତ୍ତର ଦେଇ ପାରିବେ।'

ଏହାଶୁଣି ଦୁହେଁ ସେଇ ସରୋବର ତୀରକୁ ଗଲେ। ରାଜା କଇଁଛକୁ ପଚାରିଲେ—“ମହାଭାଗ! ଆପଣ ଚିରଜୀବି! ଆପଣ ରାଜା ଇନ୍ଦ୍ରିଦ୍ୟୁମ୍ନଙ୍କର ନାମ ଶୁଣିଛନ୍ତି କି?”

କଇଁଛ ଅତି ଶ୍ରଦ୍ଧାଭକ୍ତିରେ କହିଲା—“ହେ ତେଜସ୍ୱି, ହେ ମହାନୁଭବ! ଆପଣ କିଏ? ରାଜର୍ଷି ଇନ୍ଦ୍ରଦ୍ୟୁମ୍ନଙ୍କର ନାମ କିଏ ନ ଜାଣିଛି! ମୁଁ ଯେଉଁ ସରୋବରରେ ରହୁଛି, ସେ ହିଁ ଏହାକୁ ନିର୍ମାଣ କରିଛନ୍ତି। ଏହାର ନାମ ଇନ୍ଦ୍ରଦ୍ୟୁମ୍ନ ସରୋବର। ସେହି ରାଜର୍ଷି ଏହି ଅଗାଧ ଜଳରାଶିପୂର୍ଣ୍ଣ ସରୋବରକୁ ମୋ ସମ୍ମୁଖରେ ଖନନ କରିଥିଲେ। ସେ ସୁବର୍ଣ୍ଣର ଘାଟ ଆଉ ପାବଚ୍ଛ କରିଥିଲେ। ସେ ସ୍ୱର୍ଗକୁ ଚାଲି ଯିବାପରେ ତାଙ୍କ ବଂଶଧରମାନେ ଏହାର ସୁରକ୍ଷା କରିଥିଲେ, ଜୀର୍ଣ୍ଣୋଦ୍ଧାର କରୁଥିଲେ। ଏହାର ଘାଟ ପରବର୍ତ୍ତୀକାଳରେ ଚାନ୍ଦିରେ ନିର୍ମିତ ହେଲା, ତା’ ପରେ ତମ୍ବାରେ, ତା’ ପରେ ପଥରରେ। ଅନେକ ଦିନ ହେବ ରାଜର୍ଷିଙ୍କ ବଂଶରେ କେହି ନାହାନ୍ତି। ଏହାର ଯତ୍ନ କେହି ନେଉନାହାନ୍ତି। ତେବେ ରାଜର୍ଷିଙ୍କର ବିମଳ କୀର୍ତ୍ତି ତ ଏହି ସରୋବର ହେତୁ ସ୍ୱର୍ଗପର୍ଯ୍ୟନ୍ତ ବ୍ୟାପିରହିଛି।” କଇଁଛ ଏପରି କହୁଥିବା ସମୟରେ ସହସ୍ର ଧେନୁ ବିଶିଷ୍ଟ ଏକ ଗୋଷ୍ଠ ଆସି ସେହି ସରୋବରରୁ ପେଟପୂରାଇ ପାଣି ପିଇଲେ ଓ ଚାଲିଗଲେ। ଏହା ଦେଖି ସ୍ୱର୍ଗର ନିରୀକ୍ଷକ କହିଲେ—“ରାଜନ୍! ଯେ ପର୍ଯ୍ୟନ୍ତ ଏହି ସରୋବରରେ ଟୋପାଟିଏ ବି ଜଳ ଥିବ, ଯେ ପର୍ଯ୍ୟନ୍ତ ଲୋକମାନେ ଏହି ସରୋବରର ନାମ ନେଉଥିବେ, ସେ ପର୍ଯ୍ୟନ୍ତ ଆପଣଙ୍କୁ ସ୍ୱର୍ଗରୁ କେହି ବାହାର କରିପାରିବେ ନାହିଁ। ଆପଣ ସ୍ୱର୍ଗରେ ଆନନ୍ଦରେ ରୁହନ୍ତୁ।”

**କହିବାର ତାତ୍ପର୍ଯ୍ୟ ହେଉଛି, ଲୋକରେ କୀର୍ତ୍ତି ରହିବା ହେଉଛି ପ୍ରକୃତ ଜୀବନ, ସେଇଥିରେ ସ୍ୱର୍ଗ ଅଛି, ସେଇଥିରେ ସୁଖ ଅଛି। ଏଣୁ ଅନେକ ଲୋକ କୀର୍ତ୍ତିକୁ ସର୍ବୋତ୍ତମ ଶ୍ରେୟ ବୋଲି କୁହନ୍ତି।**

ଆଉ କେତେକ ଲୋକ ସଂସାରରେ କାମକୁ ସର୍ବୋତ୍ତମ ସୁଖ ବୋଲି କୁହନ୍ତି। ସେମାନେ କୁହନ୍ତି, ‘ବ୍ରହ୍ମ ଚିନ୍ତନରେ କି ସୁଖ ଅଛି? ବ୍ରହ୍ମକୁ କିଏ ଦେଖିଛି କି? ତାହା ତ ଆକାଶ-କୁସୁମ ଭଳି କେବଳ କଥାରେ କୁହାଯାଉଥାଏ। କାମସୁଖ ସମସ୍ତେ ଅନୁଭବ କରନ୍ତି। ସଂସାରରେ ବଡ଼ବଡ଼ ଲୋକମାନେ ଅଧିକରୁ ଅଧିକ କଷ୍ଟ, ଆପଦ ବିପଦର ସମ୍ମୁଖୀନ ହୋଇଛନ୍ତି କେବଳ କାମ ସୁଖ ପାଇଁ।

କୁକୁରଟିଏ। ତା ଶରୀର ଶଢ଼ି ଗଲାଣି। ସେ ଜୀର୍ଣ୍ଣଶୀର୍ଣ୍ଣ ହୋଇଗଲାଣି। ତା ଦେହରେ ପୋକ ଲାଗିଗଲେଣି। ପେଟପୂରା ଖାଇବାକୁ ବି ପାଉନାହିଁ। କିନ୍ତୁ କ୍ଷଣକପାଇଁ ତାକୁ ଯଦି କାମସୁଖ ମିଳିଯାଏ ସେ ସୁଖୀ ହୋଇଯାଏ। ବଡ଼ ବଡ଼ ମୁନିମାନେ ଅଛନ୍ତି। ହଜାର ହଜାର ବର୍ଷଧରି ତପସ୍ୟା କରୁଥା’ନ୍ତି। ବ୍ରହ୍ମ ଚିନ୍ତନ କରୁଥା’ନ୍ତି। କିନ୍ତୁ ଅପସରା ପହଞ୍ଚିଗଲେ ତରଳି ଯାଆନ୍ତି। ବିଚଳିତ ହୋଇଯାଆନ୍ତି। କାମରେ ଯଦି ଏତେ ସୁଖ ନ ଥାନ୍ତା ତେବେ ହଜାର ହଜାର ବର୍ଷଧରି ତପସ୍ୟାରତ ମନ ଯା ଆଡ଼କୁ ଯାଆନ୍ତା କିପରି? କାମରେ ସମାଧି ହୁଏ। ନିଜ ଇଚ୍ଛାନୁକୂଳ ସ୍ତ୍ରୀକୁ ପତି ମିଳିଲେ ଆଉ ପତିକୁ ମନୋନୁକୂଳ ସ୍ତ୍ରୀ ମିଳିଲେ ତା ଠାରୁ ଅଧିକ ସୁଖ, ମଙ୍ଗଳ,

ମୋକ୍ଷ ବା ଆନନ୍ଦ ଅନ୍ୟକିଛି ନାହିଁ। ଏଥିପାଇଁ ବାତ୍ସାୟନ ଆଦି ମୁନିମାନେ କାମଶାସ୍ତ୍ର ରଚନା କରିଛନ୍ତି। ସେଥିରେ କାମକୁ ଶ୍ରେୟ ବୋଲି କହିଛନ୍ତି। କାମକୁ କିପରି ଭୋଗ କରାଯିବା ଉଚିତ ତାହାର ବିଧି ବତାଇଛନ୍ତି। ସେମାନଙ୍କ ମତରେ କାମ ହିଁ ପରମ ଶ୍ରେୟ।

**କେତେକ କୁହନ୍ତି, ଅହିଂସା ଭାବ ରଖିବା, ସତ୍ୟ କହିବା, ଚୋରି ନ କରିବା, ବ୍ରହ୍ମଚର୍ଯ୍ୟ ପାଳନ କରିବା, ଅତ୍ୟଧିକ ସଂଗ୍ରହ ନ କରିବା, ପବିତ୍ରତାରେ ରହିବା, ସମସ୍ତଙ୍କୁ ସନ୍ତୋଷ ରଖିବା, ମନ୍ତ୍ର ଜପ କରିବା, ଈଶ୍ୱରଙ୍କ ଉପରେ ବିଶ୍ୱାସ ରଖିବା, ମନ ଆଉ ଇନ୍ଦ୍ରିୟଙ୍କୁ ଦମନ କରିବା, ଏହା ସବୁ ହେଉଛି ପୁରୁଷାର୍ଥ।** ଏହି ପ୍ରସଙ୍ଗରେ ପତଞ୍ଜଳି ଆଦି ମୁନିମାନେ ବିଶଦ ବିବେଚନ କରିଛନ୍ତି। ଏମାନଙ୍କର ବିଶେଷ ଜ୍ଞାନ ଇନ୍ଦ୍ରିୟ ଆଉ ମନର ସଂଯମ ଉପରେ ହିଁ ଥାଏ।

କେତେକ ଲୋକ କହନ୍ତି—''ଶରୀର ଶୁଖାଇବା ଅର୍ଥ କ୍ଲେଶ କରିବା। ଯେଉଁ କର୍ମ କଲେ ଏହିଲୋକରେ କ୍ଲେଶ ହୁଏ, ପରଲୋକରେ ସେଥିରୁ କି ସୁଖ ମିଳିବ? ତେଣୁ ନିଜର ଐଶ୍ୱର୍ଯ୍ୟ ବଢ଼ାଅ। ସମସ୍ତଙ୍କ ଉପରେ ଶାସନ କର, ପ୍ରଭାବଶାଳୀ ହୁଅ। ଦଣ୍ଡନୀତିକାରୀଗଣ ଐଶ୍ୱର୍ଯ୍ୟକୁ ମୁଖ୍ୟ ସ୍ଥାନ ଦେଇଛନ୍ତି। ଆଉ ସେମାନେ ସେମାନଙ୍କର ଶାସ୍ତ୍ରରେ ସାମ, ଦାନ ତଥା ଦଣ୍ଡନୀତି ଆଦିର ବିସ୍ତୃତ ବର୍ଣ୍ଣନା କରିଛନ୍ତି। ଶତ୍ରୁଙ୍କୁ ଏପରି ଅଧୀନସ୍ଥ କରିବ, ଏମିତି ଜିତିବ, ଆଉ ସମସ୍ତଙ୍କ ଉପରେ ନିଜର ଐଶ୍ୱର୍ଯ୍ୟ ସ୍ଥାପିତ କରିବ। ସଂସାରରେ ଐଶ୍ୱର୍ଯ୍ୟଶାଳୀ ହେବା ହେଉଛି ଶ୍ରେଷ୍ଠ ସୁଖ। ଐଶ୍ୱର୍ଯ୍ୟ ପ୍ରାପ୍ତି ନିମନ୍ତେ ଯତ୍ନବାନ୍ ହେବା ଦରକାର। ଯାହାର ଯେତେ ବେଶୀ ଐଶ୍ୱର୍ଯ୍ୟ ହେବ ସେ ସେତେ ବଡ଼ ହୋଇଥାଏ।''

କେତେକ କୁହନ୍ତି ଯେ ନା ସ୍ୱର୍ଗ ଅଛି ନା ନର୍କ। ପରମାତ୍ମା ପରବ୍ରହ୍ମଙ୍କୁ କେହି ଦେଖିନାହାନ୍ତି। ଯାହାଅଛି, ଏହି ଶରୀର ଥିବାପର୍ଯ୍ୟନ୍ତ ଥାଏ। ଶରୀର ଜଳି ଭସ୍ମ ହୋଇଯିବା ପରେ ଆଉକିଛି ରହେ ନାହିଁ। ମୃତକ ପୁରୁଷ ନିମିତ୍ତ ତର୍ପଣ କରିବା, ଶ୍ରାଦ୍ଧକରି ବ୍ରାହ୍ମଣଙ୍କୁ ଭୋଜନ ଦେବା—ଏହା ହେଉଛି ମିଥ୍ୟା ଅଭିନୟ ମାତ୍ର। କେତେକ ଭାଣ୍ଡ, ମୂର୍ଖ ନିଶାଚର ପୁରୁଷମାନେ ନିଜର ପେଟ ବଢ଼ାଇବା ଉଦ୍ଦେଶ୍ୟରେ ବେଦ ପୁରାଣାଦି ତିଆରି କରିଛନ୍ତି, ଯେଉଁଥିରେ ପଦେପଦେ କଥାରେ ବ୍ରାହ୍ମଣ ଭୋଜନ ନିମନ୍ତେ କୁହାଯାଇଛି। କେହି ମଲେ ବ୍ରାହ୍ମଣ ଭୋଜନ, କେହି ଜନ୍ମହେଲେ ବ୍ରାହ୍ମଣ ଭୋଜନ, କେହି ଛିଙ୍କିଲେ ବି ବ୍ରାହ୍ମଣ ଭୋଜନ। ବ୍ରାହ୍ମଣଙ୍କୁ ଖୋଇଲେ ପରଲୋକରେ ବସିଥିବା ପ୍ରେତଙ୍କର ପେଟପୂରିଯାଏ। ତେବେ ଯାତ୍ରାସମୟରେ ଆମେ ଅଟା, ଡାଲି, ଚାଉଳ, ଲଡ୍ଡୁ, ମସଲା ମସଲି ଧରି କାହିଁକି ଯିବା। ବ୍ରାହ୍ମଣଙ୍କୁ ଘରେ ଖୋଇଦେଉଥିବା ଯାତ୍ରାରେ ଆମର ପେଟ ପୂରିଯାଉଥିବ। କିନ୍ତୁ ଏପରି ତ ହୁଏ ନାହିଁ। ଘରେ ଖୋଇଲେ ଯାତ୍ରାରେ ଆମ ପେଟକୁ ତାହା ଯାଏ ନାହିଁ, ତେବେ ପ୍ରେତକୁ ମିଳୁଥିବ କିପରି? ତର୍ପଣରେ ଯଦି ପିତୃପୁରୁଷ ତୃପ୍ତ ହୋଇଯାଉଥାଆନ୍ତେ, ଦ୍ୱିପ୍ରହର ସମୟରେ କ୍ଷେତକୁ କାମକରିବା ପାଇଁ ଯାଉଥିବା ଲୋକ ସାଙ୍ଗରେ ପାଣିନେଇ ଯିବାର କି ଆବଶ୍ୟକତା ଅଛି। ସମସ୍ତେ କ୍ଷେତରେ କାମ କରୁଥିବେ; ଜଣେ ବ୍ରାହ୍ମଣର ପାଟି ମେଲା କରି ତା ପାଟିରେ ଥଣ୍ଡାପାଣି ପିଆଇ ଦେବାଦ୍ୱାରା ଯଦି ଆନ୍ୟମାନଙ୍କ ତୃଷା ନିବାରିତ

ହୁଏନାହିଁ, ସେପରି ସ୍ଥଳରେ ପରଲୋକଗତ ପିତରଙ୍କ ତୃଷା କିପରି ନିବାରିତ ହେଉଥିବ। ପରଲୋକ, ବେଦ, ଯଜ୍ଞ, ଯାଗ କୌଣସିଟିର ମୂଲ୍ୟ କିଛି ନାହିଁ। **ପରମ ପୁରୁଷାର୍ଥ ହେଉଛି, ଯେପରି ବି ହେଉପଛେ ଶରୀରକୁ ସୁଖୀ ରଖିଥିବା ଦରକାର।** ପରଲୋକ କେହି ବି ଦେଖିନାହାନ୍ତି। ତାହା ଆକାଶ କୁସୁମ, ଶଶକର ଶିଙ୍ଗ, ବନ୍ଧ୍ୟାର ପୁତ୍ର, ଆଖୁର ଫଳ ତଥା ଚନ୍ଦନର ଅର୍ଦ୍ଧସ୍ଫୁଟିତ କଳିକା ସଦୃଶ। ଏଣୁ ପରଲୋକର ଚିନ୍ତାଛାଡ଼ି ସବୁପ୍ରକାର ଉଦ୍ୟମକରି ଶରୀରର ପୁଷ୍ଟିସାଧନ କରୁଥିବା ଆବଶ୍ୟକ। ଘରେ ଯଦି ନାହିଁ ତେବେ ଋଣ ନେଇ ଘିଅ ଖାଅ, ତହିଁରେ ଚିନି ସୁଜି ମିଶାଇ ଗରମ ମହନଭୋଗ ଖାଅ। ପେଟରେ ପଡ଼ିଲା ତ ପରମାର୍ଥ ହୋଇଗଲା। ଏଥର ଋଣବାଲା ଆଉ ନେବ କ'ଣ? ତୁମେ ପାପ ଲାଗିବବୋଲି କହିପାର। କିନ୍ତୁ ପାପ ନାମକ କୌଣସି ବସ୍ତୁ ଇ ନାହିଁ। ପେଟକୁ ନ ଖାଇବା ହିଁ ପାପ। ଯେ କୌଣସି ଉପାୟରେ ପେଟକୁ ପରିତୃପ୍ତ କରିରଖିବା ହେଉଛି ପୁଣ୍ୟ। ଯିଏ ଥରେ ମଲା, ସେ ପୁନର୍ବାର ଫେରି ଆସେ ନାହିଁ। ଏଣୁ ଶରୀରକୁ ସୁଖୀ ରଖିବା ପାଇଁ, ନିଜର ସାଙ୍ଗସାଥୀଙ୍କୁ ଖୋଇବା ହିଁ ହେଉଛି ଜୀବନର ସର୍ବଶ୍ରେଷ୍ଠ ଉଦ୍ଦେଶ୍ୟ।

କେତେକ ଲୋକଙ୍କ ମତ ହେଉଛି—ପରଲୋକ ଅଛି। ଏହି ଶରୀରକୁ କେବଳ ପୋଷଣ କଲେ ତାହା ମିଳି ନ ଥାଏ। ଅଗ୍ନିହୋତ୍ର, ଦର୍ଶ-ପୌର୍ଣମାସ୍ୟ, ଚାତୁର୍ମାସ୍ୟ, ପଶୁଯଜ୍ଞ, ତଥା ସୋମଯଜ୍ଞ ଆଦି ଯଜ୍ଞଯୋଗ ବି କରିବା ଆବଶ୍ୟକ। ଜନ୍ମାଷ୍ଟମୀ, ରାମନବମୀ, ଏକାଦଶୀ ଆଦି ବ୍ରତକରିବା ଦରକାର। କୃଚ୍ଛ, ଚାନ୍ଦ୍ରାୟଣାଦି ତପ କରିବା ଦରକାର, ଦାନ ଦେବା ଉଚିତ, ଯମ-ନିୟମ ଉତ୍ତମ ରୂପେ ପାଳନ କରୁଥିବା ଆବଶ୍ୟକ।

ଭଗବାନ କୃଷ୍ଣଚନ୍ଦ୍ର ତାଙ୍କର ସଖା ଉଦ୍ଧବଙ୍କୁ କହୁଛନ୍ତି—"ହେ ଉଦ୍ଧବ! ଯମ, ନିୟମ, ଦାନ, ବ୍ରତ, ଯଜ୍ଞ ବିବିଧ ପ୍ରକାରର ତପ ତଥା ଅନ୍ୟ ପୁଣ୍ୟକର୍ମ କରିବା ଦ୍ୱାରା ଯେଉଁଲୋକ ପ୍ରାପ୍ତହୁଏ ତାହା ହେଉଛି ଆଦ୍ୟକଥା। ପରିଣାମରେ ଏହା ଦୁଃଖ ଦେଇଥାଏ। ପୁଣ୍ୟ କ୍ଷୀଣ ହୋଇଗଲେ ସେହିଲୋକରୁ ଧକ୍କାଖାଇ ଆସିବାକୁ ହୁଏ। ତୁମେ ଭାବିଚିନ୍ତି କୁହ, ସୁବର୍ଣ୍ଣରୁ ଯେତେ ଜିନିଷ ତିଆରି ହୋଇଥାଏ, ସୁବର୍ଣ୍ଣ ଗୁଣ ବିଶିଷ୍ଟ ହୋଇଥାଏ। ଚିନିରୁ ପ୍ରସ୍ତୁତ ହୋଇଥିବା ସକଳ ମିଠାଇ ମିଠା ଇ ହୋଇ ଥାଏ। ମାଟିରେ ଯେତେ ସୁନ୍ଦର ପାତ୍ର ତିଆରି କଲେ ବି ତହିଁରେ ମାଟିର ଗୁଣ ଇ ଥାଏ। ଏହିଭଳି କର୍ମଦ୍ୱାରା ବ୍ରହ୍ମଲୋକ ପର୍ଯ୍ୟନ୍ତ ଯାଇଥିଲେ ବି, ସର୍ବୋଚ୍ଚ ସ୍ଥାନକୁ ଯାଇଥିଲେ ସୁଦ୍ଧା, ସେଠାରେ ତାହା କ୍ଷୟିଷ୍ଣୁ ହିଁ ହୋଇଥାଏ। ଦେଖିବାକୁ ତତ୍‌କାଳ ତାହା ହୁଏତ ସୁଖଦାୟୀ ହୋଇପାରେ। କିନ୍ତୁ ଏହାର ଅନ୍ତିମ ପରିଣାମ ଦୁଃଖଦାୟୀ ହୋଇଥାଏ। ସଂପୂର୍ଣ୍ଣ ଆରମ୍ଭ କରାଯାଇଥିବା କର୍ମ ଦୋଷଯୁକ୍ତ ହୋଇଥାଏ। ଏଣୁ ଏହା ମୋହଜନକ, ସ୍ୱଳ୍ପ ସୁଖଦାୟୀ, ଆଉ ଶୋକ ପ୍ରଦାନକାରୀ ହୋଇଥାଏ।"

ଉଦ୍ଧବ ପଚାରିଲେ, "ତେବେ ହେ ଭଗବନ୍! ଶାଶ୍ୱତ ସୁଖ କିପରି ପ୍ରାପ୍ତ ହୋଇପାରେ?"

ଭଗବାନ କହିଲେ, "ହେ ଉଦ୍ଧବ! ସାଂସାରିକ ଭୋଗରୁ ନିରପେକ୍ଷ ହୋଇଯାଅ। ତାହା ଆଣ, ଏହା ଆଣ, ଯା ତିଆରି କର, ତାକୁ ବି ରଖ, ଏହାକୁ ବି ସଂଗ୍ରହ କର, ସେଇଟାର ସୁଆଦ ଚାଖ ଇତ୍ୟାଦି ଚିନ୍ତାଧାରା ମନରୁ ଦୂର କର। ମୋ

ଠାରେ ଚିତ୍ତ ଲଗାଇ ରଖ। ମୋ ରୂପରେ, ମୋ ଚିନ୍ତନରେ ଅନବରତ ତଲ୍ଲୀନ ରୁହ। ମୋ ଭିତରେ ଅନବରତ ରମଣ କର—ଏପରି ହେଲେ ଯଥାର୍ଥ ସୁଖ ପ୍ରାପ୍ତ ହୋଇପାରେ, କାରଣ ସୁଖ ସ୍ୱରୂପ ହେଉଛି ଏକମାତ୍ର ମୁଁ। ବିଷୟରେ ସୁଖ କେଉଁଠି? ଯେଉଁ ସ୍ୱାଦ ରସଗୋଲାରେ ମିଳିପାରେ, ସେପରି ସୁଖ ଗୁଡ଼ପିଠାରେ କିପରି ମିଳିପାରିବ? ଏଣୁ ମୋତେ ସ୍ମରଣ କରିବା, ମୋତେ ଧ୍ୟାନ କରିବା, ମୋ'ଠାରେ ହିଁ ମନକୁ ଲଗାଇ ରଖିବା—ଏହା ହିଁ ହେଉଛି ଭକ୍ତି। ଏହାକୁ ଯିଏ ପ୍ରାପ୍ତ ହୋଇଛି, ତା ସମ୍ମୁଖରେ ବ୍ରହ୍ମଲୋକ ପର୍ଯ୍ୟନ୍ତ ଦିବ୍ୟସୁଖ ବି ତୁଚ୍ଛ। ସେ ହିଁ ନିର୍ଭୟ ହୋଇପାରେ, ସେ ହିଁ ନିଃସ୍ପୃହ ହୋଇପାରେ।''

ଉଦ୍ଧବ କହିଲେ, ''ପ୍ରଭୁ! ଆଜିର ପ୍ରସଙ୍ଗ ଅତି ସରସ। ଏହାକୁ ଯେତେ ଶୁଣିଲେ ବି ମୋର ତୃପ୍ତି ହେଉନାହିଁ। କୃପାକରି ଏହି ବିଷୟକୁ ମୋତେ ଅଧିକ ସ୍ପଷ୍ଟ ଭାବରେ କୁହନ୍ତୁ। ଆପଣଙ୍କ ଭକ୍ତ ହୁଅନ୍ତି କିପରି? ସେମାନେ କି କି ପ୍ରକାର ଇଚ୍ଛା ରଖନ୍ତି? ସେମାନଙ୍କର ଚାଲିଚଳନ କିପରି ହୋଇଥାଏ?''

ଉଦ୍ଧବଙ୍କଠାରୁ ଏପରି କଥା ଶୁଣି ଭଗବାନ୍ ହସିଲେ, ଆଉ କହିଲେ—''ହେ ଉଦ୍ଧବ! ଭକ୍ତ ବିଷୟରେ କହିଲାବେଳେ ମୋତେ ଖୁବ୍ ଭଲ ଲାଗେ। ଭକ୍ତ ମୋର ଅତି ପ୍ରିୟ। ଭକ୍ତ ହିଁ ମୋର ସର୍ବସ୍ୱ। ସେମାନଙ୍କ ସମ୍ବନ୍ଧରେ ତୁମର ଯେତେ ପର୍ଯ୍ୟନ୍ତ ଇଚ୍ଛା ହେଉଛି ମୋ ଠାରୁ ଶୁଣିପାର। ହେଉ, ଏବେ ଭକ୍ତଙ୍କ ସମ୍ବନ୍ଧରେ ଶୁଣ।''

ମହର୍ଷି ସୂତ ଶୌନକାଦି ଋଷିମାନଙ୍କୁ କହୁଛନ୍ତି—''ହେ ମୁନିଗଣ ଆପଣମାନେ ତ ଅନନ୍ୟ ଭକ୍ତ। ଭଗବତ୍ ଭକ୍ତ ହିଁ ଆପଣଙ୍କର ଜୀବନର ଚରମ ଲକ୍ଷ୍ୟ। ସେହି ବିନୟ ଉପରେ ଆରୂଢ଼। ଭକ୍ତି ସମ୍ବନ୍ଧରେ ଏବେ ଆପଣମାନେ କିଛି ଶ୍ରବଣ କରନ୍ତୁ।''

### ଛପ୍ପୟ

ନିଷ୍କିଞ୍ଚନ ସମବୁଦ୍ଧି ଶାନ୍ତ ସନ୍ତୋଷୀ ତ୍ୟାଗୀ।
ନିସ୍ପୃହ ନିର୍ମମ ନିତ୍ୟତୁଷ୍ଟ ମମପଦ ଅନୁରାଗୀ॥
ନିରଖେ ସବ ମହଁ ମୋଇ ଦ୍ୱୈତ ଦୀଖେ ନହିଁ ଜିନକୂଁ।
ଦୁଖ କୋ ନହିଁ ଲବଲେଶ ଦିଶା ସୁଖମୟ ସବ ତିନିକୂଁ॥
ତନ, ମନ, ଧନ, ମମ ପଦନମହଁ, ସୌପି ଧନ ଚାହେଁ ଇନ୍ଦ୍ରପଦ।
ରାଜ୍ୟ ପାଟ ଐଶ୍ୱର୍ଯ୍ୟ ସୁଖ, ଲେବୈ ନହିଁ ତେ ବ୍ରହ୍ମପଦ॥



# ଭକ୍ତଙ୍କ ଉତ୍କର୍ଷ

ନିରପେକ୍ଷଂ ମୁନିଂ ଶାନ୍ତଂ ନିର୍ବୈରଂ ସମଦର୍ଶନମ୍ ।
ଅନୁବ୍ରଜାମ୍ୟହଂ ନିତ୍ୟଂ ପୂୟେୟେତ୍ୟଙ୍ଘ୍ରିରେଣୁଭିଃ ॥ 
[ଶ୍ରୀଭା.୧୧ସ୍କ ୧୪ଅ.୧୬ଶ୍ଳୋକ]

### ଛପ୍ପୟ

ଉଦ୍ଧବ ଜୈସେ ମୋର ଭକ୍ତ ନିଷ୍କଞ୍ଚନ ପ୍ୟାରେ ।
ତୈସେ ପ୍ରିୟ ନହିଁ ରାମ ରମା ଅଜ ଡମରୁ ବାରେ ॥
ନିରବୈରୀ ନିରପେକ୍ଷ ଭକ୍ତକେ ପାଛେଁ ଘୂମୂଁ ।
ପଦରଜ ତେଂ କୃତ କୃତ୍ୟ ବହୂଁ ଚରନିକୂଁ ଚୂମୂଁ ॥
ବିଷୟ ବାସନା କାମ ସୁଖ, କୀ ଇଚ୍ଛା ମନମହଁ ନହୀଂ ।
ଉନ ଭକ୍ତନି ଆନନ୍ଦକୂଁ, ବିଷୟୀ କା ପାବେଁ କହୀଂ ॥

କେତେକ ଲୋକ ଭାଗବତୀ କଥାରେ ପୁନରୁକ୍ତି ଦୋଷ ଦେଖାନ୍ତି । ସେମାନେ କୁହନ୍ତି—''ଏହି କଥାଗୁଡ଼ିକରେ ବାରମ୍ବାର ଗୋଟିଏ କଥାକୁ ଦୋହରା ଯାଉଛି । ଗୋଟିଏ ମାତ୍ର ଦୃଷ୍ଟାନ୍ତ ବାରମ୍ବାର ଦିଆଯାଉଛି । ସେଇ ଏକା କଥାର ପିଷ୍ଟପୋଷଣ କରାଯାଉଛି ।'' ଆମେ ଜାଣିବାକୁ ଚାହୁଁଛୁ, ସଂସାରରେ କେଉଁ କଥାର ପୁନରୁକ୍ତି ହେଉ ନାହିଁ । ଶ୍ୱାସର ପୁନରୁକ୍ତି । ନିତ୍ୟପ୍ରତିଦିନ ଲୋକମାନେ ନିଦରେ ଶୁଅନ୍ତି, ପ୍ରତିଦିନ ବି ଉଠନ୍ତି, ପ୍ରତିଦିନ ସୂର୍ଯ୍ୟ ଉଦୟ ହୁଅନ୍ତି ; ପ୍ରତିଦିନ ଏକାଭଳି ଅନ୍ନ ବାରମ୍ବାର ଖାଉଛେ, ନିତ୍ୟ ଜଳ ସେବନ କରୁଛେ, ନିତ୍ୟ ହିଁ ସ୍ତ୍ରୀ-ପିଲାଙ୍କୁ ଏକା ଭଳି ପ୍ରେମ ସ୍ନେହ କରୁଛେ । କୁନି ପୁଅଙ୍କୁ ଯେତେବେଳେ ଦେଖୁଛେ ତାକୁ କୋଳକୁ ଟେକି ନେଇ ତା ମୁଖରେ ବାରମ୍ବାର ଚୁମ୍ବନ ଦେଉଛେ । ସଂସାରରେ ସବୁ କଥାରେ ପୁନରାବୃତ୍ତି ହେଉଥିବାବେଳେ ଭାଗବତୀ କଥାରେ ଯଦି ପୁନରୁକ୍ତି ହେଉଛି ସେଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ?

ସମସ୍ତ ଶାସ୍ତ୍ରର ସାର କେବଳ ଦୁଇଟି ମାତ୍ର କଥାରେ ଅଛି । ସଚ୍ଚିଦାନନ୍ଦ ଭଗବାନ ହେଉଛନ୍ତି ସତ୍ୟ, ତାଙ୍କୁ ଭଜନ କରିବା ହେଉଛି ସାର କଥା । ଏଇ ଗୋଟିଏ କଥାକୁ ଶାସ୍ତ୍ର ଅନେକ ଯୁକ୍ତିମାଧ୍ୟମରେ, ଅନେକ ଦୃଷ୍ଟାନ୍ତ ଦେଇ, ଅନେକ ବାଦ କହି ପ୍ରତିପାଦନ କରିଛନ୍ତି । ଯଦି ଗୋଟିଏ କଥାକୁ ଧରି ଏଡ଼େ ବଡ଼ବଡ଼ ପୋଥି ରଚିତ

---

★ ଭଗବାନ ଶ୍ରୀକୃଷ୍ଣଚନ୍ଦ୍ର ଉଦ୍ଧବଙ୍କୁ କହୁଛନ୍ତି— ''ହେ ଉଦ୍ଧବ! ଯିଏ ଶାନ୍ତ ନିରପେକ୍ଷ ନିର୍ବୈର ଆଉ ସମଦର୍ଶୀ ମୁନି ସେମାନଙ୍କ ପଛେପଛେ ମୁଁ ସବୁବେଳେ ଗୋଡ଼ାଉଥାଏ, କାଳେ ସେମାନଙ୍କ ଚରଣୋରଜ ମୋ ଉପରେ ପଡ଼ିଯିବ, ଆଉ ମୁଁ ପବିତ୍ର ହୋଇଯିବି ।

ହୋଇଛି ତେବେ ପୁନରୁକ୍ତି ହେବ ନାହିଁ ତ ଆଉ କ'ଣ ହୋଇଥାନ୍ତା ! ଭଗବାନଙ୍କର ଭକ୍ତ ହେଉଛି ଅତ୍ୟନ୍ତ ପ୍ରିୟ, ତାଙ୍କୁ ପାଇବାପାଇଁ ଭକ୍ତି ହେଉଛି ଅତି ସରଳ ସୁଗମ ଉପାୟ—ଭଗବତୀ କଥାର ଏହା ହିଁ ହେଉଛି ସାରକଥା ।

ମହର୍ଷିସୂତ କହୁଛନ୍ତି— ''ହେ ମୁନିଗଣ ! ଉଦ୍ଧବ ଯେତେବେଳେ ଭକ୍ତଙ୍କ ସମ୍ବନ୍ଧରେ ପ୍ରଶ୍ନ କଲେ, ସେତେବେଳେ ଭଗବାନ କହିଲେ, 'ହେ ଉଦ୍ଧବ ! ମୋ ଭକ୍ତ ନିସ୍ପୃହ ହୋଇଥାନ୍ତି । ସେମାନେ ମୋ ବ୍ୟତୀତ କାହାଠାରୁ କିଛି ଆଶା କରନ୍ତି ନାହିଁ । ଭକ୍ତ ହୋଇ ଯିଏ ମଣିଷଙ୍କଠାରୁ ଆଶା ରଖେ ସେ ଭକ୍ତ ନୁହେଁ, ବ୍ୟବସାୟୀ । ଭକ୍ତିର ସାମଗ୍ରୀ ପ୍ରସ୍ତୁତ କରି ସେଥିରୁ ପଇସା ଉତ୍ପନ୍ନ କରିବାକୁ ଚାହାନ୍ତି । କେହି କେହି ଅନ୍ନ, ବସ୍ତ୍ର, ଗୁଡ଼, ଲୁଣ ଆଦି ସଂସାରୀ ବସ୍ତୁର ବ୍ୟବସାୟ କରନ୍ତି, କେହି କେହି ଭକ୍ତିର ବ୍ୟବସାୟ କରନ୍ତି---ଏମାନଙ୍କର ଇଚ୍ଛା ଭଗବାନଙ୍କୁ ପାଇବାପାଇଁ ନୁହେଁ, ପଇସା ଉତ୍ପନ୍ନ କରିବା ଉଦ୍ଦେଶ୍ୟରେ କୃଷ୍ଣ-କଥାକୁ ସାଧନ କରିଥା'ନ୍ତି, ଧନ ଚାହାନ୍ତି, ତାହା ସେମାନଙ୍କୁ ବି ମିଳିଯାଏ । ଯେଉଁମାନେ ଧନ ଆଦି କିଛି ନ ଚାହିଁ ମୋତେ ହିଁ ଚାହାଁନ୍ତି ସେମାନଙ୍କୁ ମୁଁ ହିଁ ପ୍ରାପ୍ତ ହୋଇଥାଏ ।

ଯେଉଁମାନେ ନିଜ ମନକୁ ତଥା ଇନ୍ଦ୍ରିୟଙ୍କୁ କାବୁ କରିଦେଇ ଥାଆନ୍ତି, ଯେଉଁମାନଙ୍କର ବୁଦ୍ଧି ବିଷୟ ବିଲୋକନରେ ବିଚଳିତ ହୁଏ ନାହିଁ—ସେମାନଙ୍କପାଇଁ ଦୁଃଖ ନଥାଏ । ସେମାନେ ଶୋକଶୂନ୍ୟ, ଚିନ୍ତାଶୂନ୍ୟ, ଭୟଶୂନ୍ୟ, ନିର୍ଭୟ ହୋଇ ସଂସାରରେ ବିଚରଣ କରନ୍ତି । ତାଙ୍କୁ ଯଦି କେହି ବ୍ରହ୍ମପଦ ଯାଚେ ଓ କହେ ଭଗବତ୍ ଭାବନା କିଛି ଦିନପାଇଁ ତ୍ୟାଗ କରିଦିଅ ତେବେ ସେମାନେ ବ୍ରହ୍ମପଦକୁ ପତ୍ୟାଖ୍ୟାନ କରିଦେବେ ଓ ଅନ୍ୟ କାହାକୁ ଆଡ଼ ଆଖିରେ ଚାହିଁବେ ବି ନାହିଁ । ସେମାନେ କହିଦେବେ—'ବ୍ରହ୍ମା ହୋଇଗଲେ ଆମର କି ଲାଭ ହେବ ? ବିନା କାରଣରେ ବ୍ରହ୍ମାଣ୍ଡଯାକର ଚିନ୍ତା ମୁଣ୍ଡଉପରେ ଲଦି ଦିଆଯିବ । ଆମର ଏତେ ସମୟ ନାହିଁ ଯେ ଆମେ ହଂସ ଉପରେ ଚଢ଼ି ଏଠିକି ଯା', ସେଠି ଦେଖ, ତା ପୁଅର ଚିନ୍ତା, ଯା ନାତିର ଚିନ୍ତା— ଏତେ ହିନସ୍ତା ଭିତରେ ପଶିବୁ । ଆମେ ତ ଶ୍ରୀକୃଷ୍ଣ ଚିନ୍ତନ ସୁଖ ଚାହୁଁଛୁ ।' ତେଣୁ ସେମାନେ ବ୍ରହ୍ମା ହେବାକୁ ବି ଚିନ୍ତା କରନ୍ତି ନାହିଁ ।

ଯିଏ ବ୍ରହ୍ମା ପଦକୁ ଚାହୁଁନାହିଁ ସେ ଇନ୍ଦ୍ରପଦକୁ ଖାତିର କରିବ କି ? ଏ ସବୁ ହେଉଛି ଅସ୍ଥାୟୀ, କ୍ଷୟିଷ୍ଣୁ ପଦ । କେହି ଯଦି ମୋ ଭକ୍ତକୁ କହେ—'ଏଥର ଆପଣ ସାର୍ବଭୌମ ରାଜା ହେବେ ।' ଏହାକୁ ସେମାନେ ଗାଳି ମନେକରିବେ । ସମଗ୍ର ବିଶ୍ୱର ଅଧିପତି ହେବାପାଇଁ ସେମାନେ ସ୍ୱପ୍ନରେ ବି ଆକାଂକ୍ଷା କରନ୍ତି ନାହିଁ । କେହି ଯଦି ମୋ ଭକ୍ତଙ୍କୁ କୁହନ୍ତି ଯେ ତୁମେ ସ୍ୱର୍ଗ, ବ୍ରହ୍ମପଦ, ସାର୍ବଭୌମ ପଦ ତଥା ଅନ୍ୟାନ୍ୟ ନ ଚାହାଁନ୍ତୁ ପଛେ, ଏହିଠାରେ ରହି ସମସ୍ତ ସିଦ୍ଧି ପ୍ରାପ୍ତ ହୁଅନ୍ତୁ—ଅଣିମା, ଗରିମା, ମହିମା, ଈଶ୍ୱତ୍ୱ ତଥା ବଶିତ୍ୱ ଆଦି ସିଦ୍ଧି ଉପଭୋଗ ନିମନ୍ତେ ଭଗବାନଙ୍କୁ ପ୍ରାର୍ଥନା କରନ୍ତୁ''— ତେବେ ସେମାନେ ଏପରି ପରାମର୍ଶକୁ ଭକ୍ତିର ସବୁଠାରୁ ବଡ଼ ବାଧା ବୋଲି ଅନୁଭବ କରନ୍ତି । ଏ ସମସ୍ତ ସିଦ୍ଧି ଭଗବାନ-ବିମୁଖ କରିଥାଏ, ଜୀବର ଅଭିମାନ ବଢ଼ାଇଥାଏ । ଏଥିଯୋଗୁଁ ମୋ ଭକ୍ତ ସଂସାରର କୌଣସି ବସ୍ତୁ, କୌଣସି ସିଦ୍ଧି, ତଥା ବଡ଼ଠାରୁ ଆହୁରି ବଡ଼ ପଦ ଚାହିଁ ନଥାନ୍ତି । ଏପରିକି ସେମାନେ ମୋକ୍ଷ

ବି ଚାହାନ୍ତି ନାହିଁ। ଯେଉଁ ମୋକ୍ଷରେ ମୋର ଦର୍ଶନ ହୋଇ ନପାରେ।, ମୋର ନିତ୍ୟ ସାନିଧ୍ୟ ହେଉ ନ ଥାଏ, ସେମାନେ ଏପରି ମୋକ୍ଷକୁ ପ୍ରତ୍ୟାଖ୍ୟାନ କରିଥାନ୍ତି। **ମୋ ଭକ୍ତ କେବଳ ମୋତେ ଚାହେଁ। ମୋ ଗୁଣ ଶ୍ରବଣ, ମୋ ନାମ ଗାୟନ, ମୋ ସ୍ୱରୂପର ଧ୍ୟାନ–** ଏ ସମସ୍ତ ତା'ର ଆହାର ହୋଇଥାଏ। ଏଥିପାଇଁ ସେ ସଦା ବ୍ୟାକୁଳ ହେଉଥାଏ। ଏଣୁ ଭକ୍ତମାନେ ମୋର ଅତି ପ୍ରିୟ ହୋଇଥା'ନ୍ତି।''

ଉଦ୍ଧବ ପଚାରିଲେ, ''ପ୍ରଭୁ! ଭକ୍ତ ଆପଣଙ୍କୁ କେତେ ଭଲ ଲାଗନ୍ତି? ଆପଣ ସେମାନଙ୍କୁ କିପରି ଭଲ ପାଆନ୍ତି? ଯେମିତି କମଳାନାଭ ବ୍ରହ୍ମା!?''

ଭଗବାନ କହିଲେ, ''ହେ ଉଦ୍ଧବ! ସଂସାରରେ ସବୁଠାରୁ ପ୍ରିୟ ହେଉଛି ପୁଅ। ପୁଅ ହେଉଛି ନିଜର ଆତ୍ମା। ସଂସାରରେ ଲୋକମାନେ ଅଯୋଗ୍ୟ ପୁଅକୁ ବି ଭଲ ପାଆନ୍ତି। ଏପରି ସ୍ଥଳରେ ସର୍ବଜ୍ଞାନ-ସମ୍ପନ୍ନ ଆଜ୍ଞାକାରୀ ପୁତ୍ର ଥିଲେ ଆଉ କହିବାର କ'ଣ ଅଛି। ବ୍ରହ୍ମା ହେଉଛନ୍ତି ମୋର ଯୋଗ୍ୟ ପୁଅ। ସେ ଆଜ୍ଞାକାରୀ, ତେବେ ବି ସେ ମୋର ସେତେ ପ୍ରିୟ ନୁହନ୍ତି ଯେତେ ଭକ୍ତମାନେ ମୋର ପ୍ରିୟ ହୋଇଥା'ନ୍ତି।''

ଉଦ୍ଧବ କହିଲେ, ''ତା'ହେଲେ ଶଙ୍କର ଭଗବାନ୍ ଆପଣଙ୍କର ଯେତ୍ତେ ପ୍ରିୟ ଭକ୍ତମାନେ ସେତ୍ତେ ପ୍ରିୟ!''

ଭଗବାନ ହସି ହସି କହିଲେ, ''ହେ ଉଦ୍ଧବ! ପୁତ୍ରଠାରୁ ଅଧିକ ପ୍ରିୟ ପୌତ୍ର ହୋଇଥାଏ। ପୁଣି ପୌତ୍ର ଯଦି ତା ପଦବୀରେ ପହଞ୍ଚିଯାଏ, ସର୍ବସମର୍ଥ ହୋଇଯାଏ ତେବେ ଅଧିକ କ'ଣ କହିବାର ଅଛି! ଶଙ୍କର ହେଉଛନ୍ତି ପରମ ଐଶ୍ୱର୍ଯ୍ୟଶାଳୀ, ସର୍ବସମର୍ଥ, ପରମେଶ୍ୱର। ତେବେ ବି ସେ ମୋର ସେତେ ପ୍ରିୟ ନୁହନ୍ତି। ତାଙ୍କଠାରୁ ଅଧିକ ପ୍ରିୟ ହେଉଛନ୍ତି ମୋର ଭକ୍ତଜନମାନେ।

ଉଦ୍ଧବ କହିଲେ, ''ତାହାହେଲେ ହେ ପ୍ରଭୁ! ଭକ୍ତଙ୍କୁ କ'ଣ ଆପଣ ଆପଣଙ୍କ ବଡ଼ ଭାଇ ସଙ୍କର୍ଷଣଙ୍କ ଠାରୁ ଅଧିକ ଭଲ ପାଆନ୍ତି?''

ଭଗବାନ କହିଲେ, ''ଶଙ୍କର୍ଷଣ ହେଉଛନ୍ତି ମୋର ବଡ଼ଭାଇ। ତାଙ୍କୁ ମୁଁ ଅତ୍ୟଧିକ ଆଦର କରେ, ହୃଦୟର ସହିତ ପ୍ରେମକରେ। କିନ୍ତୁ ସେ ବି ମୋର ସେତେ ପ୍ରିୟ ନୁହନ୍ତି ଯେତେ ମୁଁ ଭକ୍ତମାନଙ୍କୁ ଭଲ ପାଏ।''

ଉଦ୍ଧବ କହିଲେ, ''ପ୍ରଭୁ! କାହା ସହିତ ସମତା ଥିବ ତ! ସଂସାରରେ ସବୁଠାରୁ ପ୍ରିୟ, ନିଜ କୁଳ ପରମ୍ପରା ଓ ଆଚରଣ କରୁଥିବା, ଅତ୍ୟନ୍ତ ଅନୁରାଗ ରଖିଥିବା ଲୋକ ହେଉଛି ନିଜର ଅର୍ଦ୍ଧାଙ୍ଗିନୀ। ଏଥିପାଇଁ ତାଙ୍କୁ ଜୀବନ ସହଚରୀ, ପ୍ରାଣପ୍ରିୟା ତଥା ପ୍ରିୟତମା କୁହନ୍ତି। ଲକ୍ଷ୍ମୀ ଆପଣଙ୍କର ପ୍ରିୟତମା। କ୍ଷଣକ ପାଇଁ ବି ସେ ଆପଣଙ୍କ ପାଦପଦ୍ମଠାରୁ ପୃଥକ୍ ରୁହନ୍ତି ନାହିଁ। ତାଙ୍କର ସୁକୋମଳ କୋଳରେ ଆପଣଙ୍କର ପାଦପଦ୍ମକୁ ଧାରଣ କରି ସେ ତାଙ୍କର ସୁକୋମଳ ଅଙ୍ଗୁଳିରେ ସର୍ବଦା ସେବା କରୁଥା'ନ୍ତି। ଭକ୍ତଜନ କ'ଣ ଆପଣଙ୍କର ତାଙ୍କ ଭଳି ପ୍ରିୟ?''

ଏହା ଶୁଣି ଭଗବାନ ଉଚ୍ଚସ୍ୱରରେ ହସିବାରେ ଲାଗିଲେ ଏବଂ କହିଲେ, ''ହେ ଉଦ୍ଧବ! ତୁମେ ଠିକ୍ କହିଛ। କାମିନୀଙ୍କୁ କାମଧୁରା ତଥା ଗୃହମେଧ ଧେନୁ କୁହନ୍ତି।

ସେ ହେଉଛନ୍ତି ଗୃହର କଳ୍ପଲତା। ସେ ସକଳ ପ୍ରକାର ସୁଖ ପ୍ରଦାନ କରିଥାନ୍ତି। ସେ ଅନବରତ ଅନୁରାଗର ସ୍ରୋତ ପ୍ରବାହିତ କରୁଥାଆନ୍ତି। ଏଣୁ ଲକ୍ଷ୍ମୀ ମୋର ଅତି ପ୍ରିୟ। କିନ୍ତୁ ମୋ ଭକ୍ତଜନ ଯେତେ ପ୍ରିୟ ସେ ସେତେ ପ୍ରିୟ ନୁହନ୍ତି।''

ଉଦ୍ଧବ କହିଲେ, ''ହଁ ପ୍ରଭୁ! ଏଥର ଜାଣିଗଲି। ଭକ୍ତଜନ ଆପଣଙ୍କର ପ୍ରାଣଭଳି ପ୍ରିୟ। କାରଣ ପ୍ରାଣଠାରୁ ଅଧିକ ପ୍ରିୟ ସଂସାରରେ କିଛି ନାହିଁ।''

ଭଗବାନ କହିଲେ, ''ହେ ଉଦ୍ଧବ! ତୁମର ଉକ୍ତି ଶହେରୁ ଶହେ ଭାଗ ସତ୍ୟ। ପ୍ରାଣ ହେଉଛି ସବୁଠାରୁ ଅଧିକ ପ୍ରିୟ। କିନ୍ତୁ ମୋ ଭକ୍ତମାନେ ମୋ'ର ପ୍ରାଣଠାରୁ ହେଲେ ଅଧିକ ପ୍ରିୟ ହୋଇଥାନ୍ତି। ସେମାନେ ମୋ ପ୍ରାଣର ପ୍ରାଣ। ଭକ୍ତ ମୋର ପରମଧନ। ଭକ୍ତ ମୋ'ର ଇଷ୍ଟ। ଭକ୍ତ ମୋ'ର ସର୍ବସ୍ୱ। ଗାଈ ପଛରେ ବାଛୁରୀ ଗୋଡ଼ାଇ ଥିବାଭଳି ଭକ୍ତଙ୍କ ପଛରେ ମୁଁ ଗୋଡ଼ାଉଥାଏ।''

ଉଦ୍ଧବ କହିଲେ, ''ପ୍ରଭୁ! ବାଛୁରୀ ତ ଦୁଧ ପିଇବାପାଇଁ ଦଉଡ଼େ। ବାଛୁରୀଠାରୁ ଗାଈର ପ୍ରେମ ସ୍ନେହ ଥାଏ ଅଧିକ।''

ଭଗବାନ କହିଲେ, ''ମୁଁ ମୋ ଭକ୍ତଙ୍କ ପଛରେ ଏପରି ଗୋଡ଼ାଉଥାଏ ଯେପରି ସ୍ୱାମୀଙ୍କ ପଛରେ ସେବକମାନେ ଗୋଡ଼ାଉଥାଆନ୍ତି।''

ଭଗବାନ୍ କହିଲେ, ''ମୋର ବି ଲୋଭ ଅଛି। ମୁଁ ମଧ କିଛି ସ୍ୱାର୍ଥପାଇଁ ଗୋଡ଼ାଉଥାଏ। ମୁଁ କେବେହେଲେ ମୋ ଭକ୍ତଙ୍କ ଆଗେ ଆଗେ ଯାଏ ନାହିଁ। ସବୁବେଳେ ପଛରେ ଯାଉଥାଏ।''

ଏପରି କଥା ଶୁଣି ମହର୍ଷି ଶୌନକ ପଚାରିଲେ—''ହେ ମହର୍ଷି ସୂତ! ଭଗବାନ ଭକ୍ତର ପଛେ ପଛେ କାହିଁକି ଦୌଡ଼ୁ ଥାଆନ୍ତି।''

ମହର୍ଷି ସୂତ କହିଲେ, ''ମହାରାଜ! ଭଗବାନଙ୍କର ଭକ୍ତପାଇଁ ଖୁବ୍ ଚିନ୍ତା ଥାଏ। ଏତେ ଚିନ୍ତା ଯେ ମା'ମାନଙ୍କର ପୁଅମାନଙ୍କପାଇଁ ନଥିବ। ମାତାମାନେ ପୁଅମାନଙ୍କର ଚିନ୍ତା ସବୁବେଳେ କରୁଥାଆନ୍ତି। ସେମାନେ ଘରକାମ ତ କରୁଥାଆନ୍ତି, କିନ୍ତୁ ମନ ଥାଏ ପୁଅ ପାଖରେ। ପୁଅ ଯଦି ଆଖି ସାମନାରୁ ଅଦୃଶ୍ୟ ହୋଇଯାଏ ତେବେ ନାନା ପ୍ରକାର ଅନିଷ୍ଟ ଆଶଙ୍କା କରିବାରେ ଲାଗନ୍ତି। ଏଣୁ ଭଗବାନ କେତେବେଳେ ହେଲେ ଭକ୍ତର ପଛ ଛାଡ଼ନ୍ତି ନାହିଁ। ପଛରେ ରହିବାର କାରଣ ହେଉଛି, ଆଗର କଥା ତ ଭକ୍ତ ସ୍ୱଚକ୍ଷୁରେ ଦେଖିପାରେ, ପିଠିରେ ତ ଆଖି ନାହିଁ, ପଛ ପଟରୁ ଯଦି କେହି ପ୍ରହାର କରିଦିଏ! ଦ୍ୱିତୀୟ କାରଣ ହେଉଛି, ଭକ୍ତ ଭଗବାନଙ୍କର ଅତ୍ୟନ୍ତ ପ୍ରିୟ, ଆଗରେ ଥିଲେ, ଆଖିରେ ଆଖି ମିଶିଗଲେ କାଳେ ଭଗବାନଙ୍କର ସମାଧି ହୋଇଯିବ! ସେ ତ ଆଉ ଚାଲି ପାରିବେ ନାହିଁ। ତେଣୁ ସେ ପିଠି ପାଖରେ ଲୁଚି ଚାଲିଥାନ୍ତି।

''ତୃତୀୟ କାରଣ ହେଉଛି, ଭଗବାନ ନିଜକୁ ଭକ୍ତଙ୍କଠାରୁ ସାନ ମନେକରନ୍ତି। ସାନମାନେ ବଡ଼ଙ୍କ ପଛେ ପଛେ ଚାଲୁଥିବା ଉଚିତ। ବଡ଼ମାନଙ୍କୁ ପିଠି ଦେଖାଇ ବସିବା ଉଚିତ ନୁହେଁ।

''ଚତୁର୍ଥ କାରଣ ହେଉଛି, ଭକ୍ତମାନେ ବଡ଼ ସଂକୋଚୀ ହୋଇଥା'ନ୍ତି। ଭଗବାନ ଭକ୍ତଙ୍କୁ ଯଦିଓ ନିଜର ଇଷ୍ଟ ମାନନ୍ତି, ଭକ୍ତମାନେ ତ ଭଗବାନଙ୍କୁ ନିଜର ଆରାଧ୍ୟ ଆଉ ସର୍ବସ୍ୱ ମାନନ୍ତି। ଭଗବାନ ଆଗେ ଆଗେ ଗଲେ ଭକ୍ତର ପାଦ ଭଗବାନଙ୍କର ପାଦ ଚିହ୍ନ ଉପରେ କାଳେ ପଡ଼ିଯିବ। ପଦ ଚିହ୍ନକୁ ଆଡ଼େଇ ଆଡ଼େଇ ବାମ ପଟେ ଡାହାଣ ପଟେ, ଏପଟେ ସେପଟେ ଚାଲିବାକୁ ହେବ। ଗୋଡ଼ରେ କଣ୍ଟା ଝଟା ବି ଲାଗିଯାଇ ପାରେ। ଏପରି ସଂକୋଚ ଦୂରକରିବା ଉଦ୍ଦେଶ୍ୟରେ ଭଗବାନ ଭକ୍ତଙ୍କର ପଛେ ପଛେ ହିଁ ଚାଲନ୍ତି। ଏପରି ଅନୁଭବ ରାମାବତାର-ଭଗବାନଙ୍କର ପ୍ରତ୍ୟକ୍ଷ ବି ହୋଇଥିଲା।''

ମହର୍ଷି ଶୌନକ ପଚାରିଲେ—''ମହାରାଜ! ରାମାବତାରରେ କିପରି ଏହାର ପ୍ରତ୍ୟକ୍ଷ ଅନୁଭବ ଭଗବାନଙ୍କର ହୋଇଥିଲା ?''

ମହର୍ଷି ସୂତ କହିଲେ, ''ମହାରାଜ! ଚିତ୍ରକୂଟରୁ ଭଗବାନ ଯେତେବେଳେ ଦଣ୍ଡକାରଣ୍ୟକୁ ଯାଉଥିଲେ ସେତେବେଳେ ସେ ଆଗେ ଆଗେ ଯାଉଥିଲେ। ତାଙ୍କ ପଛରେ ସୀତା ଓ ସୀତାଙ୍କ ପଛରେ ଲକ୍ଷ୍ମଣ ଥିଲେ। ଜାନକୀ ଅତି ସାବଧାନରେ ଚାଲୁଥିଲେ। 'ଭଗବାନଙ୍କ ଚରଣ ଚିହ୍ନରେ [illegible] କାଳେ ପଡ଼ିଯିବ', ସେଥିପ୍ରତି ତାଙ୍କୁ ସାବଧାନତା ଅବଲମ୍ବନ କରିବାକୁ ପଡୁଥିଲା। ଲକ୍ଷ୍ମଣଙ୍କୁ ତ ଆହୁରି ଅଧିକ ସାବଧାନ ହେବାକୁ ପଡୁଥିଲା। ତାଙ୍କୁ ଚାରି[illegible] ପାଦଚି[illegible]କୁ [illegible]ଡ଼ାଇ ଚାଲିବାକୁ ପଡୁଥିଲା। ଏପରି କେତେ ବାଟ ଯିବାପରେ ଭଗବାନଙ୍କର [illegible] ଦୃଷ୍ଟି ପଡ଼ିଲା। ସେତେବେଳେ ଲକ୍ଷ୍ମଣଙ୍କ ପାଦରେ ଅସଂଖ୍ୟ କଣ୍ଟା ଲାଗି [illegible] ଥିଲା। ଭଗବାନ ଏପରି ଦୃଶ୍ୟ ଦେଖି ଭାବିଲେ—''ଏମାନଙ୍କର ସମଗ୍ର ଏକାଗ୍ରତା ଯଦ ପାଦଚିହ୍ନରେ ରହେ ତେବେ ଏମାନେ ବଣର ପ୍ରାକୃତିକ ଶୋଭା କ'ଣ ଦେଖିବେ! ସୁଖ କିପରି ପାଇବେ! ଯେଉଁଠାରେ ଲଜ୍ୟା, ସଂକୋଚ ଆଉ ଭୟ ଥିବ ସେଠାରେ ରସ କିପରି ଆସ୍ୱାଦନ କରିହେବ।'' ଏପରି ଚିନ୍ତାକରି ଭଗବାନ ଗୋଟିଏ ଝଙ୍କାଳିଆ ବୃକ୍ଷମୂଳରେ ବସିଗଲେ। ପାଖରେ ଗୋଟିଏ ସ୍ୱଚ୍ଛ ନିର୍ମଳ ଜଳପୂର୍ଣ୍ଣ ପୁଷ୍କରିଣୀ ଥିଲା। ଲକ୍ଷ୍ମଣ ବୃକ୍ଷର ପତ୍ରରେ ପାଣି ନେଇ ଆସିଲେ। ଜାନକୀ-ଜୀବନ ସେହି ଜଳରେ ମୁହଁ, ହାତ ଧୋଇଲେ, ଜଳପାନ କଲେ, କିଛି ସମୟ ବିଶ୍ରାମ ନେଲେ, ଆଉ କହିଲେ, ''ଲକ୍ଷ୍ମଣ! ଏଥର ଚାଲିବା କ୍ରମ ବଦଳାଇବା।''

ଲକ୍ଷ୍ମଣ ପଚାରିଲେ, ''ବଦଳାଇବା କିମିତି ?''

ଭଗବାନ କହିଲେ, ''ତୁମେ ଧନୁର୍ବାଣ ଧାରଣ କରି ଆଗେଆଗେ ଚାଲ। ତୁମ ପଛରେ ସୀତା ଚାଲନ୍ତୁ। ତୁମ ଦୁହିଁଙ୍କ ପୃଷ୍ଠଦେଶ ରକ୍ଷାକରି ମୁଁ ଚାଲିବି। ଏହା ଅତି ଭୟଙ୍କର ବନପ୍ରଦେଶ। ଏଠାରେ ପ୍ରତ୍ୟେକ ପାଦରେ ରାକ୍ଷସଙ୍କର ଭୟ ଅଛି।''

ଲକ୍ଷ୍ମଣ କହିଲେ, ''ଆପଣଙ୍କର ଇଚ୍ଛା ଯେପରି ସେପରି ହେଉ।'' ଏପରି କହି ଲକ୍ଷ୍ମଣ ଆଗେ ଆଗେ ଚାଲିଲେ, ସୀତା ତାଙ୍କ ପଛରେ ଆଉ ଭଗବାନ ସବା ପଛରେ। ଏପରି କ୍ରମରେ ଚାଲିବାଦ୍ୱାରା ସୀତା ନିଶ୍ଚିନ୍ତ ହେଲେ। ଲକ୍ଷ୍ମଣ ନିର୍ଦ୍ୱନ୍ଦ୍ୱରେ ଆଗେ ଆଗେ ଚାଲିଲେ। ଭଗବାନ ବି ଆନନ୍ଦ ମନରେ ତାଙ୍କର ଦୁଇ ଭକ୍ତଙ୍କ ପଦରଜ ଓ ଧୂଳିମାଡ଼ ଖାଇ, ସେମାନଙ୍କୁ ବତାଇ ପ୍ରାକୃତିକ ଶୋଭା ସବୁ ଦେଖାଇ, ସେମାନଙ୍କ

ଚିତ୍ତ ବିନୋଦନ କରି କରି, ତଥା ସେମାନଙ୍କୁ ସୁରକ୍ଷା ପ୍ରଦାନ କରି କରି ଅନୁଧାବନ କରିବାରେ ଲାଗିଲେ। ସେହି ଦିନଠାରୁ ଭଗବାନ୍ ଏହି ଶିକ୍ଷା ଗ୍ରହଣ କଲେ ଯେ—''ଆଜିଠାରୁ ମୁଁ ଭକ୍ତଙ୍କ ପଛରେ ବା ତଳେ ରହିବି। କୃଷ୍ଣାବତାର ସମୟରେ ସେ ସଂକର୍ଷଣଙ୍କୁ କହିଲେ, ଆପଣ ଆଗେ ଆଗେ ଚାଲନ୍ତୁ। ଆଗରୁ ଜନ୍ମ ହୋଇଥିବାରୁ ବଡ଼, ମୁଁ ପଛରେ ଯିବି, ଆପଣଙ୍କର ପଛରେ ଯିବି। ଏଥିପାଇଁ ଭଗବାନ ଅଷ୍ଟମ ହୋଇଥିଲେ, ସମସ୍ତଙ୍କ ପରେ ପ୍ରକଟ ହେଲେ। ଭଗବାନ ଶ୍ରୀକୃଷ୍ଣ ପାଣ୍ଡବଙ୍କର ପଛେ ପଛେ ହିଁ ଚାଲୁଥିଲେ। ଅର୍ଜ୍ଜୁନଙ୍କର ରଥରେ ବି, ଅର୍ଜ୍ଜୁନଙ୍କ ଆସନର ନିମ୍ନ ଦେଶରେ, ଅର୍ଜ୍ଜୁନଙ୍କର ପାଦ ରହୁଥିବା ସ୍ଥାନରେ, ବସିଥିଲେ। ଏହିଭଳି ଭଗବାନ ଭକ୍ତଙ୍କ ପଛରେ, ତଳେ ହିଁ ସବୁବେଳେ ରହିଥା'ନ୍ତି।''

ଉଦ୍ଧବ କୃଷ୍ଣଚନ୍ଦ୍ରଙ୍କୁ ଏହି ପ୍ରସଙ୍ଗରେ ପଚାରୁଛନ୍ତି—''ଭଗବାନ! ଭକ୍ତଙ୍କ ପଛରେ ଯିବାର ଆଉ କିଛି କାରଣ ଅଛି କି?''

ଅତ୍ୟନ୍ତ ବିହ୍ୱଳ ହୋଇ ଗଦ୍ ଗଦ୍ କଣ୍ଠରେ ଭଗବାନ ଶ୍ରୀକୃଷ୍ଣଚନ୍ଦ୍ର କହିଲେ, ''ଉଦ୍ଧବ! ଭକ୍ତଙ୍କ ପଛେ ପଛେ ଆଗ୍ରହର ସହିତ ଅନୁଧାବନ କରୁଥିବାର ମୁଖ୍ୟ କାରଣ ଏହା ଯେ— ମୋର ଶାନ୍ତ, ସମଦର୍ଶୀ, ସରଳ, ଶୁଚିବ୍ରତ, ସତ୍ୟବାଦୀ, ନିରପେକ୍ଷ, ଭକ୍ତଙ୍କ ଚରଣଧୂଳି ମୋ ଉପରେ ପଡ଼ିବ, ମୋର ଅପାବନ ଶରୀରକୁ ପାବନ କରୁଥିବ। ମୋତେ ସମସ୍ତେ ପତିତପାବନ ଆଉ ଅଧମୋଦ୍ଧାରକ କୁହନ୍ତି। ସମସ୍ତେ ମୋ ଚରଣ ଧୂଳିରେ ପବିତ୍ର ହୁଅନ୍ତି। ଆଉ ମୁଁ ମୋ ଭକ୍ତଙ୍କର ଚରଣ ଧୂଳିରେ ପାବନ ହୋଇଥାଏ। ଏହି ଲୋଭରେ ମୁଁ ଭକ୍ତଙ୍କ ପଛେ ପଛେ ଚାଲୁଥାଏ।''

ଉଦ୍ଧବ ପଚାରିଲେ, ''ଭଗବନ୍! ଆପଣଙ୍କ ଭକ୍ତ ପ୍ରାୟତଃ ଦରିଦ୍ର, ମଳିମୁଣ୍ଡିଆ ଆଉ ଦୁଃଖୀ ହୋଇଥାନ୍ତି। ଏହାଙ୍କ ବିପରୀତ ଯେଉଁ ଅଭକ୍ତ ଅଛନ୍ତି ସେମାନେ ଖୁବ୍ ଐଶ୍ୱର୍ଯ୍ୟଶାଳୀ ଆଉ ସୁଖୀ ଦେଖାଯାଆନ୍ତି। ଏହାର କାରଣ କ'ଣ?''

ଭଗବାନ କହିଲେ, ''ହେ ଉଦ୍ଧବ! ମୋ ଭକ୍ତ ନିର୍ଧନ ଓ ମଳିମୁଣ୍ଡିଆ ହୋଇଥାଆନ୍ତୁ ପଛେ, ସେମାନେ କିନ୍ତୁ ଦୁଃଖୀ ନୁହଁନ୍ତି। ସେମାନଙ୍କ ଚିତ୍ତ ଏକମାତ୍ର ମୋ ଠାରେ ଥାଏ। ସେମାନେ ନିଜର ବୋଲି କିଛି ଜାଣନ୍ତି ନାହିଁ। ତାଙ୍କ ପାଖରେ ଯାହା ଥାଏ ସେ ସମସ୍ତଙ୍କୁ ସେମାନେ ପ୍ରଭୁଙ୍କ ଉପଭୋଗ ନିମନ୍ତେ ସେବାକାର୍ଯ୍ୟରେ ଲଗାଇ ଦିଅନ୍ତି। ଧନ ନ ଥିବା ଅର୍ଥ ଦରିଦ୍ର ନୁହେଁ। ଯିଏ ମନରେ ଦରିଦ୍ର ସେ ହିଁ ପ୍ରକୃତରେ ଦରିଦ୍ର ହୋଇଥାଏ। ହେ ଉଦ୍ଧବ! ତୁମେ ଭାବିକି ଦେଖ ଯାହାଙ୍କ ପାଖରେ ବିପୁଳ ଧନ ଅଛି, ଆଉ ମନରେ ସେ ଦରିଦ୍ର, କୃପଣ, ଲୋଭୀ, ସେପରି ଲୋକର ଧନ କେତେ କାର୍ଯ୍ୟରେ ଲାଗେ। ସେ କାହାକୁ ନା ଦେଇପାରେ, ନା ନିଜେ ତାହାକୁ ଉପଭୋଗ କରିପାରେ। ଅପର ପକ୍ଷରେ ଯାହା ପାଖରେ କେବଳ ଦିନକୁ ଥରେ ମାତ୍ର ଛତୁ ଗୁଡ଼ିଏ ଭୋଜନ କରିବାକୁ ଥାଏ, ଆଉ ଯଦି କେହି ଭୋକିଲା ଅତିଥି ଆସି ପହଞ୍ଚେ ସେ ଛତୁ ଗୁଡ଼ିକପାଇଁ ଆଉ ଯଦି ସେ ତାହା ଦେଇଦିଏ ତେବେ ସେ ହିଁ ବାସ୍ତବିକ ଉଦାର ଓ ଧନବାନ ବୋଲି ଜାଣିବ।

''ଅର୍ଜ୍ଜୁନ ଥିଲେ ଦେବରାଜ ଇନ୍ଦ୍ରଙ୍କ ପୁତ୍ର। ମହାଭାରତ ଯୁଦ୍ଧ ହେବାକୁ ଥିଲା। ଯୁଦ୍ଧରେ କର୍ଣ୍ଣ ତାଙ୍କ ପୁତ୍ର ଅର୍ଜ୍ଜୁନଙ୍କୁ ନିଶ୍ଚୟ ମାରିଦେବ ବୋଲି ଇନ୍ଦ୍ରଙ୍କର ଖୁବ୍ ଚିନ୍ତା ଥିଲା। କାରଣ କର୍ଣ୍ଣ ହେଉଛନ୍ତି ସୂର୍ଯ୍ୟଙ୍କର ପୁତ୍ର। କବଚ କୁଣ୍ଡଳ ପରିଧାନକରି ଜନ୍ମ ହୋଇଥିଲେ। ଯେ ପର୍ଯ୍ୟନ୍ତ ତାଙ୍କ ଦେହରେ ଏହି ସ୍ୱାଭାବିକ କବଚ ଓ କାନରେ କୁଣ୍ଡଳ ଥିବ, ସେ ପର୍ଯ୍ୟନ୍ତ ତାଙ୍କୁ କେହି ମାରିପାରିବ ନାହିଁ, ଆଉ ସେ ସମସ୍ତଙ୍କୁ ପରାଜିତ କରିଦେବେ। ସେହି କବଚ କୁଣ୍ଡଳ କୌଣସି ପ୍ରକାର କର୍ଣ୍ଣଠାରୁ ଆଣିବା ଉଦ୍ଦେଶ୍ୟରେ ଇନ୍ଦ୍ର ବ୍ରାହ୍ମଣ ବେଶରେ କର୍ଣ୍ଣଙ୍କ ପାଖକୁ ଗଲେ। ସୂର୍ଯ୍ୟଙ୍କୁ ଏ କଥା ଜଣାପଡ଼ିଗଲା। ଇନ୍ଦ୍ରଙ୍କର ଏପରି ପ୍ରତାରଣାପୂର୍ଣ୍ଣ ଉଦ୍ଦେଶ୍ୟ କର୍ଣ୍ଣଙ୍କୁ ଜଣାଇଦେବାପାଇଁ ସୂର୍ଯ୍ୟ ସ୍ଥିର କଲେ। ପୁତ୍ରସ୍ନେହ ହେତୁ ସୂର୍ଯ୍ୟଦେବ କର୍ଣ୍ଣଙ୍କୁ କହିଲେ, ''ବତ୍ସ! ଇନ୍ଦ୍ର ବ୍ରାହ୍ମଣ ବେଶଧରି ତୋତେ କବଚ କୁଣ୍ଡଳ ମାଗିବାକୁ ଆସିବ। ତାକୁ ତାହା ଦେବୁ ନାହିଁ।

କର୍ଣ୍ଣ କିନ୍ତୁ ଦୃଢ଼ତାର ସହିତ କହିଲେ—''ପିତୃଦେବ! ଆପଣ ମୋତେ ଏପରି ବିପରୀତ ଉପଦେଶ କିପରି ଦେଉଛନ୍ତି! ଯାହା ମୋ ପାଖରେ ଅଛି ଯଦି ଜଣେ ବ୍ରାହ୍ମଣ ତାହା ମୋତେ ମାଗେ ତେବେ ମୁଁ ତାକୁ ମନା କରିଦେବା କ'ଣ କେବେ ସମ୍ଭବ! କଦାପି ନୁହେଁ। ଇନ୍ଦ୍ର ବ୍ରାହ୍ମଣ ବେଶରେ ଆସିବେ, ସେ ନିଜେ ଆସିଲେ ବି ମୁଁ ତାଙ୍କୁ ମନା କରିପାରିବି ନାହିଁ।''

ପୁଅଠାରୁ ଏପରି ଧର୍ମସମ୍ପନ୍ନ କଥା ଶୁଣି ସୂର୍ଯ୍ୟଦେବ ତଳକୁ ମୁହଁ ପୋତି ଚାଲିଗଲେ।

ଇନ୍ଦ୍ର ବ୍ରାହ୍ମଣ ବେଶ ଧରି ଆସିଲେ। କର୍ଣ୍ଣ ତାଙ୍କୁ ଚିହ୍ନିଲେ। ତାଙ୍କର ଯାଚନା ଅନୁସାରେ କର୍ଣ୍ଣ ନିଜ ଶରୀରରୁ କବଚ କୁଣ୍ଡଳ କାଟି ବାହାର କରି ଦେଲେ। ଇନ୍ଦ୍ର ତାହା ଗ୍ରହଣ କରି ଫେରିଗଲେ; କିନ୍ତୁ ତାଙ୍କର ଘୋଡ଼ା ତାଙ୍କୁ ସ୍ୱର୍ଗରେ ପହଞ୍ଚାଇବାକୁ ସମର୍ଥ ହୋଇପାରିଲେ ନାହିଁ। ଆଚ୍ଛା ଉଦ୍ଧବ, ଭାବିଲ ଦେଖି— ଏମାନଙ୍କ ଭିତରେ ଦରିଦ୍ର କିଏ ହେଲା? ବାସ୍ତବରେ ଇନ୍ଦ୍ର ଦରିଦ୍ର ହେଲା। ଏହିଭଳି ମୁଁ ଦିନେ ତା'ର ଉଦାରତା ପରୀକ୍ଷା କରିବାପାଇଁ ବର୍ଷା ସମୟରେ ସାଧୁ ବେଶରେ ଯାଇଥିଲି। ସେତେବେଳେ କେଉଁଠାରେ ଶୁଖିଲା କାଠ ମିଳିଲା ନାହିଁ। ସେ ନିଜେ ନିଜ ହାତରେ ତା ଘରେ କଡ଼ି ବରଗା ରୂପେ ବ୍ୟବହାର ହେଉଥିବା ଚନ୍ଦନ କାଠ ବାହାର କରି ମୋତେ ଦେଇଥିଲା ନିଆଁ ପୁଇଁବାପାଇଁ। ମୋ ଭକ୍ତମାନେ କୌଣସି ବସ୍ତୁକୁ ନିଜର ବୋଲି ମନେକରନ୍ତି ନାହିଁ। ସେମାନେ ନିଷ୍କିଞ୍ଚନ ରହିଥା'ନ୍ତି। କିନ୍ତୁ ସେମାନଙ୍କର ଚିତ୍ତ ସଦା ମୋ ଠାରେ ଅନୁରକ୍ତ ଥାଏ।

''ଉଦ୍ଧବ! ତୁମେ ବ୍ରଜକୁ ଯାଇଥିଲ। ସବୁ ଦେଖି ଆସିଛ। ସେମାନେ ନିଜ ହାତରେ ଘର କାମ ତ କରୁଥିଲେ, କିନ୍ତୁ ଚିତ୍ତରେ ସବୁବେଳେ ମୋ ଚିନ୍ତା ହିଁ କରୁଥାଆନ୍ତି। ଦୁଧ ଦହି ବିକ୍ରି କରିବାକୁ ଯାଉଥାନ୍ତି, ହେଲେ ମନରେ ମୋତେ ହିଁ ଧାରଣ କରିଥାଆନ୍ତି। ସେମାନେ ମୁଣ୍ଡରେ ଦୁଧଦହି ବଢ଼ା ଧରି ଗାଁ ଦାଣ୍ଡରେ 'ଦହି ନେବ ଦହି, କ୍ଷୀର ନେବ କ୍ଷୀର' ଏପରି କହିବା ବଦଳରେ 'ଶ୍ୟାମ ନେବ ଶ୍ୟାମ,

କୃଷ୍ଣଙ୍କୁ ନିଅ କୃଷ୍ଣଙ୍କୁ'। ଅନ୍ୟମାନେ କୁହନ୍ତି 'ଆଉ, ତୁମେ ଦୁଧ ଦହୀ ବିକ୍ରି କରିବାକୁ ଆସିଛ ନା ଶ୍ୟାମଙ୍କୁ, କୃଷ୍ଣଙ୍କୁ?'' ଏପରି କଥା ଶୁଣି ସେମାନେ ଲାଜେଇ ଯାଉ ଥାଆନ୍ତି। ଠିକ୍ ଏହିଭଳି ଭୋଜନ କରିବାବେଳେ, ଦୁଧଦୁହିଁବା ବେଳେ, ପିଲାଙ୍କୁ ଖେଳାଉଥିବା ବେଳେ ମନ ମୋ'ରି ଠାରେ ଅନୁରକ୍ତ ଥାଏ। ମୋ ଭକ୍ତ ଶାନ୍ତ ଓ ସରଳ ହୋଇଥାନ୍ତି। ସେମାନଙ୍କୁ କିଏ କେତେ କ୍ଲେଶ ଦିଅନ୍ତୁ ପଛେ, ସେମାନେ କାହା ଦୋଷ ଦେଖନ୍ତି ନାହିଁ। ସେମାନେ ସକଳ ପ୍ରାଣୀଙ୍କ ହିତ ନିମନ୍ତେ ଅନବରତ ଲାଗି ରହିଥାଆନ୍ତି। ସେମାନଙ୍କ ମନରେ ସଂସାରୀ କାମନା ଆଦୌ ଉତ୍ପନ୍ନ ହେଉ ନଥାଏ। ସେମାନେ ମୋ ଠାରେ ମନୋନିବେଶ କରି ବିଷୟରେ ବିରକ୍ତ ରହିଥାନ୍ତି। ମୋ ବ୍ୟତୀତ ସେମାନେ ଆଉ କାହାକୁ ଇଚ୍ଛା କରନ୍ତି ନାହିଁ। ମୋ ଭକ୍ତଙ୍କ ପାଖରେ ପଇସାଟିଏ ବି ନ ଥାଉ ପଛେ, ସେମାନଙ୍କୁ ଯେଉଁ ଆତ୍ମଶାନ୍ତି ମିଳେ ତାହା ଧନୀମାନେ ପାଇବେ କୁଆଡୁ? ଧନୀ ସବୁବେଳେ ଦୁଃଖୀ, ଚିନ୍ତିତ ଓ ଅଶାନ୍ତ ରହିଥା'ନ୍ତି। ବିଶାଳ ତୃଷ୍ଣାରେ ବିଶାଳ ଦୁଃଖ ଥାଏ। ମୁଁ ଯଦି ଧନ, ସମ୍ପତ୍ତି, ବୈଭବରେ ପ୍ରସନ୍ନ ହେଉଥା'ନ୍ତି ତେବେ ଦୁର୍ଯ୍ୟୋଧନର ପକ୍ଷ ନେଇଥା'ନ୍ତି। ଦୁର୍ଯ୍ୟୋଧନ ଆମର ସମ୍ପର୍କୀୟ ଥିଲା। ସେ ଥିଲା ସମ୍ରାଟ। ତା' ପାଖରେ ସୁଖର ସକଳ ସାମଗ୍ରୀ ଥିଲା। ମୋର ସ୍ୱାଗତ-ସତ୍କାରପାଇଁ ସେ ଖୁବ୍ ଆୟୋଜନ ମଧ୍ୟ କରିଥିଲା। କିନ୍ତୁ ମୁଁ ତା' ପାଖକୁ ନ ଯାଇ ମୋର ଅକିଞ୍ଚନ ଭକ୍ତ ବିଦୁର କୁଡ଼ିଆକୁ ଗଲି। ରାଜ୍ୟ-ଧନ-ବୈଭବ ଆଦି ଛାଡ଼ି ମୁଁ ଧନହୀନ ପାଣ୍ଡବଙ୍କ ପଛେ ପଛେ ଗୋଡ଼ାଇଛି। ଯେଉଁ ସୁଖ, ଯେଉଁ ଆତ୍ମ-ସନ୍ତୋଷ ପାଣ୍ଡବଙ୍କର ଥିଲା, କୌରବଙ୍କର ଏତେ ଐଶ୍ୱର୍ଯ୍ୟ ଥାଇ ସୁଦ୍ଧା ନଥିଲା। ତାହାକୁ ତା'ର ଧନ, ଐଶ୍ୱର୍ଯ୍ୟ, ବଳ, ପରାକ୍ରମ, ବେତନଭୋଗୀ ଭୀଷ୍ମ, ଦ୍ରୋଣ ଆଦିଙ୍କ ଉପରେ ଭରସା ଥିଲା। କିନ୍ତୁ ପାଣ୍ଡବମାନଙ୍କର ଏକମାତ୍ର ମୋ ଉପରେ ଭରସା ଥିଲା। ପାଣ୍ଡବମାନେ ଦୁଃଖରେ ବିଚଳିତ ହେଉ ନଥିଲେ। ଯୁଦ୍ଧ ତ ସେମାନେ ମୋ ପାଇଁ, ଧର୍ମରକ୍ଷା ପାଇଁ, କର୍ତ୍ତବ୍ୟର ତାଡ଼ନାରେ କରୁଥିଲେ। କୁନ୍ତୀ ସ୍ୱୟଂ ମୋତେ ବିପତ୍ତିର ବରଦାନ ମାଗିଥିଲା। ମୋର ପରମାନନ୍ଦର ଅନୁଭବ ତ ନିରପେକ୍ଷତାରେ ହିଁ ପ୍ରାପ୍ତ ହୋଇପାରେ। ଏଭଳି ଅକିଞ୍ଚନ, ଶାନ୍ତ, ଦାନ୍ତ, ନିରପେକ୍ଷ ଭକ୍ତ ମୋତେ ପ୍ରାଣଠାରୁ ଅଧିକ ପ୍ରିୟ ଲାଗେ। ତାଙ୍କ ପାଇଁ ମୁଁ ସବୁ କରିବାପାଇଁ ଆଗ୍ରହର ସହିତ ଅପେକ୍ଷା କରିଥାଏ।''

ଉଦ୍ଧବ ପଚାରିଲେ, ''ଭଗବନ୍! ଆପଣ ଆପଣଙ୍କ ଉତ୍ତମ ଭକ୍ତଙ୍କ କଥା କହିଗଲେ, ହେଲେ ମୁଁ ଆପଣଙ୍କ ସେତେ ଉତ୍ତମ ଭକ୍ତ ତ ନୁହେଁ। ମୁଁ ତ ଅଧମ ଠାରୁ ହେଲେ ଆଉରି ଅଧମ। ମୋ ମନ କାମ, କ୍ରୋଧ, ଲୋଭ, ମୋହାଦିରେ ମଗ୍ନ ହୋଇ ରହୁଛି। ବିଷୟଭୋଗର ସାମଗ୍ରୀ ଦେଖି ମୋ ମନ ଉତ୍‌ଫୁଲ୍ଲିତ ହୋଇ ଉଠୁଛି। କୃପାକରି କୁହନ୍ତୁ, ଆପଣଙ୍କୁ ଯିଏ ଭକ୍ତି କରିବାକୁ ଚାହୁଁଛି, କିନ୍ତୁ ସେ ଇନ୍ଦ୍ରିୟଙ୍କୁ ଆୟତାଧୀନ କରିପାରୁନାହିଁ, ଅଜିତେନ୍ଦ୍ରିୟ, ତାହାର ଗତି କ'ଣ ହେବ? ତା'ର ବି ଉଦ୍ଧାର ପାଇବାର କିଛି ଆଶା ଅଛି କି?''

ଉଦ୍ଧବଙ୍କର ଏପରି କଥା ଶୁଣି ଭଗବାନ୍ କହିଲେ, ''ଉଦ୍ଧବ! ତୁମେ ତ ପରମ ଭାଗବତ। ତୁମେ ମୋର ସର୍ବଶ୍ରେଷ୍ଠ ଭକ୍ତ। ଏହି ପ୍ରଶ୍ନ ତୁମେ ସର୍ବସାଧାରଣ, ଅଜିତେନ୍ଦ୍ରିୟ ଭକ୍ତଙ୍କ ନିମିତ୍ତ କରିଛ। ହଉ! ଠିକ୍ ଅଛି, ଯାର ଉତ୍ତର ମୁଁ ତୁମକୁ ଦେଉଛି। ତୁମେ ଏହି ପ୍ରସଙ୍ଗକୁ ସମାହିତ ଚିତ୍ତରେ ଶ୍ରବଣ କର।''

ମହର୍ଷି ସୂତ କହୁଛନ୍ତି—"ହେ ମୁନିମାନେ ! ଯେଉଁଭଳି ଭାବରେ ଭଗବାନ୍ ଭକ୍ତଙ୍କର ଉତ୍କର୍ଷତା ବର୍ଣ୍ଣନା କରି ଭକ୍ତିର ମହତ ମହିମା ଗାନ କରୁଛନ୍ତି ତାହା ମୁଁ ଏହାପରେ କହିବି ।"

## ଛପ୍ପୟ

ଭୂଲୈ ମେରୋ ଭକ୍ତ ବିଷୟ ଭୋଗନି ଫଁସି ଜାବୈ ।
ମମ ପଦ ତରିକେଂ ନାଇ ବଦନ ମହଁ ଚିତ ଲଗାବୈ ॥
କବ୍ହୁ ଦିନ ହୋବୈ ପତିତ ଯାଦି ସୁମିରନ ସୁଖଆବୈ ।
ଭୂଲି ଭଟକି ପଛତାଇ ମୋଇ ଫିରଡେ ଅପନାବୈ ॥
ବଢ଼ୀ ଅଗ୍ନି ମହଁ ନୀରହୁ, ଭସ୍ମ ହୋଇ ଥରି ଜାଇ ପୁନି ।
ଭକ୍ତି ହୋହି ଫିରତେ ସଜଗ, ମଧୁମୟ ମେରୀ କଥା ସୁନି ॥



[ଏହାର ପରକଥା ୫୫ଖଣ୍ଡରେ ପ୍ରକାଶିତ]